
ଉତ୍କଳ ପ୍ରସଙ୍ଗ
ସ୍ୱତନ୍ତ୍ର ଓଡ଼ିଶା ବିଶେଷାଙ୍କ ଅପ୍ରେଲ ୧୯୮୭



ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ବିନାୟକ ଆଚାର୍ଯ୍ୟ
୧୯୭୭ ଫେବୃଆରୀ ୨୪ତାରିଖ ଦିନ ମୟୁରଭଞ୍ଜ
ଜିଲ୍ଲା ବଙ୍ଗୀରିଷି ସେତୁ ଉଦ୍‌ଘାଟନ କରୁଛନ୍ତି



କେନ୍ଦ୍ରରୁ ଆସିଥିବା ମରୁଡ଼ି ଅନୁଧ୍ୟାନକାରୀ
ଫେବୃଆରୀ ୨୬ ତାରିଖ ଦିନ ଫୁଲବାଣୀ ଜିଲ୍ଲାର
ଜି-ଉଦୟଗିରି ମରୁଡ଼ିଅଂଚଳ ପରିଦର୍ଶନ କରୁଛନ୍ତି



ମୟୁରଭଞ୍ଜ ଜିଲ୍ଲା ବଙ୍ଗୀରିଷି ସେତୁର ଦୃଶ୍ୟ

# ଉତ୍କଳ ପ୍ରସଙ୍ଗ

୧୯୭୭ ଅପ୍ରେଲ : ବୈଶାଖ
୧୮୯୯ ଶକାବ୍ଦ
୩୪ଶ ଖଣ୍ଡ : ଅଷ୍ଟମ ସଂଖ୍ୟା

ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ସରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେଭଳି ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠ ବୋଲି ଭାବିବା ଉଚିତ୍ ନୁହେଁ ।

'ଉତ୍କଳ ପ୍ରସଙ୍ଗ' ଓଡ଼ିଶା ସରକାରଙ୍କ ସ୍ୱରାଷ୍ଟ୍ର (ଲୋକ ସମ୍ପର୍କ) ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ମୁଖ୍ୟ ସମ୍ପାଦକ:
ଶ୍ରୀ ଅଓ୍ୱଧ ନାରାୟଣ ତଓ୍ୱାରୀ
ଆଇ. ଏ. ଏସ୍.,
ଲୋକସଂପର୍କ ନିର୍ଦ୍ଦେଶକ

ସମ୍ପାଦକ:
ମହାପାତ୍ର ନୀଳମଣି ସାହୁ

ସହକାରୀ ସମ୍ପାଦକ:
ପ୍ରହରାଜ ଶ୍ରୀ ସତ୍ୟନାରାୟଣ ନନ୍ଦ

ସହଯୋଗୀ ସମ୍ପାଦକ:
ଶ୍ରୀ ବ୍ରଜମୋହନ ପଟ୍ଟନାୟକ
ଶ୍ରୀ କିଶୋର ଚନ୍ଦ୍ର ବେହେରା

ପ୍ରଚ୍ଛଦପଟ:
ଶ୍ରୀ ଅସିତ ମୁଖାର୍ଜୀ

ଅଙ୍ଗ ସଜ୍ଜା:
ଶ୍ରୀରାମଚନ୍ଦ୍ର ରାଉତ

ମୁଦ୍ରଣ:
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

ବାର୍ଷିକ ଦେୟ—ଟ ୧୦·୦୦ ପ୍ରତିଖଣ୍ଡ—ଟ ୧·୦୦

## ସୂଚୀପତ୍ର

### ପ୍ରସଙ୍ଗ କ୍ରମେ



### ଶିଷ୍ଟ ଓ ବଶିଷ୍ଟ



### ଆଜିର ଓଡ଼ିଶା

ଜାତିର ଉନ୍ନତି ହେବ କିରେ ଭାଇ
ସ୍ୱାର୍ଥକୁ ଜଗତ ମଣି
ଗୋଦର ଗୋଡ଼ରେ ମାଉଁସ ଲାଗିଲେ
ଦେହର କି ଶୁଭ ଗତି ?

ଜାତିର ଉନ୍ନତି ସେ କାହିଁ କରିବ
ସ୍ୱାର୍ଥେ ଯାର ବ୍ୟସ୍ତ ମନ
ଶାଗୁଣା ବଳୁଆ ଚିକିତ୍ସକ ହେଲେ
ଶବ କି ପାଇବ ପ୍ରାଣ ?

ଜାତି ନନ୍ଦିଘୋଷ ଚଳିବ କି ଭାଇ
ସ୍ୱାର୍ଥକୁ ସାରଥି କଲେ
ଟାଣେ କିରେ ଗାଡ଼ି ଦାନାର ତୋବଡ଼ା
ଘୋଡ଼ା ମୁହେଁ ବନ୍ଧା ଥିଲେ ?

—ଉତ୍କଳଗୌରବ ମଧୁସୂଦନ

## ପ୍ରସଙ୍ଗ କ୍ରମେ

# ସ୍ୱତନ୍ତ୍ର ଉତ୍କଳ ଦିବସର ଅନୁଚିନ୍ତା

ଆଜି ଏପ୍ରିଲ ପହିଲା । ୧୯୩୬ ମସୀହା ଏହି ଦିନ ଓଡ଼ିଆମାନେ ଏକ ସ୍ୱତନ୍ତ୍ର ପ୍ରଦେଶ ନିଜ ପାଇଁ ପାଇଥିଲେ । ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ରୂପେ ବିକାଶଲାଭ କରି ଚାଲିଛି । ଶିଳ୍ପ, ବାଣିଜ୍ୟ, କୃଷି, ଶିକ୍ଷା, ସଂସ୍କୃତି, ଜ୍ଞାନ, ବିଜ୍ଞାନ ଓ ସାହିତ୍ୟ ସଙ୍ଗୀତନୃତ୍ୟାଦି କ୍ଷେତ୍ରରେ ଓଡ଼ିଶା ଯେ ଆଜି ସର୍ବଭାରତୀୟ କ୍ଷେତ୍ରରେ ନିଜକୁ ଜଣେ ବୋଲି ପରିଚୟ ଦେଇ ପାରିଛି ଓ ପ୍ରତିଷ୍ଠିତ ହୋଇପାରିଛି—ଏହା କମ୍ ଆଶା ଓ ଆନନ୍ଦର କଥା ନୁହଁ । ତଥାପି, ଖୁବ୍ ସଚେତନଭାବେ ଅନ୍ୟମାନଙ୍କ ସଙ୍ଗେ ମିଳାଇ ଦେଖିଲେ ଆମେ ଏହି ସମୟ ମଧ୍ୟରେ ଯେତିକି ଅଗ୍ରଗତି କରି ପାରିଥାନ୍ତୁ ବା କରି ପାରନ୍ତୁ ତାହା ହୋଇ ପାରିନାହିଁ । ଅବଶ୍ୟ ଏଥିପାଇଁ ବହୁବିଧ କାରଣ ରହିଛି । ମାତ୍ର ଅନ୍ୟ ସର୍ବପ୍ରକାର କାରଣ ଗୋଟିଏ ଦିଗରେ ରଖି ସବୁଠାରୁ ବଡ଼ କାରଣଟିକୁ ଯଦି ଖୋଜି ବାହାର କରାଯାଏ, ସେଇ କାରଣଟି ଆମର ଜାତୀୟ ଚରିତ୍ର ବା ପ୍ରକୃତି ସଙ୍ଗେ ଓତଃପ୍ରୋତଃ ଭାବେ ଜଡ଼ିତ ରହିଥିବାର ଜଣାପଡିବ । ଅବଶ୍ୟ ବହୁ ଚିନ୍ତାଶୀଳ ବ୍ୟକ୍ତିଙ୍କ ମତରେ ଅନ୍ତ ଦିନହେଲା ଓଡ଼ିଆ ଜାତି ଏହି ଦୁର୍ଗୁଣଟିର ଶିକାର ହୋଇଛି । ସେ ଦୁର୍ଗୁଣଟି ହେଲା ଆମେ ଓଡ଼ିଆ-ମାନେ ପରସ୍ପରର ଶିରି ଦେଖିପାରୁ ନାହୁଁ—ଆମେ ନିଜେ ଖାଉଥିଆ ଅଥଚ ଅନ୍ୟଟି ପେଜ ଖାଉଥିବାର ଦେଖିଲେ ଚି ଆମ ଦେହରେ ନିଆଁ ଚରିଯାଏ ଈର୍ଷାରେ । ଆମେ ଅନ୍ୟ ଲୋକର ପ୍ରାଦୁର୍ଭାବ ସହିବୁ—ମାତ୍ର ନିଜ ଲୋକଟି ଯେତେ ଗୁଣର ହୋଇଥାଉନା କାହିଁକି, ତା'ପାଖରେ ନମ୍ରତା ଦେଖାଇ ପାରିବୁନାହିଁ । ଏହି ଖରାପ ପ୍ରକୃତିଟି ସଙ୍ଗେ ପୁଣି ରହିଛି ଅନ୍ୟର ଗୋଡ଼ଧରି ତଳକୁ ଟାଣିବା ପ୍ରବୃତ୍ତି । ନିଜ ଭାଇ ଯଦି କୋଉ ବାଟରେ ଉନ୍ନତିକଲା, ତେବେ ଆମେ ତାକୁ ଯେପରି ହେଲେ ତଳକୁ ଖସାଇବାକୁ ଚେଷ୍ଟା କରୁ । ସେଇଥିଲାଗି ଆମ ଭିତରେ ବିଭିନ୍ନ କ୍ଷେତ୍ରରେ ଯେତେଲୋକ ବଡ଼ ହୋଇ ବାହାରନ୍ତେ, ସେତେ ବାହାରି ପାରନ୍ତି ନାହିଁ । ତା'ମାନେ ଆମେ ନିଜେ ତ ଖର୍ବ, ଏବଂ ସେହି ଖର୍ବିତ ଜିଘାଂସାରେ ଆମେ ଅନ୍ୟ ଡେଙ୍ଗା ଲୋକଟିର ମଧ୍ୟ ଗୋଡ଼ କାଟି କିମ୍ବା ମୁଣ୍ଡକାଟି ଖର୍ବ କରି ସନ୍ତୋଷ ଲାଭ କରୁ । ଯାହା ଜଣାଯାଏ—ବର୍ତ୍ତମାନ କାଳରେ ଏହି ଗୋତ୍ର ଦ୍ରୋହ ବା ସ୍ୱଜାତିହିଂସ୍ରତା-ବୃତ୍ତିଟି ଆମ ପ୍ରକୃତିରେ ବଡ଼ ସ୍ଥାନ ଅଧିକାର କରିଛି ।

ଏଇ କୁପ୍ରବୃତ୍ତିଟିର ଅଧୀନ ହୋଇ ପଡ଼ିବା ଯୋଗୁ ଆମର ଅବଚେତନରେ ଏକ ହୀନମନ୍ୟତା ମଧ୍ୟ ଲୁଚିରହି ଆମର ଗତି ବିଧିକୁ ନିୟନ୍ତ୍ରଣ କରୁଛି ଏବଂ ଏହି ହୀନ ମନ୍ୟତା ଠାରୁ ବ୍ୟକ୍ତିତ୍ୱ ଖର୍ବ କାରକ ଆଉ କିଛି ନାହିଁ ।

ଜାତୀୟ ଚରିତ୍ର ବିକାଶ କରିବାକୁ ହେଲେ ପ୍ରତ୍ୟେକ ବ୍ୟକ୍ତିକୁ ନିଜର କର୍ତ୍ତବ୍ୟ ଉପରେ ସଚେତନ ହେବାକୁ ପଡ଼ିବ ।

ସେଇ କର୍ତ୍ତବ୍ୟଟି ହେଲା—ପ୍ରତ୍ୟେକ ବ୍ୟକ୍ତି ଆପଣା ସାଧ୍ୟ ଅନୁସାରେ ନିଜର ଗୁଣ ବିକାଶ କରି, ଆପଣାର ବିହିତ କର୍ତ୍ତବ୍ୟ ସମ୍ପାଦନ କରି ଜାତି ପାଖରେ ସେହି ଗୁଣଫଳ ଓ କର୍ତ୍ତବ୍ୟ ଫଳକୁ ବିନୀତଭାବେ ସମର୍ପଣ କରିବା । ଆଜିର ଏହି ସ୍ମରଣୀୟ ଦିବସରେ ବନ୍ଧୁଗଣ, ଆସନ୍ତୁ ଆମେ ଆମର ଜାତୀୟ ଗୁଣ ଓ ଦୁର୍ଗୁଣ ଗୁଡ଼ିକ ଉପରେ ସଚେତନ ହେବା ଓ ଯେଉଁ ପ୍ରକାରେ ଆମର ଏହି ଐତିହାସିକ ଜାତି ତାର ପୂର୍ବ ଗୌରବକୁ ସାମାନ୍ୟ ଆହୁରି ଅତିକ୍ରମ କରିଯିବ ସେହି ନିଜକୁ ଓ ଜାତୀୟ ଭାଗ୍ୟକୁ ପରିଚାଳିତ କରିବା ।

ଆଜି ବନ୍ଧୁମାନଙ୍କ ଆଗରେ କେତୋଟି କଥା ବିନୟର ସହିତ ନିବେଦନ କରୁଛୁ—ଯେପରି ଏକଥାଗୁଡ଼ିକ ପ୍ରତି ସମସ୍ତେ ଅବଧାନ ଦିଅନ୍ତି—

୧ । ବନ୍ଧୁ ! ଓଡ଼ିଆ ଭାଷାରେ ଆପଣ କଥା କୁହନ୍ତି ତ ? ନା ସେଥିରେ ଅଧିକରୁ ବେଶୀ ଫାଦର ମଦର ଓ୍ୱାଇଫ୍ ଭଳି ଇଂରେଜୀ ଭାଷା ମିଶି କହିଥାଏ ? ଇଂରେଜୀ ଭାଷା ଶିଖିବା ଅତି ଭଲ କଥା । ଇଂରେଜୀ ଭାଷାରେ ବ୍ୟୁତ୍ପତ୍ତି ଲାଭ ନକଲେ ବିଶ୍ୱର ଜ୍ଞାନବିଜ୍ଞାନ ଆମେ ଆହରଣ କରିପାରି ପାରିବା ନାହିଁ । ଇଂରେଜୀ ଭାଷାରେ ସୁନ୍ଦର ବକ୍ତୃତା ଦେବାର କ୍ଷମତା କିମ୍ବା ଆବଶ୍ୟକୀୟ ସ୍ଥଳେ ଭଲ ଇଂରେଜୀ କହି ପାରିବା ନିଶ୍ଚିତ ଭାବେ ଏକ ବଡ଼ ଗୁଣ । ମାତ୍ର ଓଡ଼ିଆ କହିଲାବେଳେ ସ୍ୱଚ୍ଛ, ସୁନ୍ଦର, ସଙ୍ଗତ ଓ ଅମିଶ୍ର ଓଡ଼ିଆରେ କଥା କୁହନ୍ତୁ । ଆମର ଅଧିକାଂଶ ଲୋକ ଓଡ଼ିଆ ଭାଷା କହନ୍ତି—ତାହା ଏକ ଖେଚୁଡ଼ି ଭାଷା । ସେଭଳି ଭାଷା ଶୁଣି ବୈଦେଶିକମାନେ ଆମକୁ ଉପହାସ କରନ୍ତି । ସେମାନେ ଭାବନ୍ତି—ଆମର ଯଥାର୍ଥ ସମୃଦ୍ଧ ଉପଯୋଗୀ ଭାଷାଟିଏ ବୋଧେ ନାହିଁ ।

କିନ୍ତୁ ବନ୍ଧୁ ! ଆମେ ଭଲକରି ଜାଣୁ; ଯେ କୌଣସି ଭାବ ବା ଚିନ୍ତା ପ୍ରକାଶ କରିବା ପାଇଁ ଆମେ ଯଦି ଆମ ଓଡ଼ିଆ ଭାଷାରେ କଥା ନ କହିବା ତେବେ ଏ ଭାଷା ଉଚ୍ଚ ଚିନ୍ତା ବା ଭାବ ପ୍ରକାଶରେ କେବେବି ସାମର୍ଥ୍ୟ ଅର୍ଜନ କରି ପାରିବନାହିଁ । ଆଉ ଏହାଠାରୁ ବଳି ଲଜ୍ୟାକର କଥା ବା କଣ ଥାଇପାରେ ?

୨ । ଚିଠିପତ୍ର, ହିସାବ କିତାପ୍, ନିମନ୍ତ୍ରଣ ପତ୍ର, ଆବେଦନ ପତ୍ର, ପ୍ରସ୍ତର ପତ୍ର, ଦୈନିକ ବିବରଣୀ ଓ ଘର ବା ଦୋକାନ ନାମ ଓଡ଼ିଆରେ ଲେଖନ୍ତୁ ।

୩ । ଆପଣଙ୍କ ଆୟର କିଛି ଅଂଶ ବ୍ୟୟ କରନ୍ତୁ ଓଡ଼ିଆ ବହି ଆଉ ପତ୍ର ପତ୍ରିକା କିଣିବାରେ । ବଙ୍ଗାଳୀ ଆଉ ତେଲୁଗୁ, ତାମିଲ ଭାଷୀ ବନ୍ଧୁମାନଙ୍କୁ ଦେଖିଛନ୍ତି ? ତାଙ୍କ ଭାଷାରେ ବହି କିଣି ପଢ଼ିବାଟା ସେମାନେ କର୍ତ୍ତବ୍ୟ ବୋଲି ବୁଝନ୍ତି । ସେମାନେ ବସ୍ ବା ଟ୍ରେନ୍‌ରେ ଗଲାବେଳେ ପତ୍ରିକାଟିଏ କିଣି ପଢୁଥିବେ । ଆଉ ଓଡ଼ିଆ ? ଏବେ ସାଟିକରି ପରନିନ୍ଦା ପରଚର୍ଚ୍ଚା ନତୁବା ଅଶ୍ଳୀଳ ହାସ ପରିହାସ କରି ସମୟ କାଟୁଥିବେ । ବନ୍ଧୁ ! ଓଡ଼ିଆ ବହି କିଣି ପଢ଼ନ୍ତୁ । ବାହାଘରେ, ବ୍ରତଘରେ ଓଡ଼ିଆ ବହି କିଣି ଉପହାର ଦିଅନ୍ତୁ ।

୪ । କୌଣସି ଓଡ଼ିଆ ପିଲା ଇଂରେଜୀ ମାଧ୍ୟମରେ ପିଲାଦିନୁଁ ପାଠ ପଢିଲେ କ୍ଷତିନାହିଁ । ମାତ୍ର ଘରେ ଓ ବାହାରେ ତାକୁ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ସମ୍ପର୍କରେ ସଚେତନ କରାଇ ରଖିବାରେ ଜାତୀୟ ଶୁଭବୁଦ୍ଧି ଲାଗେ ଗଣାଯାଏ । ଓଡ଼ିଆ ପର୍ବ ପର୍ବାଣୀ ସମସ୍ତେ ସବୁଠାରେ ପୂର୍ବ, ଦକ୍ଷିଣ ଓଡ଼ିଶା ପାଳନ କରନ୍ତୁ ।

୫ । ଓଡ଼ିଶାରେ ପ୍ରତ୍ୟେକ ଜିଲ୍ଲା ସଙ୍ଗେ ଅନ୍ୟ ପାରିବାରିକ ବିବାହସମ୍ପର୍କ ରହୁ । କଟକ-ସମ୍ବଲପୁର, ମୟୂରଭଞ୍ଜ-ବ୍ରହ୍ମପୁର, ବାଲେଶ୍ୱର-ଫୁଲବାଣୀ, କେନ୍ଦୁଝର-କଟକ, କୋରାପୁଟ-କଟକ, ବଲାଙ୍ଗୀର-ପୁରୀ, କଳାହାଣ୍ଡି–ପୁରୀ, ଇତ୍ୟାଦି ଇତ୍ୟାଦି ଜିଲ୍ଲାରେ ପୁଅ ଝିଅ ବିବାହ ଦିଅନ୍ତୁ । ଫଳରେ ସବୁ ଜିଲ୍ଲାର ଲୋକଙ୍କ ଭାଷା ଓ ସଂସ୍କୃତି ଓଡ଼ିଶା ମୟ ହୋଇଯିବ—ଆଉ ପାର୍ଥକ୍ୟ ଭେଦଭାବ ରହିବ ନାହିଁ ।

୬ । ପ୍ରତ୍ୟେକ ବିଶିଷ୍ଟ ଓଡ଼ିଆ କବି, ବୈଜ୍ଞାନିକ, ସଙ୍ଗୀତଜ୍ଞ, ଚିତ୍ର ଓ ନୃତ୍ୟ ଶିଳ୍ପୀ, ଦାର୍ଶନିକ, ଦେଶ ନାୟକ ଇତ୍ୟାଦିଙ୍କର ଫଟୋମାନ ଘରେ ଘରେ ଟାଙ୍ଗି ରଖନ୍ତୁ । ଉତ୍କଳ ଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, ଆର୍ଯ୍ୟ ହରିହର, ଫକୀର ମୋହନ, ଗୋଦାବରୀଶ, ନୀଳକଣ୍ଠ, କବିବର ରାଧାନାଥ, ଅଧ୍ୟାପକ ଆର୍ତ୍ତବଲ୍ଲଭ, ସୁରେନ୍ଦ୍ରସାୟ, ବକସି ଜଗବନ୍ଧୁ, ଗଜପତି କୃଷ୍ଣଚନ୍ଦ୍ର ଆଦିଙ୍କ ଫଟୋମାନ ଓଡ଼ିଶାର ଶିଳ୍ପପତିମାନେ କାଲେଣ୍ଡରରେ ଛପାନ୍ତୁ ।

ଓଡ଼ିଆ ସିନେମା ଓ ନାଟକ ଦେଖନ୍ତୁ । ଓଡ଼ିଆ ସଙ୍ଗୀତ ଶୁଣନ୍ତୁ ଓ ସେଗୁଡ଼ିକ ଉପରେ ମନ୍ତବ୍ୟ ପ୍ରକାଶ କରନ୍ତୁ ।

ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ଉପରେ ପ୍ରତିଦିନ ଏଣେ ସେଠି ସଭା ସମିତି ଓ ଆଲୋଚନା କେନ୍ଦ୍ର ମାନ ଗଢ଼ିଉଠୁ ଏବଂ ଓଡ଼ିଆ ଓଡ଼ିଆଣୀମାନେ ସେ ସଭା ସମିତିରେ ଯୋଗ ଦିଅନ୍ତୁ ।

ପ୍ରତ୍ୟେକ ଓଡ଼ିଆ ଓଡ଼ିଆଣୀ ଓଡ଼ିଆ ଭାଷା ବ୍ୟତୀତ ଇଂରେଜୀ, ବଙ୍ଗଳା, ହିନ୍ଦୀ, ଉର୍ଦ୍ଦୁ ଓ ତେଲୁଗୁ ଆଦି ଭାଷାରେ ରଚିତ ବିଭିନ୍ନ କାବ୍ୟ କବିତା, ଗଳ୍ପ ଉପନ୍ୟାସ ପଢି ନିଜ ଅନୁଭୂତି ଓ ରୁଚିକୁ ସମୃଦ୍ଧ ଓ ଉନ୍ନତ କରନ୍ତୁ । ମଧ୍ୟ ସାଧାରଣ ଓଡ଼ିଆଙ୍କର ସାଂସ୍କୃତିକ ରୁଚି ଏବେ

ଅବନତ ଅବସ୍ଥାରେ ଅଛି । ସାଧାରଣ ଓଡ଼ିଆଙ୍କ କଥା କଣ କହିବା—ଉଚ୍ଚ ଶିକ୍ଷିତ ଓ ଉଚ୍ଚପଦସ୍ଥ ଓଡ଼ିଆମାନଙ୍କର ରୁଚି ଓ ବ୍ୟବହାର ଏବେ ମଧ୍ୟ ମାର୍ଜିତ ଓ ସୂକ୍ଷ୍ମ ପର୍ଯ୍ୟାୟକୁ ଆସି ପାରିନାହିଁ । ଉଚ୍ଚାଙ୍ଗ ସଙ୍ଗୀତଟିଏ ବା କବିତା ଟିଏ ବା ଗଳ୍ପଟିଏ ବା ଭଲ ଚିତ୍ରଟିଏ ଦେଖି ତାକୁ ବୁଝିବା ବା ବୋଧ କରିବାର ଶକ୍ତି ଆମର ଏଯାବତ ଅର୍ଜିତ ହୋଇନାହିଁ । ଜାତୀୟ ବ୍ୟକ୍ତିତ୍ୱ ନିର୍ଭର କରେ ଜାତିର ମନନ ଶକ୍ତି, ଅନୁଭବ କ୍ଷମତା ସଂକଳ୍ପ ଶକ୍ତି ଓ କର୍ମନିପୁଣତା ଉପରେ ଏବଂ ଜାତିର ସାମଗ୍ରୀକ ଆକାଂକ୍ଷା ଉପରେ, ଲକ୍ଷ୍ୟର ଆଭିମୁଖ୍ୟ ଉପରେ । ଓଡ଼ିଆ ଜାତି କଣ ହେବାକୁ ଚାହେଁ—କିପରି ହେବାକୁ ଚାହେଁ—କେଉଁଠି ପହୁଁଚିବାକୁ ଚାହେଁ—ତାହା ପ୍ରତ୍ୟେକ ଓଡ଼ିଆ ଚିନ୍ତା କରନ୍ତୁ । ଲକ୍ଷ୍ୟହୀନ, ଆଭିମୁଖ୍ୟହୀନ, ସ୍ୱପ୍ନହୀନ, ଉଦ୍ୟମହୀନ ଜାତି କେବଳ ପାରସ୍ପାରିକ ଈର୍ଷା, ହିଂସା, ଦ୍ୱେଷର ଆବର୍ତ୍ତ ଭିତରେ ପଡ଼ି ଖର୍ବ ହୋଇ ହୋଇ ଚାଲିଥାଏ । ତାର ପ୍ରାଣଶକ୍ତି କ୍ଷୟ ହୋଇ ଚାଲିଥାଏ ଓ କ୍ରମଶଃ ଜାତୀୟ ଆତ୍ମା ସଂକୁଚିତ ହୋଇ, ନିପୀଡ଼ିତ ହୋଇ ଦୁର୍ବଳ ହୋଇ ପଡ଼େ ।

ତେଣୁ ବନ୍ଧୁଗଣ ! ଆସନ୍ତୁ—ଆଜି ଏହି ଶୁଭ ଦିବସରେ ଆମେ ଓଡ଼ିଶାର ମହାପ୍ରଭୁ ଯେ ଶ୍ରୀ ଜଗନ୍ନାଥ, ତାଙ୍କୁ ସ୍ମରଣ କରି ଶପଥ ନେବା ଓଡ଼ିଆ ଜାତିକୁ ଗଠନ କରିବାର ଦାୟିତ୍ୱ ଆମ ଉପରେ—ଓଡ଼ିଆ ଜାତିର ମର୍ଯ୍ୟାଦା ରକ୍ଷା କରିବାର ଦାୟିତ୍ୱ ଆମ ଉପରେ—ଓଡ଼ିଆ ଜାତିର ସର୍ବବିଧ ଉନ୍ନତିର ଦାୟିତ୍ୱ ଆମ ଉପରେ—ଆମେ ସେ ଦାୟିତ୍ୱ ଯେଉଁଆର ଶକ୍ତି ସାମର୍ଥ୍ୟକୁ ଚାହିଁ ଆନନ୍ଦରେ ବହନ କରିବା ।

ଓଡ଼ିଆ ଜାତି ବୋଲି କହିଲା ବେଳେ ଆମେ ଗୋଟିଏ କଥାରେ ପୂର୍ଣ୍ଣ ସଚେତନ ଯେ ଆମେ ସମସ୍ତେ ପ୍ରଥମରୁ ଭାରତୀୟ—ଏହି ମହାନ୍ ଜାତିର ଏକ ଅଙ୍ଗ ବିଶେଷ । ଆମର ଅବଶ୍ୟ ଏକ ଜାତୀୟ ସ୍ୱାତନ୍ତ୍ର୍ୟ ଅଛି । ଆମେ ସେହି ସ୍ୱାତନ୍ତ୍ର୍ୟକୁ ବଜାୟ ରଖିବୁ । ସେହି ସ୍ୱାତନ୍ତ୍ର୍ୟକୁ ବିକାଶ କରିବାରେ ଉଦ୍ୟମ କରିବୁ—ମାତ୍ର ଆମର ଶେଷ ଲକ୍ଷ୍ୟ ହେଉଛି ଆମ ବିକଶିତ ସ୍ୱାତନ୍ତ୍ର୍ୟ ଦ୍ୱାରା ଆମେ ଆମର ମୂଳ ଭାରତୀୟ ଜାତୀୟ ଆତ୍ମାର ପୁଷ୍ଟି ସାଧନ କରିବୁ । ଆମେ ସ୍ୱତନ୍ତ୍ର କିନ୍ତୁ ଭାରତୀୟ ଜାତୀୟ ମହାସ୍ରୋତରୁ ବିଚ୍ଛିନ୍ନ ନୁହେଁ । ଏହାହିଁ ମହାଜନ ମାନଙ୍କ ମତ ।

## ୧୯୭୭ ଲୋକସଭା ନିର୍ବାଚନ

ଗତ ୧୬-୩-୧୯୭୭ ରେ ଭାରତ ବର୍ଷର ଲୋକସଭା ନିର୍ବାଚନ ହୋଇଗଲା ଏବଂ ଏହି ନିର୍ବାଚନରେ ସମଗ୍ର ଜାତି ଯେଉଁ ଶୃଙ୍ଖଳା, ଓ ମର୍ଯ୍ୟାଦାବନ୍ତ ଆଚରଣ ପ୍ରଦର୍ଶନ କଲା ତାହା ଭାରତ ବର୍ଷର ଇତିହାସରେ ଏକ ଉଜ୍ଜ୍ୱଳତମ ଘଟନା ବୋଲି ବୁଝିବାକୁ ହେବ । ସରକାରୀ କର୍ମଚାରୀ ଗଣ, ପ୍ରତିଦ୍ୱନ୍ଦ୍ୱୀ ରାଜନୀତିକ ନେତୃବୃନ୍ଦ ଓ ସାଧାରଣ ଜନତା ଏହି ନିର୍ବାଚନଟିକୁ ଯେପରି ଭାବେ ପରିଚାଳିତ ସେଥିଲେ ସମଗ୍ର ବିଶ୍ୱ ଆଶ୍ଚର୍ଯ୍ୟ ହୋଇ ଯାଇଛି । ପୃଥିବୀରେ ଗଣତନ୍ତ୍ରର ପରୀକ୍ଷା କରୁଥିବା ଦେଶମାନଙ୍କ ମଧ୍ୟରେ ଭାରତ ଅନ୍ୟତମ । ଆଜି ସାରା ବିଶ୍ୱ ଭାରତବାସୀଙ୍କ ଗଣତାନ୍ତ୍ରିକ ଆଚରଣ ଓ ସିଦ୍ଧାନ୍ତର କ୍ଷମତାକୁ ନିଶ୍ଚୟ ସ୍ୱୀକାର କରିବ । ଏହି ନିର୍ବାଚନରେ ସ୍ୱାଧୀନତା ପରଠାରୁ ଆଜି ପର୍ଯ୍ୟନ୍ତ ଭାରତ ସରକାରଙ୍କ ଶାସନ ଦାୟିତ୍ୱରେ ଥିବା ଏକ ମାତ୍ର ଦଳ ଭାରତୀୟ ଜାତୀୟ କଂଗ୍ରେସ ନବଗଠିତ ଜନତା ଦଳ ଦ୍ୱାରା ପରାଜିତ ହୋଇଛନ୍ତି । ଜନତା ଦଳ ସରକାର ଗଠନ କରିଛନ୍ତି । ଭାରତର ଜନତା, ମୁକ୍ତ ମନରେ, ନିର୍ଭିକ ଭାବେ ସେମାନଙ୍କର ରାଜନୈତିକ ସିଦ୍ଧାନ୍ତ ବ୍ୟକ୍ତ କରିଛନ୍ତି ଏବଂ ଉଭୟ ଦଳ ସେହି ସିଦ୍ଧାନ୍ତକୁ ମଥାପାତି ଗ୍ରହଣ କରିନେଇଛନ୍ତି । ଭାରତ ବର୍ଷରେ ଯେଉଁ ଦଳ ଶାସନ କ୍ଷମତାକୁ ଆସନ୍ତୁ ନା କାହିଁକି ସମସ୍ତଙ୍କ ଆଗରେ ଗୋଟିଏ ଲକ୍ଷ୍ୟ ସ୍ଥିରୀକୃତ ହୋଇ ରହିଛି । ତାହା ହେଉଛି—ଜାତିର ପିତା ଗାନ୍ଧିଜୀଙ୍କ ପ୍ରଦର୍ଶିତ ମାର୍ଗରେ ଗଣତାନ୍ତ୍ରିକ ସମାଜ ବାଦର ପ୍ରତିଷ୍ଠା । ପୃଥିବୀରେ ବିଭିନ୍ନ ଦେଶରେ ଗଣତାନ୍ତ୍ରିକ ଶାସନ ଓ ଜୀବନ ଧାରାର ପରୀକ୍ଷା ନିରୀକ୍ଷା ଚାଲିଛି । ସେହିପରି ବହୁ ଦେଶରେ ସମାଜବାଦୀ ବ୍ୟବସ୍ଥାର ମଧ୍ୟ ପରୀକ୍ଷା ନିରୀକ୍ଷା ଚାଲିଛି ମାତ୍ର ଭାରତବର୍ଷରେ ସ୍ୱାଧୀନତା ପରଠାରୁ ଚାଲିଛି ଗଣତାନ୍ତ୍ରିକ ସମାଜବାଦୀ ରାଷ୍ଟ୍ର ଦର୍ଶନର ସଫଳ ରୂପାୟନ ଦିଗରେ ଅଭିଯାନ । ଗାନ୍ଧିଜୀ ଭାରତବର୍ଷ ପାଇଁ ଯେଉଁ ରାଜନୀତିକ, ଅର୍ଥନୀତିକ ଓ ନୈତିକ ଜୀବନାଦର୍ଶ ନିଜ ଜୀବନରେ ପରୀକ୍ଷା କରି ଜାତି ଆଗରେ ଥୋଇ ଯାଇଛନ୍ତି, ତାକୁଇ ଜାତୀୟ ଜୀବନରେ ପ୍ରତିଫଳିତ କରିବା ହେଲା ଭାରତବର୍ଷର ଜନଗଣ ଓ ରାଷ୍ଟ୍ର ନିୟନ୍ତାମାନଙ୍କର ପ୍ରଧାନ କର୍ତ୍ତବ୍ୟ । ଯୋଉଦଳ ଭାରତବର୍ଷରେ ଗାନ୍ଧିଜୀ ପରିକଳ୍ପିତ ରାମରାଜ୍ୟର ଆଦର୍ଶକୁ ଯଥା ସାଧ୍ୟ ପ୍ରତିଷ୍ଠିତ କରିବାରେ ପ୍ରମାଣ ଦେଇ ପାରିବ ସେହି ଦଳ ବା ବ୍ୟକ୍ତି ହିଁ ପାଇବ ଭାରତ ମାତାଙ୍କର ଅକୁଣ୍ଠ ଆଶୀର୍ବାଦ ।

ଏଥର ନିର୍ବାଚନ ଆଉ ଗୋଟିଏ କଥା ପ୍ରମାଣିତ କରିଦେଲା—ତା' ହେଉଛି ଭାରତର ଜନତା ଏକ ମର୍ଯ୍ୟାଦାବନ୍ତ ଶାନ୍ତି—ସ୍ୱାଧୀନତା ଗଢ଼େଁ—ଏବଂ ଏହି ମର୍ଯ୍ୟାଦା ଭିତ୍ତିରେ ଗଣତାନ୍ତ୍ରିକ ସମାଜବାଦ ପରିପୁଷ୍ଟି ଲାଭ କରିବ । ଭାରତ ବର୍ଷ ଦଶହଜାର ବର୍ଷର ଏକ ସଂସ୍କୃତି ସମ୍ପନ୍ନ ଦେଶ । ଏହାର ଭିତ୍ତି ଆଧ୍ୟାତ୍ମବାଦ ଉପରେ ପ୍ରତିଷ୍ଠିତ । ସ୍ୱାମୀ ଦୟାନନ୍ଦ, ରାଜାରାମ ମୋହନ, ସ୍ୱାମୀ ବିବେକାନନ୍ଦ, ପରମ ପୁରୁଷ ରାମକୃଷ୍ଣ, ଶ୍ରୀ ଅରବିନ୍ଦ, ଗାନ୍ଧିଜୀ, ରବୀନ୍ଦ୍ର ନାଥ ଓ ଜବାହାରଲାଲ, ଲାଲ ବାହାଦୁର ଆଦି ଯୋଗୀ, ମୁନୀ, ରାଷ୍ଟ୍ର ନିର୍ମାତା ମାନେ ଏହି ଆଧୁନିକ ଭାରତବର୍ଷକୁ ଯେଉଁ ଚେତନାର ଭିତ୍ତିରେ ଗଠନ କରିଛନ୍ତି—ସେହି ଚେତନାକୁ ଅବଲମ୍ବନ କରି ଏହି ମହାଜାତିର ବିକାଶ ହେବ । ଅନ୍ୟଥା ନୁହେଁ । ଆମେମାନେ ନୂତନ ନିର୍ବାଚିତ ନେତୃବୃନ୍ଦଙ୍କୁ ଆହ୍ଲାଦର ସହିତ ସ୍ୱାଗତ କରୁଛୁ ଓ ଆଶାକରୁଛୁ—ଯେପରି ଜନଗଣ ଓ ସରକାର ଓ ବିରୋଧୀ ଦଳ ସମସ୍ତେ ମିଶି ଭାରତ ବର୍ଷକୁ ତାର ମୌଳିକ ଆଦର୍ଶ ଦିଗରେ ଚଳାଇ ନେବେ ।



# ମାତୃପୂଜାର ମଣ୍ଡପରେ ଉତ୍କଳମାତାଙ୍କ ଉଦ୍‌ବୋଧନ

—ଉତ୍କଳ ଗୌରବ ମଧୁସୂଦନ

ମୋତେ ସଭାପତି ମହାଶୟ ମା'ଙ୍କ ଆବାହନୀରେ କାର୍ଯ୍ୟ ଭାର ଦେଇଛନ୍ତି । ଏ ମଣ୍ଡପ ମାତୃପୂଜାର ମଣ୍ଡପ । ଅନ୍ୟାନ୍ୟ ସ୍ଥାନମାନଙ୍କରେ ସମ୍ମିଳନୀ ହୁଏ କିନ୍ତୁ ସବୁଠାରେ ମାତୃପୂଜା ହୁଏ ନାହିଁ । ସବୁ ଭାଇ ଏକତ୍ର ମିଳିତ ହୋଇ ପରସ୍ପର ମନରଭାବ ପ୍ରକାଶ କରିବାକୁ ଏପରି ସମ୍ମିଳନୀ ହୋଇଥାଏ । ଏ ଉତ୍କଳ ବାସୀଙ୍କ ସମ୍ମିଳନୀ—ଜନନୀ ଜନ୍ମଭୂମିଙ୍କ ପୂଜାମଣ୍ଡପ । ପୂଜାକାର୍ଯ୍ୟ ଆରମ୍ଭ ପୂର୍ବରୁ ମାତାଙ୍କର ଆବାହନ ଆବଶ୍ୟକ । ଆବାହନ ବ୍ୟତିରେକେ ପୂଜା ଆରମ୍ଭ ହୋଇ ନପାରେ । ବର୍ତ୍ତମାନ ଏଠାରେ ଯେତେ ଭାଇ ଭଉଣୀ ଉପସ୍ଥିତ ଅଛନ୍ତି, ସମସ୍ତଙ୍କ ହୃଦୟରେ ଜନନୀ ଜନ୍ମଭୂମିଙ୍କ ପ୍ରତିମୂର୍ତ୍ତି ବା ପିତୁଳା ସ୍ଥାପନ କରିବା ଉଚିତ । ଭାଇମାନେ ! ସମସ୍ତେ ଥରେ ତାଙ୍କ ପୁଣ୍ୟ ପିତୁଳା ହୃଦୟରେ ସ୍ଥାପନ କର । ଏହି କାର୍ଯ୍ୟପାଇଁ ମୁଁ ଆପଣମାନଙ୍କୁ ଅନୁନୟ ବିନୟ କରୁଅଛି । ମାତାଙ୍କ ନାମରେ ଆଜ୍ଞା ଦେଉଅଛି । (କରତାଳି)

ଅମ୍ଭେମାନେ ସମସ୍ତେ ବର୍ତ୍ତମାନ ମାତାଙ୍କ କ୍ରୋଡରେ ବସିଅଛୁ । ଯଦି କେହି ପଚାରନ୍ତି—ମାତାଙ୍କ କ୍ରୋଡରେ ବସିଥିବା କିପରି ଅନୁଭବ କରଯାଇ ପାରେ, ତାଙ୍କର ପିତୁଳା କିପରି ହୃଦୟରେ ସ୍ଥାପନ କରଯାଇ ପାରେ, ତେବେ କେବଳ ଏହା ଉପରେ ଲେଖା ହୋଇଥିବା—"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପୀ ଗରୀୟସୀ" ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିବି । ଏହି ବାକ୍ୟଟି ବହୁକାଳରୁ ଶୁଣିଅଛି । କିନ୍ତୁ ତାର ଅର୍ଥ ବୁଝିବାକୁ, ବୋଧହୁଏ କେହି ଚେଷ୍ଟା କରନ୍ତି ନାହିଁ ।

ଦେଖନ୍ତୁ, ପ୍ରଥମେ ଜନନୀ । ଦ୍ୱିତୀୟରେ ଜନ୍ମଭୂମି, ତୃତୀୟରେ ସ୍ୱର୍ଗ । ମନୁଷ୍ୟ ଜନ୍ମରେ ପ୍ରତ୍ୟେକ ମନୁଷ୍ୟର ଜୀବନକୁ ଗୋଟିଏ ସ୍ରୋତ ବୋଲି ମନେକଲେ ଦେଖିବେ, ଏହି ସ୍ରୋତର ଆଦ୍ୟରେ ଜନନୀ, ମଧ୍ୟରେ ଜନ୍ମଭୂମି ଓ ଶେଷରେ ସ୍ୱର୍ଗ । ପ୍ରତ୍ୟେକ ଆତ୍ମାର ଏହିଗତି । ମନୁଷ୍ୟ ଜୀବନରେ ଆଦ୍ୟ—ଜନନୀ, କାର୍ଯ୍ୟ—ଜନ୍ମଭୂମି, ପୁରସ୍କାର—ମୁକ୍ତି ବା ସ୍ୱର୍ଗ । (କରତାଳି) ଏଥିପାଇଁ ଜନନୀ ଓ ଜନ୍ମଭୂମି ସ୍ୱର୍ଗଠାରୁ ମଧ୍ୟ ଗରୀୟସୀ ।

ପ୍ରତ୍ୟେକ ମନୁଷ୍ୟର ଗୋଟିଏ ଆତ୍ମାଅଛି । ତାହା ଈଶ୍ୱରଙ୍କର ଅଂଶ । ଏହି ଆତ୍ମା ପୃଥିବୀରେ କାର୍ଯ୍ୟକରି ଈଶ୍ୱରଙ୍କଠାରେ ମିଶିଯିବ । ଏ ଆତ୍ମା କେଉଁଠାରେ କାର୍ଯ୍ୟକରୁଛି ? କିପରି ସ୍ୱର୍ଗଲାଭ କରୁଛି ? ଏ ଆତ୍ମା ଜନ୍ମଭୂମିରେ କାର୍ଯ୍ୟକରେ । ଏ ପୃଥିବୀରେ ହିଁ ମନୁଷ୍ୟ ଦୟା, ଧର୍ମ, ପରୋପକାର କରି ସ୍ୱର୍ଗପ୍ରାପ୍ତ ହୁଏ । ମନେକରନ୍ତୁ, ଆଜି ପୃଥିବୀ ସମୁଦ୍ରରେ ମିଶିଯିବ । ତେବେ କେଉଁଠାରେ ଠିଆହୋଇ ମୁକ୍ତିଲାଭ ବା ସ୍ୱର୍ଗଲାଭର ଉପାୟ ଖୋଜିବ - ଅତଏବ କହେଁ—

"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ"

ପ୍ରଥମେ ମାତା ରକ୍ତ ଦେଇଥିଲେ । ସେହି ରକ୍ତ ବୃଦ୍ଧି କରିବାପାଇଁ ମୋ ଜନ୍ମଭୂମି ମୋତେ ଶସ୍ୟାଦି ଦେଉଅଛି । ଅତଏବ ଶରୀରର ଖାଦ୍ୟପଦାର୍ଥ ଦିଏ ମାତା—ତାହାର ରକ୍ଷକ ଓ ବର୍ଦ୍ଧକ ଜନ୍ମଭୂମି । ଅମ୍ଭେ-ମାନେ ପ୍ରଥମେ ପ୍ରସବ ହେଲାବେଳେ ଭୂମିଷ୍ଠ ହେଲୁ-ବୋଲି କହନ୍ତି । ଅର୍ଥାତ୍ ଆମ୍ଭମାନଙ୍କୁ ମାତା ଜନ୍ମଭୂମି କ୍ରୋଡରେ ଅର୍ପଣକରି ସେହି ଜନ୍ମଭୂମିର ପୂଜାକରିବାକୁ

ଆଦେଶ ଦିଅନ୍ତି । ଏହି କଥା ପରେ ଅନ୍ତଃକରଣରେ ଭକ୍ତ, ଶେଷ ଅବସ୍ଥା ସ୍ମରଣ କର । ମାତା ଯେଉଁ ରକ୍ତ ଦେଇଥିଲେ, ତାହା ନିଃଶେଷ ହେଉଛି । କେବଳ ସେ ଶରୀର ଅଛି । ତାହା ମାତୃଭୂମିର ମାଟିପରେ ସମାନ । ମାତୃଭୂମି ଉତ୍କଳ ଦେହରେ ଆତ୍ମା ରହିଛି । ମା'ଉତ୍କଳର କ୍ରୋଡରେ ବସି କଣ୍ଠ ତୁଳି ପରେ ପ୍ରାର୍ଥନା କର । ହୃଦୟରେ ଜନ୍ମଭୂମି ପିତୃଭୂ ଆପେ ଜାଗ୍ରତ ହେବ । (ଜନନୀ) ବସ୍ତୁ ବନ୍ଦନ କର । ଦେଖିବ, ତୁମ୍ଭ ହୃଦୟରେ ମା' ଅଛନ୍ତି । ଏହିତ ମାତୃଭୂମିର ପୂଜା । ଭାଇମାନେ । ପୂଜାନିମନ୍ତେ ଜନନୀ ଜନ୍ମଭୂମି ଉତ୍କଳ ମାତାଙ୍କର ଆବାହନ କର । ସମସ୍ତେ କହ ; "ବନ୍ଦଇ ଜନ୍ମଭୂମି"

❋ ❋ ❋

(୧୯୧୮ ମସିହାରେ କଟକରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀର ଅଧିବେଶନ ଆରମ୍ଭରେ ଦେଶମାତୃକାର ପୂଜା ଆବାହନୀରେ ପ୍ରଧାନ ପୂଜାରୀ ଉତ୍କଳ ଗୌରବ ମଧୁସୂଦନଙ୍କ ବକ୍ତବ୍ୟ" ).।

## ବିଶ୍ୱ ଖାଦ୍ୟ ସଂସ୍ଥାପକ୍ଷରୁ ଓଡ଼ିଶାକୁ ଗହମ ଯୋଗାଣ

୧୯୬୭ ଫେବୃଆରୀ ୧୬ ତାରିଖରେ ହିନ୍ଦୁସ୍ଥାନ ଟାଇମ୍ସରେ ପ୍ରକାଶିତ 'ଗହମ ଅଭାବ ଯୋଗୁଁ ଓଡ଼ିଶାରେ ରିଲିଫ୍ କାର୍ଯ୍ୟକ୍ରମ ବ୍ୟାହତ' ଶୀର୍ଷକ ସମ୍ବାଦ ସରକାରଙ୍କ ଦୃଷ୍ଟିକୁ ଆସିଛି । ପଶ୍ଚିମ ଓଡ଼ିଶାର ମରୁଡ଼ିଗ୍ରସ୍ତ ଅଞ୍ଚଳରେ ବର୍ତ୍ତମାନ କାର୍ଯ୍ୟକାରୀ ହେଉଥିବା ଖାଦ୍ୟ ପାଇଁ କାମ ଯୋଜନା ଗହମ ଅଭାବ ଯୋଗୁଁ ବନ୍ଦ ହୋଇଯିବା ଉପରେ ବୋଲି ଏଥିରେ ଯେଉଁ ସମ୍ବାଦ ପ୍ରକାଶ ପାଇଛି ତାହା ସତ୍ୟ ନୁହେଁ । ୧୯୬୫ ମସିହାରେ ବିଶ୍ୱ ଖାଦ୍ୟ ଯୋଜନାରୁ ୧୦,୦୦୦ ମେଟ୍ରିକ୍ ଟନ୍ ଗହମ ସାହାଯ୍ୟ ପାଇଁ ଭାରତ ସରକାର ଖାଦ୍ୟପାଇଁ କାମ ଯୋଜନା ପ୍ରବର୍ତ୍ତନ କରିବାକୁ ମଞ୍ଜୁର କରିଥିଲେ ଓ ଏହି କାମ ପ୍ରକୃତ ପକ୍ଷେ ୧୯୬୬ ଜାନୁଆରୀ ମାସରେ ଆରମ୍ଭ ହେଲା । ଉକ୍ତ ଗହମରୁ ୧୯୬୭ ଜାନୁଆରୀ ୩୧ ତାରିଖ ସୁଦ୍ଧା ୭,୭୦୦ ମେଟ୍ରିକ୍ ଟନ୍ ଗହମ ଖର୍ଚ୍ଚ ହୋଇ ଅବଶିଷ୍ଟ ୨,୩୦୦ ମେଟ୍ରିକ୍ ଟନ୍ ଗହମ ବଳିଲା । ଗତବର୍ଷ ଡିସେମ୍ବର ମାସରେ ଭାରତ ସରକାର ପୁଣି ୨,୦୦୦ ମେଟ୍ରିକ୍ ଟନ୍ ଗହମ ଯୋଗାଇଲେ ଓ ଏଥିମଧ୍ୟରୁ ୧୯୬୭ ଜାନୁଆରୀ ଶେଷ ସୁଦ୍ଧା ୫୦୦ ମେଟ୍ରିକ୍ ଟନ୍ ଗହମ ଖର୍ଚ୍ଚ ହୋଇ ଅବଶିଷ୍ଟ ୧,୫୦୦ ମେଟ୍ରିକ୍ ଟନ୍ ଗହମ ବଳିଲା । ଏପରି ୧୯୬୭ ଫେବ୍ରୁଆରୀ ପହିଲା ବେଳକୁ ବଳକା ବିଶ୍ୱ ଖାଦ୍ୟ ଯୋଜନାରୁ ମିଳିଥିବା ଗହମରୁ ରାଜ୍ୟ ସରକାରଙ୍କ ନିକଟରେ ୩,୮୦୦ ମେଟ୍ରିକ୍ ଟନ୍ ଗହମ ରହିଥିଲା ।

ବିଶ୍ୱ ଖାଦ୍ୟ କାର୍ଯ୍ୟକ୍ରମ ଯୋଜନାରୁ ଆଉ ଅଧିକା ୨୦,୦୦୦ ମେଟ୍ରିକ୍ ଟନ୍ ଗହମ ଯୋଗାଇବା ପାଇଁ ରାଜ୍ୟ ସରକାର ଭାରତ ସରକାରଙ୍କୁ ଅନୁରୋଧ କରିଛନ୍ତି । ଶୀଘ୍ର ୧୨,୫୦୦ ମେଟ୍ରିକ୍ ଟନ୍ ଗହମ ପଠାଇବା ପାଇଁ ଭାରତ ସରକାର ରୋମସ୍ଥିତ ବିଶ୍ୱ ଖାଦ୍ୟ କାର୍ଯ୍ୟକ୍ରମ ସଦରମହକୁମାର କର୍ତ୍ତୃପକ୍ଷଙ୍କ ସହ କଥାବାର୍ତ୍ତା ଚଳାଇଛନ୍ତି । ଇତିମଧ୍ୟରେ ଭାରତ ସରକାର ଗୋଟିଏ ସର୍ତ୍ତରେ ଅଧିକା ୪,୦୦୦ ମେଟ୍ରିକ୍ ଟନ୍ ଗହମ ମଞ୍ଜୁର କରିଛନ୍ତି । ଏହି ସର୍ତ୍ତଟି ହେଲା—ବିଶ୍ୱ ଖାଦ୍ୟ ଯୋଜନା କର୍ତ୍ତୃପକ୍ଷ ଯଦି ଆଉ ଅଧିକ ଗହମ ପଠାଇବା ପାଇଁ ରାଜି ନ ହୁଅନ୍ତି, ତାହାହେଲେ ରାଜ୍ୟ ସରକାର ଏହି ଗହମ ମୂଲ୍ୟ ବହନ କରିବେ । ତେଣୁ ଉପରୋକ୍ତ ସମ୍ବାଦରେ ଗହମର ଅଭାବ ବୋଲି ଯେଉଁ ସମ୍ବାଦ ପ୍ରକାଶ ପାଇଛି ତାହା ପୁରାପୁରି ଭିତ୍ତିହୀନ ଓ ଭ୍ରମାତ୍ମକ ।

ଭାରତରେ ହେଉ ବିଭିନ୍ନତା, ବହୁଭାଷା, ବହୁଜାତି ଓ ଜନଜାତି, ନାନା ଭୌଗୋଳିକ ପରିସ୍ଥିତି ମଧ୍ୟରେ ସଂସ୍କୃତି, ଐକ୍ୟ, ପ୍ରାଚୀନ ପରଂପରା ଓ ଗୌରବର ସମୁଜ୍ଜ୍ୱଳ ସ୍ତମ୍ଭ ସ୍ୱରୂପ ରହିଛି ସଂସ୍କୃତ ଭାଷା । କେତେ ଶତାବ୍ଦୀର ସେ ଗୌରବ, କେତେ ଶତାବ୍ଦୀର ସେ ପରଂପରା । ହିମାଚଳଠାରୁ କୁମାରିକା ପର୍ଯ୍ୟନ୍ତ ସର୍ବତ୍ର ତାର ପବିତ୍ର ଓ ମହାନ୍ ପ୍ରଭାବ ଅନୁଭୂତ ହେଉଛି । ଏହି ପୃଥିବୀରେ ସେହି ଭାଷା, ସେହି ସାହିତ୍ୟ ଓ ସେହି ସଂସ୍କୃତି ପ୍ରତି ଦୃଷ୍ଟି ଫେରିଛି । କେବଳ ଭାରତବାସୀ ନୁହେଁ—ସାରା ବିଶ୍ୱବାସୀ ମଧ୍ୟ ସେ ଗୌରବରେ ମୁଗ୍ଧଚିତ୍ତ ।

ମହା ଭାରତୀୟ ଭାବଧାରାକୁ ସ୍ମୃତି ପଟରେ ବାନ୍ଧି ରଖିଛନ୍ତି—ସେମାନେ ଏ ଜାତିର ନମସ୍ୟ । ଏ ସମସ୍ତ ମହାଭାରତୀୟ ଚିନ୍ତାଧାରା ଓ ଭାବନା କେବଳ ସଂସ୍କୃତ ଭାଷାରେ ହିଁ ବଂଚି ରହିଛି ।

### ବିଶ୍ୱ ଭାବନା

ଉତ୍ତର ଭାରତରୁ ଦକ୍ଷିଣ ଭାରତର ଶେଷ ପର୍ଯ୍ୟନ୍ତ ଦେବମନ୍ଦିର ଓ ଦେବାୟତନ ମାନଙ୍କରେ ନିତ୍ୟ ନୈମିତ୍ତିକ ପୂଜାପାଠ ଇତ୍ୟାଦିର ସମାପ୍ତିପରେ ମହା ଭାରତୀୟ ସଂସ୍କୃତିର ପ୍ରେରଣାରେ ଆଜିମଧ୍ୟ ବହୁଲୋକ

# ଭାରତୀୟ ସଂସ୍କୃତି ଓ ସଂସ୍କୃତ ସାହିତ୍ୟରେ ଓଡ଼ିଶାର ସ୍ଥାନ

ଲେ—ଶ୍ରୀ ଆର୍. ପି. ଶାସ୍ତ୍ରୀ

କେତେକ ଐଶ୍ୱର୍ଯ୍ୟ ବା ବିଭବଶାଳୀ ଦେଶ ବୈଜ୍ଞାନିକ ଗବେଷଣାର ଶୀର୍ଷସ୍ଥାନରେ ପହଞ୍ଚିବା ପରେ ମଧ୍ୟ ମଣିଷ ଜୀବନରେ ଶାନ୍ତିଲାଭ ନକରିପାରି ଶାନ୍ତିର ଅନ୍ୱେଷଣରେ ସେମାନେ ଭାରତୀୟ ଆଧ୍ୟାତ୍ମ ଦର୍ଶନର ଗବେଷଣାରେ ମନୋନିବେଶ କରି ଆସିଛନ୍ତି । ସେହି ସଂସ୍କୃତ ଭାଷାପ୍ରତି ବର୍ତ୍ତମାନ ସମସ୍ତଙ୍କର ଦୃଷ୍ଟି ପଡ଼ିଛି । ସଂସ୍କୃତ ଭାଷାରେହିଁ ଭାରତୀୟ ସଂସ୍କୃତି ଓ ଉଦାର ଭାବନା” ଲୋକାଃ ସମସ୍ତାଃ ସୁଖିନୋ ଭବନ୍ତୁ”—“ବସୁଧୈବ କୁଟୁମ୍ବକମ୍” ଶୁନୀଚୈବ ଶ୍ୱପାକେଚ ପଣ୍ଡିତାଃ ସମଦର୍ଶିନଃ”—ପ୍ରକଟିତ ହୋଇଛି । ଭାରତର ଗ୍ରାମ ପୁରପଲ୍ଲୀ ନଗର ଜନପଦ—ସର୍ବତ୍ର ଏବେ ମଧ୍ୟ ସେହି ଭାରତୀୟ ଐକ୍ୟ, ସଂହତି ଓ ସଂସ୍କୃତିର ମହାମନ୍ତ୍ର—ଗଙ୍ଗେଚ, ଯମୁନେ ଚୈବ, ଗୋଦାବରୀ, ସରସ୍ୱତୀ, ନର୍ମଦେ ସିନ୍ଧୁ, କାବେରୀ ଜଲେଽସ୍ମିନ୍ ସନ୍ନିଧିଂ କୁରୁ” କୁରୁକ୍ଷେତ୍ର, ଗୟା, ଗଙ୍ଗା ପ୍ରଭାସ, ପୁଷ୍କରାଣିଚ ଏତାନି ‘ପୁଣ୍ୟ ତୀର୍ଥାନି ସ୍ନାନକାଳେ ଭବନ୍ତିହ” ଲୋକ ମୁଖରେ ପ୍ରତିଧ୍ୱନିତ ହେଉଛି ଦେଶର ସବୁ ଅଞ୍ଚଳରେ, ଯେଉଁମାନେ ଏହି ଅଛନ୍ତି, ଯେଉଁମାନେକି ସଂସ୍କୃତ ଭାଷାରେ ଲିଖିତ ଭଗବତ୍ ପ୍ରାର୍ଥନା ଆବୃତ୍ତି କରି—

“ସର୍ବେ ଭବନ୍ତୁ ସୁଖିନଃ
ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ
ମା କଶ୍ଚିଦ୍ ଦୁଃଖ ଭାଗ୍ ଭବେତ୍ ।

ଏହିପରି ଉଦାର ପ୍ରାର୍ଥନା ହୁଏତ ଅନ୍ୟ କୌଣସି ଭାଷାରେ ଦେଖିବାକୁ ମିଳିବ ନାହିଁ । ତେଣୁ ସଂସ୍କୃତର ନାମ ହେଉଛି “ଦେବଭାଷା” ବା “ଦେବବାଣୀ” ।

ସଂସ୍କୃତ ସାହିତ୍ୟରେ ପ୍ରକୃତି ବର୍ଣ୍ଣନା ଓ ବିଭିନ୍ନ ରସର ବର୍ଣ୍ଣନା ପୃଥିବୀରେ ଅଦ୍ୱିତୀୟ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

କାଳିଦାସଙ୍କ ଶକୁନ୍ତଳା ନାଟକରେ କୁମାର ସମ୍ଭବ କାବ୍ୟ; ଓ ରଘୁବଂଶ ମହାକାବ୍ୟ ପ୍ରଭୃତିରେ ବହୁ ଶ୍ଳୋକ ଓ ବହୁ ବର୍ଣ୍ଣନା ରହିଛି—ଯାହାକି ଆଜିମଧ୍ୟ ପାଠକମାନଙ୍କୁ ବିମୋହିତ କରୁଛି । ଶକୁନ୍ତଳା ନାଟକର

ଗୋଟିଏ ଶ୍ଳୋକ ଏଠାରେ ଉଦ୍ଧାର କରୁଅଛୁ । ଏହି ଶ୍ଳୋକଟି କେତେ ଚମତ୍କାର ଓ ମନମୁଗ୍ଧକର ତାହା ସହଜେ ଅନୁମେୟ ।

ଚଳାପାଙ୍ଗା ଦୃଷ୍ଟିଂ ସ୍ପୃଶସି ବହୁଶୋ
ବେପଥୁ ମତୀଂ
ରହସ୍ୟା ଖ୍ୟାୟୀବ ସ୍ୱ ନସି ମୃଦୁ
କର୍ଣ୍ଣାନ୍ତିକ ଚରଃ
କରୌ ବ୍ୟାଧୁନ୍ୱ ତ୍ୟାଃ ପିବସି
ରତି ସର୍ବସ୍ୱ ମଧରମ୍
ବୟଂ ତତ୍ତ୍ୱାନ୍ୱେଷାନ୍
ମଧୁକର । ହତା ସ୍ତ୍ୱଂ ଖଳୁ କୃତୀ

ଶକୁନ୍ତଳା ବନ ବିହାର କରିବାବେଳେ ତାଙ୍କ ମୁହଁ ଉପରେ ଗୋଟିଏ ମହୁମାଛି ବାରମ୍ବାର ଉଡ଼ିବାର ଦେଖି, ଶକୁନ୍ତଳାଙ୍କ ସୌନ୍ଦର୍ଯ୍ୟ ବିମୁଗ୍ଧ ରାଜା ଦୁଷ୍ମନ୍ତଙ୍କ ମନକଥା କାଳିଦାସ ଉପରୋକ୍ତ ମତେ ବର୍ଣ୍ଣନା କରି ଲେଖିଥିଲେ ।

ସଂସ୍କୃତ ଭାଷାରେ ଯେ କେବଳ ସୁନ୍ଦର କାବ୍ୟ କବିତା, ସାହିତ୍ୟ ବେଦାନ୍ତ, ଉପନିଷଦ୍ ଓ ଦର୍ଶନ ଶାସ୍ତ୍ର ରହିଛି ତାନୁହେଁ, ଚିକିତ୍ସାବିଜ୍ଞାନ, ସଙ୍ଗୀତ ଓ ନୃତ୍ୟଶାସ୍ତ୍ର, ଜ୍ୟୋତିର୍ବିଜ୍ଞାନ, ଗଣିତଶାସ୍ତ୍ର, ଅର୍ଥଶାସ୍ତ୍ର, ଶିଳ୍ପ ବିଜ୍ଞାନ, ପଦାର୍ଥ ବିଜ୍ଞାନ, ପ୍ରଭୃତି ବହୁ ଶାସ୍ତ୍ର ରହିଛି । ତେବେ ବସ୍ତୁବାଦ ଅପେକ୍ଷା ଆଧ୍ୟାତ୍ମିକତା ଓ ଈଶ୍ୱରବାଦହିଁ ସଂସ୍କୃତ ଭାଷାରେ ପ୍ରାଧାନ୍ୟ ଲାଭ କରିଛି । ଶାସନତନ୍ତ୍ର ସମ୍ପର୍କରେ ମଧ୍ୟ କାଳିଦାସ ରଘୁବଂଶ କାବ୍ୟରେ ବର୍ଣ୍ଣନା କରି ଲେଖିଛନ୍ତି—

"ଯଥା ପ୍ରହଲ୍ଲାଦନା ଚନ୍ଦ୍ରଃ
ପ୍ରତାପାତ୍ ତପନୋ ଯଥା
ତଥୈବସୋଭୂତ୍ ନ୍ୱର୍ଥୋ
ରାଜା ପ୍ରକୃତି ର ଂଜନାତ୍ ।

ଚନ୍ଦ୍ର ଯେପରି ସଂସାରକୁ ଶୀତଳ ଜ୍ୟୋତ୍ସ୍ନା ପ୍ରଦାନ କରି ଲୋକମନରେ ଆହ୍ଲାଦ ସୃଷ୍ଟି କରେ, ସୂର୍ଯ୍ୟ ଯେପରି ଲୋକଙ୍କୁ ଆଲୋକ ଓ ଦୀପ୍ତି ପ୍ରଦାନ କରି ନିଜର ତପନ ନାମକୁ ସାର୍ଥକ କରିଛି ସେହିପରି ରାଜା ପ୍ରଜାମାନଙ୍କୁ ରଞ୍ଜନ କରିବା ଦ୍ୱାରା ହିଁ ନିଜର ନାମକୁ ସାର୍ଥକ କରିପାରିବ । ରାଜା କିପରି ପ୍ରଜାମାନଙ୍କୁ ନିଜର ପୁତ୍ର ପରି ପାଳନ କରିବା ଉଚିତ୍, ସେ ସମ୍ପର୍କରେ ଅର୍ଥ । ସପ୍ତଶତୀରେ ଗୋଟିଏ ସୁନ୍ଦର ବର୍ଣ୍ଣନା ରହିଛି ।"

ସ୍ୱାରୋଚିଷେ ଽନ୍ତରେ ପୂର୍ବଂ
ଚୈତ୍ର ବଂଶ ସମୁଦ୍ ଭବଃ
ସୁରଥୋ ନାମ ରାଜା ଭୂତ୍ ସମସ୍ତେ କ୍ଷିତି ମଣ୍ଡଳେ ।
ତସ୍ୟ ପାଳୟତଃ ସମ୍ୟକ୍
ପ୍ରଜାଃ ପୁତ୍ରାନି ବୌର ସାନ୍
ବଭୂବୁଃ ଶତ୍ରୁ ବୋ ଭୂପାଃ
କୋଳା ବିଧ୍ୱଂସି ନସ୍ତଦା ।।

ଅର୍ଥାତ୍ ଚୈତ୍ର ବଂଶ ସମ୍ଭୂତ ଏହି ସୁରଥ ନାମକ ରାଜା ପ୍ରଜାମାନଙ୍କୁ ନିଜ ଔରସରୁ ଜାତ ପୁତ୍ରପରି ପାଳନ କରିବା ଯୋଗୁଁ ଅନ୍ୟ କେତେକ ରାଜା ତାଙ୍କପ୍ରତି ଅସହିଷ୍ଣୁ ହୋଇ ତାଙ୍କର ଶତ୍ରୁତାଚରଣ କରିଥିଲେ ।

ମନୁଷ୍ୟ ତାର ଜୀବନ ଦଶାରେ ଯେପରି ସ୍ୱାର୍ଥାନ୍ଧ ନ ହେବ ଏବଂ ଭୋଗ ବିଳାସରେ ନିମଜ୍ଜିତ ହୋଇ ନୈତିକତା ଓ ମାନବିକତାର ମୂଲ୍ୟ ବୋଧକୁ ଯେପରି ଭୁଲି ନଯିବ ସେଥିପାଇଁ ସଂସ୍କୃତ ସାହିତ୍ୟରେ ଉପନିଷଦ୍ ମାନଙ୍କରେ ବହୁ ମୂଲ୍ୟବାନ ଉପଦେଶ ରହିଛି ଏବଂ ଶ୍ରୀମଦ୍ ଭାଗବତ ଗୀତାରେ ଏ ସଂପର୍କରେ ବହୁକଥା ବର୍ଣ୍ଣିତ ଅଛି । ଭଗବାନ ଶ୍ରୀକୃଷ୍ଣ ଶ୍ରୀମଦ୍ ଭାଗବତ ଗୀତାରେ କହିଛନ୍ତି—

ଦେହିନୋଽସ୍ମିନ୍ ଯଥା ଦେହେ
କୌମାରଂ ଯୌବନଂ ଜରା
ତଥା ଦେହାନ୍ତରଃ ପ୍ରାପ୍ତି
ର୍ଧୀରେ ସ୍ତତ୍ର ନ ମୁହ୍ୟତି ।

ଅର୍ଥାତ ଏହି ଶରୀର ଆତ୍ମା ଯେପରି କୌମାର, ଯୌବନ ଓ ଜରାବସ୍ଥା ଭୋଗ କରୁଛି ସେହିପରି ଏହି ଶରୀର ତ୍ୟାଗକରି ଆତ୍ମା ଅନ୍ୟ ଶରୀର ଗ୍ରହଣ କରିଥାଏ । ଏଥିରେ ଧୀର ସେ ମୁହ୍ୟମାନ ହେବା ଉଚିତ୍ ନୁହେଁ । ସେହିପରି ଏ ସଂପର୍କରେ ଆହୁରି ଅଧିକ ଶ୍ଳୋକ କହିଛନ୍ତି—

"ବାସାଂସି ଜୀର୍ଣ୍ଣାନୀ ଯଥା ବିହାୟ ନବାନି ଗୃହ୍ଣାତି ନରୋପରାଣି, ତଥା ଶରୀରାଣି ବିହାୟ ଜୀର୍ଣ୍ଣା ନ୍ୟନ୍ୟାନି ସଂଯାତି ନବାନିଦେହି ।"

ସଂସ୍କୃତ ଭାଷା ଓ ସାହିତ୍ୟ ହିଁ ଏ ଦେଶ ଓ ଏ ଜାତିକୁ ଏହି ମହାନ୍ ଚିନ୍ତାଧାରା ଓ ଦର୍ଶନର ପଥ ପ୍ରଦର୍ଶନ କରିଛି ।

ଭାରତର ବିଭିନ୍ନ ଅଂଚଳରେ ସଂସ୍କୃତ ସାହିତ୍ୟ, ଦର୍ଶନ, ଧର୍ମଶାସ୍ତ୍ର, ଅର୍ଥ ଶାସ୍ତ୍ର, କାବ୍ୟ, କବିତା ବିଭିନ୍ନ ସମୟରେ ଗଢ଼ି ଉଠିଛି । କାଳିଦାସ କେଉଁ ରାଜ୍ୟରେ ଜନ୍ମଗ୍ରହଣ କରିଥିଲେ ଓ କେବେ ଜନ୍ମଗ୍ରହଣ କରିଥିଲେ, ସେ ସମ୍ପର୍କରେ ବହୁ ଗବେଷକ ନାନା ଭାବରେ ଗବେଷଣା କରି ନାନା ମତ ପ୍ରକାଶ କରିଛନ୍ତି । କେତେକଙ୍କ ମତରେ କାଳିଦାସ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ପ୍ରାୟ ଦୁଇହଜାର ବର୍ଷତଳେ ଏ ଦେଶକୁ ତାଙ୍କର ଅତୁଳନୀୟ କାବ୍ୟ, କବିତା ଓ ସାହିତ୍ୟ ଦ୍ୱାରା ସମୃଦ୍ଧ ଓ ପ୍ରଖ୍ୟାତ କରି ଯାଇଛନ୍ତି । ଡକ୍‌ଟର କିଥ୍‌ଙ୍କ ପରି ଆଉ କେତେକ ପାଶ୍ଚାତ୍ୟ ଗବେଷକଙ୍କ ମତରେ କବି କାଳିଦାସ ଚତୁର୍ଥ ଖ୍ରୀଷ୍ଟାବ୍ଦରେ ତାଙ୍କ କାବ୍ୟ କୃତୀ-ଦ୍ୱାରା ଭାରତର ସଂସ୍କୃତ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଥିଲେ । କିନ୍ତୁ ଏକଥା ନିଶ୍ଚିତ ଯେ, କାଳିଦାସଙ୍କ ଜନ୍ମର କେତେ ସହସ୍ର ବର୍ଷ ପୂର୍ବରୁ ହୁଏତ ଭାରତରେ ସଂସ୍କୃତଭାଷା ପ୍ରଚଳିତ ଥିଲା । କାରଣ ବେଦ ଉପନିଷଦର ସଂସ୍କୃତ ଭାଷାଠାରୁ କାଳିଦାସଙ୍କ ଯୁଗର ସଂସ୍କୃତ ଭାଷା ଯେ, ଅଧିକ ସରଳ ଓ ସୁବୋଧ୍ୟ ଏଥିରେ ସନ୍ଦେହ ନାହିଁ । ସଂସ୍କୃତ ବ୍ୟାକରଣର ଜନ୍ମଦାତା ପାଣିନୀ ବ୍ୟାକରଣ ସୂତ୍ର ଲେଖିବା ପରେ ପାତଞ୍ଜଳି ମହାଭାଷ୍ୟରେ ତାର ଟୀକା ଓ ବ୍ୟାଖ୍ୟା କରାଯାଇଛି । ମହାଭାଷ୍ୟର ଭାଷା ଅଷ୍ଟାଧ୍ୟାୟୀ ସୂତ୍ରଠାରୁ ସରଳ ଓ ସହଜ ବୋଧ୍ୟ । ପାତଞ୍ଜଳି ତାଙ୍କ ମହାଭାଷ୍ୟରେ ପଦସଂସ୍କାର ସଂପର୍କରେ ବର୍ଣ୍ଣନା କରି ଲେଖିଯାଇଛନ୍ତି—

"ପଦାନି ପଦାନି ସଂସ୍କୃତ୍ୟ
ଉଚ୍ଚାର୍ଯ୍ୟତେ, ଆହର ପାତ୍ରମ୍
ପାତ୍ର ମାହର" ।

ଅର୍ଥାତ ଗୋଟିକ ପରେ ଗୋଟିଏ ପଦର ସଂସ୍କାର କରି ରଖି ଦେଉଛୁ । ତୁମେ ଯେପରି ଇଚ୍ଛା ତାକୁ ସେପରି ବ୍ୟବହାର କରିପାରିବ । ଉଦାହରଣ ଦର୍ଶାଇ ସେ କହିଲେ "ଆହର ପାତ୍ରମ" କୁହାଯାଇପାରେ ବା "ପାତ୍ରମାହର" ମଧ୍ୟ କୁହାଯାଇପାରେ । ଏଥିରେ ବ୍ୟାକରଣର କୌଣସି କଟକଣା ନାହିଁ । କିନ୍ତୁ ଇଂରାଜୀ, ଓଡ଼ିଆ, ହିନ୍ଦି ବା ଅନ୍ୟ ଯେ କୌଣସି ଭାଷାରେ ପ୍ରଥମେ କ୍ରିୟାପରେ କର୍ମ ଓ ତାପରେ କର୍ତ୍ତାପଦ ବ୍ୟବହାର କରି ବାକ୍ୟ ଲେଖିବା ସମ୍ଭବ ଏ ପର୍ଯ୍ୟନ୍ତ ହୋଇନାହିଁ ବା ସେ ଦିଗରେ ଉଦ୍ୟମ ମଧ୍ୟ ହୋଇ-ନାହିଁ । ପଣ୍ଡିତ ନୀଳକଣ୍ଠ ତାଙ୍କ ଲେଖା ଲେଖିରେ ଏ ଦିଗରେ କ୍ଷୀଣ ଉଦ୍ୟମ ଆରମ୍ଭ କରିଥିବାର କେତେକ ସୂଚନା ମାତ୍ର ମିଳୁଛି ।

## ସଂସ୍କୃତ ସାହିତ୍ୟକୁ ଉତ୍କଳର ଦାନ

ସଂସ୍କୃତ ସାହିତ୍ୟ ଓ ଭାରତୀୟ ସଂସ୍କୃତିର ଏହି ମହାନ୍ ରତ୍ନ ଭଣ୍ଡାରକୁ ଉତ୍କଳର ଦାନ କଣ ଏବଂ ଉତ୍କଳର ସ୍ଥାନ କେଉଁଠି ? ତାହା ହୁଏତ ଆଜି ବିସ୍ମୃତିର ଗର୍ଭରେ ଲୁକ୍‌କାୟିତ ହୋଇ ରହିଛି ।

କିନ୍ତୁ ସାମାନ୍ୟ ଅନୁଧ୍ୟାନ ଓ ପର୍ଯ୍ୟାଲୋଚନା କଲେ ଦେଖାଯାଏ ଯେ ଭାରତର ସଂସ୍କୃତ ସାହିତ୍ୟ ଭଣ୍ଡାରକୁ ଉତ୍କଳର ମଧ୍ୟ ଅନବଦ୍ୟ ଦାନ ରହିଛି । ପ୍ରାଗ୍ ବୈଦିକ ଯୁଗରୁ ଉତ୍କଳର ଶ୍ରେଷ୍ଠତ୍ୱ ବିଭିନ୍ନ ଗ୍ରନ୍ଥରେ ବର୍ଣ୍ଣିତ ଅଛି । କପିଳ ସଂହିତାରେ ଭାରତ ଓ ଉତ୍କଳର ଉତ୍କର୍ଷ ବର୍ଣ୍ଣନା କରାଯାଇ ଲେଖାଯାଇଛି—

"ବର୍ଷାଣାଂ ଭାରତଃ ଶ୍ରେଷ୍ଠଃ
ଦେଶ ନା ମୁତ୍କଳ ସ୍ମୃତଃ
ଉତ୍କଳସ୍ୟ ସମୋ ଦେଶୋ
ଦେଶୋନାସ୍ତି ମହୀ ତଳେ" ।

ଏହି କପିଳ ସଂହିତାରେ ଓଡ଼ିଶାର ଚାରିଗୋଟି ପ୍ରଧାନ ତୀର୍ଥ, ନୀଳାଚଳ, କୋଣାର୍କ, ବିରଜା ଓ ଭୁବନେଶ୍ୱରର ମାହାତ୍ମ୍ୟ ବର୍ଣ୍ଣନା କରାଯାଇଛି । ଓଡ଼ିଶାର ପ୍ରାଚୀନ ସଂସ୍କୃତ କବିଙ୍କ ଦ୍ୱାରା ଲିଖିତ ଏକାମ୍ର ଚନ୍ଦ୍ରିକା, ଶ୍ଳୋକମାଳାରେ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର କେଦାର-ଗୌରୀ ପୀଠ ଓ ଅନ୍ୟାନ୍ୟ ପୀଠ ସଂପର୍କରେ ସଂସ୍କୃତ କବିତାରେ ବହୁ ବିଷୟ ବର୍ଣ୍ଣନା କରାଯାଇଛି ।

"ତସ୍ମିନ କ୍ଷେତ୍ରେ ସଦାସନ୍ତି
କୃଷ୍ଣାର୍କ ପାର୍ବତୀ ହରାଃ" ।

"ତତ୍ର ଦେଶେ ଦ୍ୱିଜ ଶ୍ରେଷ୍ଠା ନଦୀନା ମୁତ୍ତ ମାନଦୀ ମହାନଦୀତି ବିଖ୍ୟାତ । ସର୍ବ ପାପ ପ୍ରଶୋଧିନୀ" ଋଷି-ମାନେ ଉତ୍କଳ ଦେଶର ମାହାତ୍ମ୍ୟ ବର୍ଣ୍ଣନା କରି ଏହା କହିଥିଲେ । ସୁକାନ୍ତି ନାମକ ତପସ୍ୱୀରୀଙ୍କ ତପସ୍ୟାରେ ପ୍ରୀତ ହୋଇ ଗଙ୍ଗା କିପରି ମହାନଦୀ ରୂପରେ ପୂର୍ବ-ସାଗରକୁ ବହିଆସିଥିଲେ ତାର ମଧ୍ୟ ଚମତ୍କାର ବର୍ଣ୍ଣନା ଏଥିରେ ଦେଖିବାକୁ ମିଳେ । ଗଙ୍ଗା କହିଥିଲେ—

ବିନ୍ଧ୍ୟା ଦସ୍ମୁଦ୍ ବହିଷ୍ୟାମି
ପଶ୍ଚାତ ପୂର୍ବ ସାଗରମ୍
ଯଦୁକ୍ତଂ ହି ତ୍ୱୟା ପୂର୍ବଂ

ତୋଷ୍ଟୁ ପୂର୍ବ ସାଗରମ୍
ଇଦାନୀଂ ଗଙ୍ଗେସେ ଗାତର୍ମନ
କାର୍ଯ୍ୟଂ ଶତାସ୍ତୁ ତେ ମେ ।

ଉପର୍ଯ୍ୟକ୍ତ ସ୍ତୁତିରେ ପ୍ରତିଶ୍ରୁତି ରକ୍ଷା କରି ପୂର୍ବ ସାଗରକୁ ବହିଯିବା ପାଇଁ ଧୂର୍ଜଟି ଗଙ୍ଗାଙ୍କୁ ଚରଣ ଜଳରେ ନେଇଥିଲେ । ମହାନଦୀଟି ତ୍ରିଶ୍ୟାତଂ ଶମୀ-ଶ୍ୟାମାଙ୍ଗ ସର୍ବଦା ...................ଧୃତ୍ୱାସ୍ତୁ ବିଗ୍ରହଂ ତସ୍ୟା ଜତାନ୍ତୁ ପୂର୍ବ ସାଗରମ୍ । ମହାନଦୀ ମହାପୁଣ୍ୟା ମହା-ଦେବ ଯଂଶା ଶୁଷ୍କ ଦ୍ୱିତୀୟ ବିଗ୍ରହ ବ୍ରୁବା ଆତ୍ମେ ଗଙ୍ଗାଂ ତୁ ମାଗସା ।

ଉତ୍ ପରେଶଂ ସମାରାଧ୍ୟ ଯାବଣ୍ଟ୍ରୀ ମହେଶ୍ୱରଃ
ତାରକିଂଗ୍ରାତ୍ପଳାଖ୍ୟାତା ସର୍ବ ପୁଣ୍ୟପ୍ରଦାନଦୀ
ମହାନଦ୍ୟାଂ ନରଃ ସ୍ନାତ୍ୱାଦୃଷ୍ଟ୍ୱା ବୈ ପାର୍ବତୀ ହରଂ
ସର୍ବପାପ ବିନିର୍ମୁକ୍ତୋ ଗଙ୍ଗା ସ୍ନାନ ଫଳଂ ଲଭେତ୍''

ଏଠାରେ ଉଲ୍ଲେଖ କରଯାଇପାରେ, ମହାପ୍ରଭୁ ଶ୍ରୀଚୈତନ୍ୟ, ପୁରୀ ଜଗନ୍ନାଥ ଦର୍ଶନାଭିଳାଷୀ ହୋଇ ଯେତେବେଳେ କଟକ ଗଡଗଡ଼ିଆ ଘାଟଠାରେ ମହାନଦୀରେ ସ୍ନାନକରି ସେଠାରେ ଶିବ ପାର୍ବତୀ ଦର୍ଶନ କରିଥିଲେ । ଏହା ପ୍ରାୟ ୫ଶହ ବର୍ଷ ତଳର ଘଟଣାବୋଲି କଥିତ ଅଛି ।

ଭାରତର ସଂସ୍କୃତି, ପରଂପରା, ଇତିହାସ ପୁରାଣ, ସଭ୍ୟତା ଓ ଜୀବନ ସହିତ ଗଙ୍ଗା ନଦୀ କିପରି ଓତଃପ୍ରୋତ ଭାବରେ ସଂପୃକ୍ତ ତାର ପ୍ରମାଣ ଏଥିରୁ ହିଁ ମିଳୁଛି" । ପଣ୍ଡିତ ଜବାହାରଲାଲ ନେହେରୁଙ୍କୁ ମଧ୍ୟ ତାଙ୍କର ସମଗ୍ର ପାଶ୍ଚାତ୍ୟ ଶିକ୍ଷାର ପ୍ରଭାବ ଭାରତୀୟ ଜାତୀୟ ସଭ୍ୟତା ଓ ପରଂପରା ଠାରୁ ଛିନ୍ନ କରିପାରିନଥିଲା । ଭାରତୀୟ ସଂସ୍କୃତି, ପରଂପରା ମଧ୍ୟରେ ଗଙ୍ଗାନଦୀର ଯେ, ଅପୂର୍ବ ପ୍ରଭାବ ରହିଛି ତାହା ଅନୁଧ୍ୟାନ କରି ସେ ଏତେ ଅଭିଭୂତ ହୋଇ ପଡ଼ିଥିଲେ ଯେ, ତାଙ୍କ ଅନ୍ତିମଇଚ୍ଛାରେ ସେ ଗଙ୍ଗା ନଦୀର ଇତିହାସ ଓ ସଂସ୍କୃତି କଥା ବର୍ଣ୍ଣନା କରି ଲେଖିଥିଲେ—

Ganga especially, is the river of India, be loved of her people, round which are intutwined her racial memories, her hopes and fears, her songs of triumph, her victories and her defeats. She has been a symbol of India's age long culture and civilisation, ever charging ever flowing and yet ever the same Ganga"

ଗଙ୍ଗା ହେଉଛନ୍ତି ପ୍ରଧାନତଃ ଭାରତର ନଦୀ, ଯୁଗ ଯୁଗ ଧରି ଏହି ନଦୀ ଭାରତୀୟ ଜନଗଣଙ୍କଦ୍ୱାରା ସମାଦୃତ ଓ ପୂଜିତ ହୋଇ ଆସୁଛି । ଏହି ନଦୀ ସହିତ କେତେ ସୁଦୂର ଅତୀତର ସ୍ମୃତି, ଆଶା, ଆକାଂକ୍ଷା, ସଂଗୀତ, ମୂର୍ଚ୍ଛନା, ଜୟ ଓ ପରାଜୟ ବିଜଡ଼ିତ ରହିଛି ତାହା ବର୍ଣ୍ଣନାତୀତ । ଭାରତୀୟ ସଂସ୍କୃତି ଓ ସଭ୍ୟତାର ପ୍ରତୀକ ସ୍ୱରୂପ ଏହି ଗଙ୍ଗା ନଦୀ କେତେ ଯୁଗ ଧରି ଭାରତ ବକ୍ଷରେ ପ୍ରବାହିତ ହୋଇ କେତେ ପରିବର୍ତ୍ତନ ଭିତର ଦେଇ ଗତି କରି ଆସିଛି, ତଥାପି ସେହି ଗଙ୍ଗା ରହିଛି । ସଂସ୍କୃତ ସାହିତ୍ୟରେ ବହୁ ଚମତ୍କାର ବର୍ଣ୍ଣନା ଗଙ୍ଗାନଦୀ ସଂପର୍କରେ ରହିଛି । ଜଣେ ପ୍ରାଚୀନ ଉତ୍କଳୀୟ କବି ଗଙ୍ଗାକୂଳରେ ପ୍ରାତଃସ୍ନାନ ଶେଷକରି ଗଙ୍ଗାଙ୍କ ପବିତ୍ରତା ଓ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ନିମ୍ନମତେ ସ୍ୱରଚିତ ସ୍ତୁତି ପାଠ କରିଥିଲେ—

ପ୍ରଖରେ ସ୍ନାତୀନାଂ
ନୃପତି ରମଣୀନାଂ କୁଚତଟୀ
ଗତୋ ଯାବନ୍ମାତ ମିଳତି
ତତ ତୋୟେ ମୃଗମଦଃ
ମୃଗାସ୍ତାବଦ୍ ବୈମାନିକ ଶତସହସ୍ରୈଃ
ପରିବୃତ୍ତାଃ ବିଶନ୍ତି ସ୍ୱଚ୍ଛନ୍ଦଂ ବିମଳ ବପୁଷୋ
ନନ୍ଦନ ବନମ୍ ।

ଭାରତୀୟ ସଭ୍ୟତା, ସାହିତ୍ୟ ଓ ସଂସ୍କୃତିର ମହା-ସ୍ରୋତରେ ଉତ୍କଳର ମଧ୍ୟ ଶ୍ରେଷ୍ଠ ଦାନ ରହିଛି । କେବଳ ଯେ, ବୈଷ୍ଣବ କବି ଜୟଦେବଙ୍କ ଲଳିତ କୋମଳ କାନ୍ତ ପଦ୍ୟାବଳୀରେ ତାନୁହେଁ, କିନ୍ତୁ ବିଶ୍ୱନାଥଙ୍କ "ସାହିତ୍ୟ ଦର୍ପଣ", ଚନ୍ଦ୍ରଶେଖରଙ୍କ "ସିଦ୍ଧାନ୍ତ ଦର୍ପଣ", ଗଦାଧରଙ୍କ ସ୍ମୃତି ଶାସ୍ତ୍ର, ଗଦାଧର ପଦ୍ଧତି, ସ୍ୱର୍ଣ୍ଣାଦ୍ରି ମହୋଦୟ, ପ୍ରଭୃତି ଗ୍ରନ୍ଥରେ ତାହା ମଧ୍ୟ ପ୍ରତିଫଳିତ ହୋଇଅଛି । ଉତ୍କଳୀୟ ପଣ୍ଡିତ ସଂସ୍କୃତ କବି ଓ ଲେଖକମାନଙ୍କର ସଂସ୍କୃତ ସାହିତ୍ୟକୁ ଦାନ ପ୍ରାୟ କାଳିଦାସ ଯୁଗରୁ ଖ୍ରୀଷ୍ଟପୂର୍ବରୁ ଓ ପରେ ଚତୁର୍ଥ ଶତାବ୍ଦୀଠାରୁ ରହିଥିବାର ପ୍ରମାଣ ମିଳୁଛି ।

## ସଂସ୍କୃତ ଭାଷାରେ ଓଡ଼ିଶାରେ ଶିଳାଲେଖ

ଓଡ଼ିଶାରେ ଗଙ୍ଗ ବଂଶୀୟ ରାଜାମାନଙ୍କ ଶାସନ ପୂର୍ବରୁ ଯେଉଁ ତାମ୍ରପତ୍ର ଓ ଶିଳାଲେଖ ପ୍ରବର୍ତ୍ତିତ ଥିଲା, ସେଥିରେ ଅତି ଉଚ୍ଚକୋଟୀର ସଂସ୍କୃତ ଲେଖାମାନ ରହିଥିବାର ପ୍ରମାଣ ମିଳେ । ରାଜ୍ୟ ସରକାରଙ୍କ ଭୁବନେଶ୍ୱରସ୍ଥିତ ପ୍ରତ୍ନତତ୍ତ୍ୱାଗାର (ମ୍ୟୁଜିୟମ)ରେ ଓଡ଼ିଶାରେ ବହୁ ପ୍ରାଚୀନ ସଂସ୍କୃତ କବିମାନଙ୍କଦ୍ୱାରା ଲିଖିତ ତାଳପତ୍ର ପୋଥି

ସଂଗୃହୀତ ହୋଇ ରହିଛି । ଏଥିରେ କାବ୍ୟ ଅଳଙ୍କାର ସଂସ୍କୃତ ଇତ୍ୟାଦି ରହିଛି । ଅଶୋକଙ୍କ ସମୟରେ ଯେଉଁ ଶିଳାଲେଖ ଅନୁଶାସନ ପ୍ରବର୍ତ୍ତିତ ହୋଇଥିଲା ସେଗୁଡ଼ିକ ପ୍ରଚଳିତ ସଂସ୍କୃତଠାରୁ ଭିନ୍ନ ହେଲେ ମଧ୍ୟ ସେଥିରେ ସଂସ୍କୃତର ପ୍ରଭାବ ରହିଛି । ପ୍ରାୟ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଲିଖିତ ଶିଳାଲେଖଗୁଡ଼ିକ ଗଞ୍ଜାମ ଜିଲ୍ଲା ଜଉଗଡ଼ଠାରେ ଦେଖିବାକୁ ମିଳେ ।

ଜ୍ଞାନ ସିଦ୍ଧିଃ ନାମକ ଏକ ବୌଦ୍ଧ ଧର୍ମଗ୍ରନ୍ଥ ଉତ୍କଳୀୟ ରାଜା ଇନ୍ଦ୍ରଭୂତି ସପ୍ତମ ଶତାବ୍ଦୀରେ ଲେଖିଥିବାର ପ୍ରମାଣ ଐତିହାସିକମାନଙ୍କ ଲେଖାରୁ ଦେଖିବାକୁ ମିଳେ । ଜ୍ଞାନସିଦ୍ଧିଃ ଗ୍ରନ୍ଥର ପ୍ରସ୍ତାବନାରେ ଉଲ୍ଲେଖ କରାଯାଇଛି ଯେ, ଉତ୍କଳୀୟ ମୁରାରିଙ୍କଦ୍ୱାରା ସଂସ୍କୃତରେ ଲିଖିତ "ଅନଘ ରାଘବ" ନାଟକ ଶ୍ରୀଜଗନ୍ନାଥଙ୍କ ଯାତ୍ରା ସମୟରେ ଅଭିନୀତ ହୋଇଥିଲା । ଅନଘ ରାଘବ ନାଟ୍ୟ ଭାରତର ଅନ୍ୟାନ୍ୟ ପ୍ରଦେଶରେ ଏପରି କି ବିଦେଶରେ ମଧ୍ୟ ସଂସ୍କୃତ ପ୍ରେମୀମାନଙ୍କଦ୍ୱାରା ସମାଦୃତ ହେଉଛି ।

ଅଧ୍ୟାପିକା ଡକ୍ଟର ସାବିତ୍ରୀ ରାଉତ ଏକ ଲେଖାରେ ଲେଖିଛନ୍ତି ଯେ, ଅଧ୍ୟାପକ Klinth ଓ ଅଧ୍ୟାପକ Wilson ପ୍ରଭୃତି ପାଶ୍ଚାତ୍ୟ ଗବେଷକମାନଙ୍କ ମତରେ ଅନଘ ରାଘବ ନାଟକର କେତେକ ବର୍ଣ୍ଣନାରେ ପ୍ରମାଣ ମିଳେ । ଏହା ଅତି ପ୍ରାଚୀନ "ମୁରାରେ ସ୍ତୃତୀୟ ପନ୍ଥା" ବୋଲି ଗୋଟିଏ ପ୍ରବାଦ ଏପର୍ଯ୍ୟନ୍ତ ଓଡ଼ିଶାରେ ପ୍ରଚଳିତ ଅଛି । ଓଡ଼ିଶାରେ ଖଣ୍ଡଗିରି ଅଂଚଳର ଆଚାର୍ଯ୍ୟ ଶୁଭଚନ୍ଦ୍ର ଜ୍ଞାନାର୍ଣ୍ଣବ ନାମକ ଏକ ଯୋଗଶାସ୍ତ୍ର ରଚନା କରିଥିଲେ । ରାଜା ପୁରୁଷୋତ୍ତମ ଦେବଙ୍କ ସମୟରେ ତ୍ରିକାଣ୍ଡ କୋଷ, ହାରାବଳି, ଏକାକ୍ଷର କୋଷ, ଦ୍ୱିରୂପ କୋଷ ଇତ୍ୟାଦି ଅଭିଧାନ ଗ୍ରନ୍ଥ ଓଡ଼ିଶାର ଗ୍ରନ୍ଥକାର ଓ ଲେଖକମାନଙ୍କଦ୍ୱାରା ଲିଖିତ ହୋଇଥିଲା । ୧୦୯୯ରେ ପଞ୍ଚସିଦ୍ଧାନ୍ତ ଭାସ୍ୱତୀ ନାମକ ଜ୍ୟୋତିଷ ଗ୍ରନ୍ଥ, ଜ୍ୟୋତିଷ ବିଜ୍ଞାନୀ, ଶ୍ରୀ ଶତାନନ୍ଦ ଆଚାର୍ଯ୍ୟ ରଚନା କରିଥିଲେ । ଭାରତରେ ଏହି ଗ୍ରନ୍ଥର ବିଶେଷ ସମାଦର ହୋଇଥିଲା ଏବଂ ପରବର୍ତ୍ତୀ କାଳରେ ଏହି ଗ୍ରନ୍ଥ ଉପରେ ବହୁ ଟୀକା ପ୍ରକାଶିତ ହୋଇ ଥିବାର ପ୍ରମାଣ ମିଳେ । ଏହାଛଡ଼ା ପଣ୍ଡିତ ଶତାନନ୍ଦ—ଶତାନନ୍ଦ ସଂଗ୍ରହ ଓ ଶତାନନ୍ଦ ରତ୍ନମାଳା ନାମରେ ଦୁଇଟି ଧର୍ମଶାସ୍ତ୍ର ସଂସ୍କୃତରେ ରଚନା କରିଥିଲେ ।

ପରବର୍ତ୍ତୀ କାଳରେ ଗଦାଧର ପଦ୍ଧତି ସ୍ମୃତିଶାସ୍ତ୍ର ମଧ୍ୟ ଜଣେ ଉତ୍କଳୀୟ ପଣ୍ଡିତ ରଚନା କରିଥିଲେ । ଏହି ସ୍ମୃତିଶାସ୍ତ୍ର ସଂପର୍କରେ ଏକ ଅତି କୌତୁହଳପୂର୍ଣ୍ଣ ପ୍ରବାଦ ଜଡ଼ିତ ଅଛି । ପଣ୍ଡିତ ଗଦାଧର ତାଙ୍କ ସ୍ମୃତିଶାସ୍ତ୍ର ଲେଖିବା ବେଳେ ଓଡ଼ିଶାର ଗ୍ରାମେ ଗ୍ରାମେ ବହୁଳ ଭାବରେ ବ୍ୟବହୃତ କାଞ୍ଜିପାଣି ଖାଇବା ନିଷିଦ୍ଧ କରି ଗୋଟିଏ ବାକ୍ୟ ଲେଖିଦେଇ ଥିଲେ । କିନ୍ତୁ ଗଦାଧରଙ୍କ ବିଦୁଷୀ ମାତା ପୁତ୍ରଙ୍କୁ ଉପଦେଶ ଦେଇ କହିଥିଲେ ଯେ ଉତ୍କଳ ଦେଶରେ କାଞ୍ଜି ଗ୍ରାମେ ଗ୍ରାମେ ପ୍ରସିଦ୍ଧ ଏବଂ କାଞ୍ଜି ପାନ ନିଷିଦ୍ଧ କରିବା ଦ୍ୱାରା ସାଧାରଣ ଲୋକଙ୍କର ଅସୁବିଧା ହେବ । କାରଣ ସାଧାରଣ ଲୋକଙ୍କର ଖାଦ୍ୟ ଓ ତର୍କାରୀ ରୂପେ ମଧ୍ୟ ତାହା ବ୍ୟବହୃତ ହୋଇଥାଏ । ଏହାପରେ ସ୍ମୃତିକାର ଗଦାଧର ନିଜ ମାତୃଭକ୍ତି ନିଦର୍ଶନ ରୂପେ ତାଙ୍କ ରଚିତ ଧର୍ମଶାସ୍ତ୍ରରେ ଲେଖିଥିଲେ । "ସଫଳା କାଞ୍ଜିକା ଗ୍ରାହ୍ୟା" ଇତି ମାତୃବଚନାତ୍ ।

୧୪୩୫ ଖ୍ରୀଷ୍ଟାବ୍ଦଠାରୁ ୧୫୪୦ ଏହି ଶତାଧିକ ବର୍ଷ ମଧ୍ୟରେ ଓଡ଼ିଶାରେ ସଂସ୍କୃତ ସାହିତ୍ୟ ଓ ସଂସ୍କୃତ ଭାଷାର ବ୍ୟାପକ ପ୍ରସାର ଓ ଉନ୍ନତି ଘଟିଥିବାର ପ୍ରମାଣ ମିଳେ । କେନ୍ଦୁବିଲ୍ୱ ଗ୍ରାମବାସୀ ଉତ୍କଳୀୟ କବି "ଜୟଦେବ" ମଧୁର କୋମଳ କାନ୍ତ ପଦ୍ୟାବଳୀ ସଂସ୍କୃତ ସାହିତ୍ୟରେ କେବଳ ଯେ ଅଦ୍ୱିତୀୟ ସ୍ଥାନ ଅଧିକାର କରିଛି ତା ନୁହେଁ, କିନ୍ତୁ ଭାରତର ସର୍ବତ୍ର ଅଦ୍ୟାବଧି ତାହା ଲୋକପ୍ରିୟ ହୋଇ ରହିଛି । ଆଜି ମଧ୍ୟ ଓଡ଼ିଶାର ବହୁ ଜଗନ୍ନାଥ ମନ୍ଦିର ଓ ରାଧାକୃଷ୍ଣ ମନ୍ଦିରମାନଙ୍କରେ ସନ୍ଧ୍ୟା ଆଳତୀ ସମୟରେ ଦଶାବତାର ଗୀତ ଶୁଣିବାକୁ ମିଳେ । ଶ୍ରୀମନ୍ଦିରରେ ତ ଦଶାବତାର ଗୀତ ବରାବର ଗାନ କରାଯାଇ ଥାଏ । କବି ଜୟଦେବ ଗୀତଗୋବିନ୍ଦ କାବ୍ୟର ତୃତୀୟ ଖଣ୍ଡରେ ଲେଖି ଯାଇଛନ୍ତି "ବର୍ଣ୍ଣିତଂ ଜୟଦେବକ ହରେରିଦଂ ପ୍ରବଣେନ କେନ୍ଦୁବିଲ୍ୱ ସମୁଦ୍ର ସମ୍ଭବ ରୋହିଣୀ ରମଣେନ" ଏଥିରୁ ଅତି ସହଜେ ଅନୁମେୟ ଯେ କବି ଜୟଦେବ ନିଜର ଜନ୍ମଭୂମି ଉତ୍କଳର ପ୍ରାଧାନ୍ୟ ପ୍ରତିପାଦନ କରିବାକୁ ଭୁଲି ଯାଇ ନଥିଲେ ।

ଏହି ସମୟ ମଧ୍ୟରେ..................ଗୋବର୍ଦ୍ଧନାଚାର୍ଯ୍ୟ ଆର୍ଯ୍ୟା ସପ୍ତଶତି ଏବଂ ତାଙ୍କ ଭାଇ ଉଦୟନାଚାର୍ଯ୍ୟ ମେଘେଶ୍ୱର ଓ ଶୋଭନେଶ୍ୱର ନାମକ ଦୁଇଟି ଉପାଦେୟ ଶିଳାଲିପି ରଚନା କରିଥିଲେ । ଉଦୟନାଚାର୍ଯ୍ୟ ଓ କବି ବିଦ୍ୟାଧର ଲାଙ୍ଗୁଳା ନରସିଂହ ଦେବଙ୍କ ରାଜତ୍ୱ କାଳରେ ପ୍ରସିଦ୍ଧ ଅଳଙ୍କାର ଶାସ୍ତ୍ର ଏକା ବଳୀ ରଚନା କରିଥିଲେ । ପଣ୍ଡିତ ନାରାୟଣ ଦାସ ଓ ଉଦୟନାଚାର୍ଯ୍ୟଙ୍କ ଗୀତ-ଗୋବିନ୍ଦ ସମଗ୍ର ଦେଶରେ ସମାଦୃତ ହୋଇଥିଲା । ୧୩୮୫ ରେ ନରସିଂହ ଦେବଙ୍କ ସଭାକବି ପଣ୍ଡିତ କୃଷ୍ଣାନନ୍ଦ ମହାପାତ୍ର ସହୃଦୟାନନ୍ଦ ସଂସ୍କୃତ ମହାକାବ୍ୟ

ରଚନା କରିଥିଲେ । ଏହି ମହାକାବ୍ୟରେ ବର୍ଣ୍ଣନା ଶୈଳୀ ଓ ପଦ ଲାଳିତ୍ୟ ଶ୍ରୀ ହର୍ଷଙ୍କୃତ ନୈଷଧ ମହାକାବ୍ୟ ସହିତ ସମାନବୋଲି ବହୁ ପଣ୍ଡିତ ଓ ବହୁ ବିଦ୍ୱାନ୍ ମତପ୍ରକାଶ କରିଛନ୍ତି । ଅଳଙ୍କାର ଶାସ୍ତ୍ର କାବ୍ୟ ପ୍ରକାଶର ଟୀକା, କାବ୍ୟ ପ୍ରକାଶ ଦୀପିକା ଲେଖି ଚଣ୍ଡିଦାସ ବିଶେଷ ଖ୍ୟାତି ଅର୍ଜନ କରିଥିଲେ । ସେହି ସମୟ ମଧ୍ୟରେ କବି ବିଶ୍ୱନାଥ 'ରାଘବ ବିଳାସ' ମହାକାବ୍ୟକୁ କୁବଳୟାଶ୍ୱ ଚରିତ, ପ୍ରଶସ୍ତି ରତ୍ନାବଳୀ, ଚନ୍ଦ୍ରକଳା ନାଟିକା, ନରସିଂହ ବିଜୟ ନାଟିକା, ପ୍ରଭାବତୀ ପରିଣୟ, କାବ୍ୟ-ଭୁପ୍ରସିଦ୍ଧ ଅଳଙ୍କାର ଶାସ୍ତ୍ର ସାହିତ୍ୟ ଦର୍ପଣ, ପ୍ରକାଶ ଦର୍ପଣ ଗ୍ରନ୍ଥଲେଖି ସମସ୍ତ ଭାରତରେ ଉତ୍କଳର ଖ୍ୟାତି, ଗୌରବ ଓ ପାଣ୍ଡିତ୍ୟ ବିସ୍ତାର କରିଥିଲେ ।

ବିଶ୍ୱନାଥଙ୍କ ପୁତ୍ର ଅନନ୍ତ 'ସାହିତ୍ୟ ଦର୍ପଣ' ର ଲୋଚନ ଟୀକା ଲେଖିଥିଲେ । କପିଳେଶ୍ୱରଦେବଙ୍କ ରାଜତ୍ୱ ସମୟରେ ଉତ୍କଳର ସଂସ୍କୃତ ସାହିତ୍ୟର ବିଶେଷ ପ୍ରସାର ଓ ଅଭିବୃଦ୍ଧି ଘଟିଥିଲା । ନିଜେ କପିଳେଶ୍ୱର-ଦେବ ପରଶୁରାମ ବ୍ୟାୟୋଗ ଓ ପୁରୁଷୋତ୍ତମ ଦେବ ଅଭିନବ ବେଣୀ ସଂହାର ନାଟକ, ଅଭିନବ ଗୀତ-ଗୋବିନ୍ଦ କାବ୍ୟ ରଚନା କରିଥିଲେ । ପୁରୁଷୋତ୍ତମଙ୍କ ସଭା କବି କବିଚନ୍ଦ୍ର ରାୟ ଦିବାକର ବର୍ଣ୍ଣନା ଅଦ୍ଭୁତ ଖଣ୍ଡକାବ୍ୟ, ସୁଲୋଚନା ମାଧବ କାବ୍ୟ, ଗୀତ ମୁକୁନ୍ଦ, ସଂଗୀତ ଚିନ୍ତାମଣି, କୁତୂହଳ ବିଳାସ ଇତ୍ୟାଦି ସଂସ୍କୃତ କାବ୍ୟ ଓ ନାଟକମାନ ଲେଖିଥିଲେ । ସେ ସମୟରେ ମଧ୍ୟ ନୃସିଂହ ଚମ୍ପୂ, କଳା କୌମୁଦୀ, କଟାକ୍ଷ ଶତକ ପ୍ରଭୃତି ରଚିତ ହୋଇଥିଲା । ଭୋଇ ବଂଶର ପ୍ରତିଷ୍ଠାତା ରାଜା ରାମଚନ୍ଦ୍ର ଦେବ କୃଷ୍ଣଭକ୍ତି କାହ୍ନଲ୍ୟ ନାଟକ, ନାରୀକବି ମାଧବୀ ଦେବୀଙ୍କ ପୁରୁଷୋତ୍ତମ ଦେବ ନାଟକ, କବି ଭୂଷଣ ଗୋବିନ୍ଦଙ୍କ ସମୃଦ୍ଧି ମାଧବ, ରୁଦ୍ର ରାୟଙ୍କ ଉଷା ପରିଣୟ ନାଟକ ସଂସ୍କୃତ ସାହିତ୍ୟକୁ ଅଧିକ ଋଦ୍ଧିମନ୍ତ କରିଛି । ଗୋପୀନାଥ ମିଶ୍ରଙ୍କ ରସ କଳ୍ପଦ୍ରୁମ, ଅଳଙ୍କାର ଶାସ୍ତ୍ର, କବି କଣ୍ଠହାର, ଅଳଙ୍କାର ଚିନ୍ତାମଣି, ଚିକିଟିଆ ରାଜା ଯଦୁନାଥ ସିଂହଙ୍କ ଅଭିନୟ ଦର୍ପଣ—ପ୍ରକାଶ ଓଡ଼ିଶାର ସଂସ୍କୃତ ପଣ୍ଡିତମାନଙ୍କର ପାଣ୍ଡିତ୍ୟ ଓ ବିଦ୍ୟାବୁଦ୍ଧିର ପ୍ରଶସ୍ତି ପ୍ରସାର କରେ । ଓଡ଼ିଶାର ସଂସ୍କୃତ ବ୍ୟାକରଣ 'ଲଘୁ କାରୀକା' ପ୍ରବୋଧ ଚନ୍ଦ୍ରିକା, ଭ୍ରମର ଦର୍ପଣ, ବସୁ ପ୍ରକ୍ରିୟା, ରତ୍ନସାର ଓ ନାମ ନିର୍ମଳ ଗ୍ରନ୍ଥର ବୈଶିଷ୍ଟ୍ୟ ଭାରତର ସଂସ୍କୃତାଭିଜ୍ଞ ମାନଙ୍କ ମଧ୍ୟରେ ସମାଦୃତ ହୋଇଥିଲା । ସଂସ୍କୃତ ସଂଗୀତ ଗ୍ରନ୍ଥ ରଚନାରେ ମଧ୍ୟ ଓଡ଼ିଶା ତାର ବୈଶିଷ୍ଟ୍ୟ ପ୍ରତିପାଦିତ କରିଛି । କୃଷ୍ଣଦାସ ବଡ଼ଜେନାଙ୍କ ସଂଗୀତ ପ୍ରକାଶ, କବି ହଳଧରଙ୍କ ସଂଗୀତ କଳ୍ପଲତା ପୁରୁଷୋତ୍ତମଙ୍କ ସଂଗୀତ ନାରାୟଣ କବି ନାରାୟଣଙ୍କ ସଂଗୀତ ସରଣୀ, ରଘୁନାଥଙ୍କ ନାଟକ ମନୋରମା, ସଂଗୀତାର୍ଣ୍ଣବ ଚନ୍ଦ୍ରିକା, ସଂସ୍କୃତ ସଂଗୀତ ଶାସ୍ତ୍ରରେ ଉତ୍କଳୀୟମାନଙ୍କ ରସସୃଷ୍ଟିପାଟବତା ଓ ପାଣ୍ଡିତ୍ୟକୁ ସମସ୍ତ ଦେଶରେ ପ୍ରତିଷ୍ଠିତ କରିପାରିଥିଲା ।

ଉତ୍କଳର ପଣ୍ଡିତମାନେ ବିଭିନ୍ନ ପୁରାଣ ଶାସ୍ତ୍ରର ଟୀକା ଲେଖିବା ସଙ୍ଗେ ସଙ୍ଗେ କେତେଗୁଡ଼ିଏ ମୌଳିକ ପୁରାଣ ଗ୍ରନ୍ଥ ମଧ୍ୟ ସଂସ୍କୃତରେ ରଚନା କରିଥିଲେ । ସେଗୁଡ଼ିକ ମଧ୍ୟରେ ପୁରୁଷୋତ୍ତମ ମହାତ୍ମ୍ୟ, ନିଳାଦ୍ରି ମହୋଦୟ ମୁକ୍ତି ଚିନ୍ତାମଣି, ଯାତ୍ରା ଭାଗବତ ଏକାମ୍ର ପୁରାଣ, ସ୍ୱର୍ଣ୍ଣାଦ୍ରି ମହୋଦୟ ବିରଜାକ୍ଷେତ୍ରେ ମହାତ୍ମ୍ୟ, ଶତାନନ୍ଦ ସ୍ମୃତି ସମୁଚ୍ଚୟ ପ୍ରଭୃତି ଉଲ୍ଲେଖ ଯୋଗ୍ୟ । କର୍ମକାଣ୍ଡ ଗ୍ରନ୍ଥ ମଧ୍ୟରେ ଅଗ୍ନିହୋମ ପଦ୍ଧତି, ବିବାହ ପଦ୍ଧତି ନିତ୍ୟାଗ୍ନିର ପଦ୍ଧତି, ଅଗ୍ନିହୋତ୍ର ହୋମ, ପ୍ରାୟଶ୍ଚିତ ପଦ୍ଧତି, ସ୍ମୃତି ଦର୍ପଣ, ସ୍ମୃତି ସର୍ବସ୍ୱ, ପ୍ରାୟଶ୍ଚିତ ପ୍ରଦୀପିକା, ଦୁର୍ଗୋତ୍ସବ କୃତ୍ୟ ପଦ୍ଧତି ଇତ୍ୟାଦି ରହିଛି ।

ଆୟୁର୍ବେଦ ଶାସ୍ତ୍ରରେ ନିଦାନ ଶାସ୍ତ୍ର, ଚିକିତ୍ସାର୍ଣ୍ଣବ, ପଥ୍ୟାପଥ୍ୟ ବିନିଶ୍ଚୟ, ନାଡୀ ପରୀକ୍ଷା, ବୈଦ୍ୟ ହୃଦୟାନନ୍ଦ, ପର୍ଯ୍ୟାୟ ମୁକ୍ତାବଳୀ, ଭେଷଜ ରତ୍ନାବଳୀ, ଆୟୁର୍ବେଦ ସାର ସଂଗ୍ରହ, ଅଭିନବ ଚିନ୍ତାମଣି ଭଳି ପ୍ରସିଦ୍ଧ ଗ୍ରନ୍ଥ ସଂସ୍କୃତ ଭାଷାକୁ ଉତ୍କଳର ପଣ୍ଡିତ ଓ ମନିଷୀମାନେ ଦାନ କରି ଯାଇଛନ୍ତି ।

ଜ୍ୟୋତିଷ ଶାସ୍ତ୍ରରେ ପଞ୍ଚସିଦ୍ଧାନ୍ତ ଭାସ୍ୱତୀ ଗ୍ରନ୍ଥ ଜ୍ୟୋତିଷ ଚନ୍ଦ୍ରୋଦୟ, ସିଦ୍ଧାନ୍ତ ଦର୍ପଣ ପ୍ରଭୃତି ଦେଶ ବିଦେଶରେ ଆଦୃତ ହୋଇ ପାରିଛି ।

କବିବର ରାଧାନାଥ ସିଦ୍ଧାନ୍ତ ଦର୍ପଣ ରଚୟିତା ପଠାଣି ସାମନ୍ତ ସାନ୍ତ୍ୱନା ଦେଇ, ଲେଖିଥିଲେ—

"ସିଦ୍ଧାନ୍ତ ଦର୍ପଣ ହେବ ନାହିଁ ଲୟ
ନର ଦେହେ ଥିବ ଯାବତ ହୃଦୟ"

ଏବେ ପୁଣି ଏ ଦେଶରେ ସିଦ୍ଧାନ୍ତ ଦର୍ପଣର ଗବେଷଣା ଚର୍ଚ୍ଚା ଆରମ୍ଭ ହେଲାଣି । ସଂସ୍କୃତ ମହା-ଭାରତ ଗ୍ରନ୍ଥ ପରି ଏକ ବିରାଟ ଗ୍ରନ୍ଥ 'ଶ୍ରୀରାମାୟଣ ମହାକାବ୍ୟ' ଓଡ଼ିଶାର ପଣ୍ଡିତ ଦିବାକର ମିଶ୍ର ଲେଖି ସଂସ୍କୃତ ପ୍ରେମୀମାନଙ୍କର ପ୍ରଶଂସା ଅର୍ଜନ କରିଥିଲେ । ଏତଦ୍ ବ୍ୟତୀତ କବି ଦିବାକରଙ୍କ ପାରିଜାତ ହରଣ ନାଟକ, ଭାବତୀ ନାଟକ, ରସ ମଞ୍ଜରୀ, ପାର୍ବତୀ ଶତକ, ହରି ଚରିତ ଚମ୍ପୂ ଏବଂ ତାଙ୍କ ସମସାମୟିକ

...ରି ପ୍ରତିଜ୍ଞିମ ଦେବାଚାର୍ଯ୍ୟ, ଭକ୍ତି ଭାଗବତ, ଭକ୍ତ୍ୟାମୃ-
...ଣୀ ନାଟକ, ଭକ୍ତିବୈଭବ ନାଟକ ଏହାପରେ
ପ୍ରତାପରୁଦ୍ରଙ୍କ ସମୟରେ ମହାକବି ମାର୍କଣ୍ଡେୟ 'ଦଶ-
ଗ୍ରୀବ ବଧ' କାବ୍ୟ ଓ 'ପ୍ରାକୃତ ସର୍ବସ୍ୱ' ରଚନା
କରିଥିଲେ, କବି ଡିଣ୍ଡିମଙ୍କ ପୁତ୍ର ଜୟଦେବ ପୀୟୂଷ
ଲହରୀ ବୈଷ୍ଣବାମୃତ ରାୟ ରାମାନନ୍ଦ ପଟ୍ଟନାୟକଙ୍କ
ଜଗନ୍ନାଥ ବଲ୍ଲଭ ନାଟକ, ତତ୍କାଳୀନ କବି ଶେଖର
ଚିନ୍ତାମଣି ମିଶ୍ରଙ୍କ ମଧ୍ୱସରିଚରିତ, କାଦମ୍ବରୀ ସାର, ସଙ୍ଗ-
ପ୍ରମୋଦ ପଦ୍ୟାବଳୀ, କଂସବଧ, ତ୍ରିଶିର ବଧ,
ଶାଲୋଗ ବୃତ୍ୟ ପୁଷ୍ପାବଳୀ କାବ୍ୟ, ବାଙ୍ମୟ
ବିବେକ (ଅଳଙ୍କାର) ଶାସ୍ତ୍ର ସଂସ୍କୃତ ସାହିତ୍ୟରେ
ଉତ୍କଳୀୟମାନଙ୍କ ପ୍ରତିଭାକୁ ଅଶ୍ରୁଧି ଭାବୁଳ୍ୟମାନ କରି-
ପାରିଥିଲା ।

୧୫୬୮ ଠାରୁ ୧୮୦୩ ମଧ୍ୟରେ ଶବଲ୍ଲୀଳାମୃତ, କୃଷ୍ଣଲୀଳାମୃତ ମହାକାବ୍ୟ, ମୁକୁନ୍ଦ ବିଳାସ କାବ୍ୟ, କୋଶଳାନନ୍ଦ ମହାକାବ୍ୟ, ନାରାୟଣ ଶତକ, ମୃଗୟା ଚମ୍ପୂ, ଗଙ୍ଗବଂଶାନୁଚରିତ ଚମ୍ପୂ ରଚିତ ହୋଇଥିଲା ।

ଭାରତର ସଂସ୍କୃତ ସାହିତ୍ୟର ରତ୍ନ ଭଣ୍ଡାରକୁ ଉତ୍କଳର ଏ ଯେଉଁ ଅପୂର୍ବ ଦାନ ରହିଛି ତାହା ଏ ଜାତିର ଗର୍ବ ଓ ଗୌରବର କଥା । କିନ୍ତୁ ଆଜି ଉତ୍କଳରେ ସଂସ୍କୃତ ଭାଷା ଓ ସଂସ୍କୃତ ସାହିତ୍ୟର ପୂର୍ବ ଗୌରବ ଓ ପୂର୍ବ ପ୍ରତିଷ୍ଠା ଆଉ ନାହିଁ ।

---

ସଂପାଦକ, ଓଡ଼ିଶା ଟାଇମସ୍ କଟକ

---

## ମରୁଡ଼ି ଅଞ୍ଚଳ ଚାଷୀଙ୍କୁ ସୁବିଧା ସୁଯୋଗ

ରାଜ୍ୟର ବହୁ ଅଞ୍ଚଳରେ ଉତ୍କଟ ମରୁଡ଼ି ପରିସ୍ଥିତି ହେତୁ ଖରିଫ୍ ଫସଲ ଅତ୍ୟନ୍ତ କ୍ଷତିଗ୍ରସ୍ତ ହୋଇଛି । ଚାଷୀମାନଙ୍କୁ ରବି ଫସଲ ବିଶେଷ କରି ଡାଳୁଅ ଧାନ ବ୍ୟାପକ ପରିମାଣରେ ଚାଷ କରିବା ନିମନ୍ତେ ଉତ୍ସାହିତ କରିବାପାଇଁ ସମଗ୍ର ରାଜ୍ୟରେ ଓଡ଼ିଶା ଉଠାଜଳସେଚନ କର୍ପୋରେସନଙ୍କ ଜରିଆରେ କାର୍ଯ୍ୟକାରୀ ହେଉଥିବା ଉଠାଜଳସେଚନ ଯୋଜନାଗୁଡ଼ିକର ଆୟାକଟ୍ ଅଞ୍ଚଳରେ ଜମି ଥିବା ଚାଷୀଙ୍କୁ ନିମ୍ନଲିଖିତ ସୁବିଧା ଦେବା ନିମନ୍ତେ ରାଜ୍ୟ ସରକାର ସ୍ଥିର କରିଛନ୍ତି । ପୂର୍ବ ନିଷ୍ପତ୍ତି ଅନୁଯାୟୀ ଏହି ସୁବିଧା କେବଳ ଶତକଡ଼ା ୨୫ ଭାଗ କିମ୍ବା ତାଠାରୁ ଅଧିକ ଫସଲ କ୍ଷତି ହୋଇଥିବା ଅଞ୍ଚଳର ଚାଷୀମାନଙ୍କୁ ଦିଆଯାଉଥିଲା ।

୧ । ରବି ଋତୁରେ ଜଳସେଚନ ପାଇଁ ସର୍ବନିମ୍ନ ଜମି ପରିମାଣ ସଂକ୍ରାନ୍ତୀୟ କଟକଣା ରଖାଯିବ ନାହିଁ ।

୨ । ରବି ଋତୁରେ ଫସଲକୁ ନେଇ ତିନୋଟି ସମାନ କିସ୍ତିରେ ଜଳକର ଆଦାୟ କରାଯିବ । ତତ୍ସଂକ୍ରାନ୍ତୀୟ ଚୁକ୍ତିପତ୍ରକୁ କାର୍ଯ୍ୟକାରୀ କରିବାପାଇଁ ପ୍ରଥମ କିସ୍ତି ଆଗତୁରା ଆଦାୟ କରାଯିବ । ଦ୍ୱିତୀୟ କିସ୍ତି ଓଡ଼ିଶା ଉଠାଜଳସେଚନ କର୍ପୋରେସନର ସୂଚନା ଅନୁଯାୟୀ ଫସଲ ଜମିରେ ଥିବା ସମୟରେ ଓ ତୃତୀୟ କିସ୍ତି ଫସଲ ଅମଳ ହେବା ପରେ ଆଦାୟ କରାଯିବ ।

୩ । ଜଳକର ଦେବାରେ ତ୍ରୁଟି କରିଥିବା ବ୍ୟକ୍ତିମାନେ ଯଦି ବାକିଥିବା ଟଙ୍କାର ଅନ୍ତତଃ ଶତକଡ଼ା ୫୦ ଭାଗ ଦେଇ ଦିଅନ୍ତି ତାହାହେଲେ ସେମାନଙ୍କୁ ପାଣି ଯୋଗାଇ ଦିଆଯିବ । ଯଦି କିସ୍ତିଓ୍ୱାରୀ ଜଳକର ଦେବାର ସୁବିଧା ନ ନେଇ ଚାଷୀ ଆଗତୁରା ପୁରାପୁରି ଭାବେ ଜଳକର ଦେଇ ଦିଅନ୍ତି, ତାହାହେଲେ ପାଣି ଯୋଗାଇବା ପାଇଁ ସେମାନଙ୍କ ଉପରେ ବାକିଥିବା ଟଙ୍କାର ଶତକଡ଼ା ୫୦ ଭାଗ ଆଦାୟ ଉପରେ ଜୋର ଦିଆଯିବ ନାହିଁ ।

ଏହି ସୁବିଧାଗୁଡ଼ିକ ଚାଷୀମାନଙ୍କୁ ତା ୧୫-୬-୧୯୭୭ ପର୍ଯ୍ୟନ୍ତ ଦିଆଯିବ ।

# ଭାରତୀୟ କଳାରେ ଓଡ଼ିଶୀ କଳାର ସ୍ଥାନ

ଡକ୍ଟର କରୁଣାସାଗର ବେହେରା

ଭାରତୀୟ କଳାର ଇତିହାସରେ ଓଡ଼ିଶାର କଳା ଏକ ବିଶିଷ୍ଟ ସ୍ଥାନ ଅଧିକାର କରେ । ଭାରତର ମହନୀୟ କଳାକୃତିରେ ସ୍ଥାପତ୍ୟ, ମୂର୍ତ୍ତିକଳା ଓ ଚିତ୍ରକଳା କ୍ଷେତ୍ରରେ ଓଡ଼ିଶାର ଉଲ୍ଲେଖଯୋଗ୍ୟ ଅବଦାନ ରହିଛି । ଭାରତ ଏକ ମହାନ୍ ଦେଶ । ଏହାର ସଂସ୍କୃତି ତଥା କଳା ବିଭିନ୍ନ ଅଞ୍ଚଳର ଅବଦାନ ଦ୍ୱାରା ପୁଷ୍ଟ । ବିଭିନ୍ନ ସମୟରେ, ବିଭିନ୍ନ ଅଞ୍ଚଳରେ ସ୍ଥାନୀୟ ରୁଚି ତଥା ସ୍ଥାନୀୟ ଚେତନା ନେଇ କଳାର କ୍ରମବିକାଶରେ କେତେକ ପାର୍ଥକ୍ୟ ପରିଲକ୍ଷିତ ହୁଏ । କିନ୍ତୁ ପାର୍ଥକ୍ୟ ସତ୍ତ୍ୱେ ସର୍ବଭାରତୀୟ ପରମ୍ପରର ପ୍ରଭାବ ସୁସ୍ପଷ୍ଟ । ଭାରତୀୟ ସଂସ୍କୃତିର ଏକ ବିଶେଷ ଗୁଣ ହେଲା ପାର୍ଥକ୍ୟ ମଧ୍ୟରେ ଏକତାର ପରିକଳ୍ପନା । ଏହି ପୃଷ୍ଠଭୂମିରେ ଭାରତୀୟ କଳାର ଇତିହାସ ବିଚାର କଲେ ଜଣାଯିବ ଯେ କେତେକ କ୍ଷେତ୍ରରେ ସ୍ୱତନ୍ତ୍ର ଶୈଳୀ ପ୍ରଚଳନ କରିଥିଲେ ମଧ୍ୟ ଆଞ୍ଚଳିକ କଳା ଭାରତୀୟ ପରମ୍ପରାର ବିଚ୍ଛିନ୍ନତା ଘଟାଇ ନ ଥିଲା । ବରଂ କଳାର ଉନ୍ନତି ସାଧନ କରିବା ସଙ୍ଗେ ସଙ୍ଗେ ଏହା ଭାରତୀୟ ଧର୍ମ, ଦର୍ଶନ ଓ ସାମାଜିକ ଚେତନାରେ ଯାହା ମହନୀୟ ଥିଲା, ତାହା ଓଡ଼ିଶାର କଳାରେ ପ୍ରତିଫଳିତ ହୋଇଛି ।

ଭାରତୀୟ କଳାର ଇତିହାସ ବିଚାର କଲେ ଜଣାଯାଏ ଯେ ହରପ୍ପାର ନଗର-ସଭ୍ୟତା ପରେ ମୌର୍ଯ୍ୟ ରାଜବଂଶର ଶାସନ କାଳରେ ଅଭୂତପୂର୍ବ ବିକାଶ ଘଟିଥିଲା । ମୌର୍ଯ୍ୟ ସମ୍ରାଟ ଅଶୋକ ରାଜ୍ୟାଭିଷେକର ନବମ ବର୍ଷରେ କଳିଙ୍ଗ ଜୟ କରିଥିଲେ । ଅଶୋକଙ୍କ ସମୟରେ କଳିଙ୍ଗର ମୁଖ୍ୟ ରାଜଧାନୀ ତୋଷାଳୀଠାରେ ଥିଲା । ଏହା ସମ୍ଭବତଃ ଧଉଳୀ ନିକଟରେ ଅବସ୍ଥିତ ଥିଲା । ଅଶୋକକାଳୀନ କଳା ଧଉଳୀଠାରେ ଦେଖିବାକୁ ମିଳେ । ଭୁବନେଶ୍ୱରର ଅନତିଦୂରରେ ଶିଶୁପାଳଗଡ଼ଠାରେ ଗୋଟିଏ ପ୍ରକାଣ୍ଡ ଦୁର୍ଗର ଅବଶେଷ ଦେଖାଯାଏ । ପ୍ରତ୍ନତାତ୍ତ୍ୱିକ ଖନନ ଦ୍ୱାରା ଜଣାପଡ଼ିଛି ଯେ ଶିଶୁପାଳଗଡ଼ ଖ୍ରୀ. ପୂ. ତୃତୀୟ ଶତକରୁ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ ଏକ ସମୃଦ୍ଧିଶାଳୀ ନଗର ରୂପେ ପ୍ରତିଷ୍ଠା ଲାଭ କରିଥିଲା । ସମୟ ଦୃଷ୍ଟିରୁ ବିଚାର କଲେ ଶିଶୁପାଳଗଡ଼ ଓଡ଼ିଶାର ପ୍ରାଚୀନ ସ୍ଥାପତ୍ୟର ପ୍ରଥମ ନିଦର୍ଶନ । ପ୍ରତ୍ନତାତ୍ତ୍ୱିକ ଖନନ ଦ୍ୱାରା ଏହାର ନଗର ଯୋଜନାର ରୂପରେଖ ଜଣାପଡ଼ିଛି । ଚତୁର୍ଭୁଜାକାର ଓ ମୃତ୍ତିକା ପ୍ରାଚୀର ପରିବେଷ୍ଟିତ ଏହି ଦୁର୍ଗର ପ୍ରତ୍ୟେକ ପାର୍ଶ୍ୱରେ ଦୁଇଟି ପ୍ରବେଶ ପଥ ଥିଲା । ଏହିପରି ଏକ ପ୍ରବେଶ ପଥର ଅବସ୍ଥିତି ପଶ୍ଚିମ ପାର୍ଶ୍ୱରେ ଭୂଖନନ ଦ୍ୱାରା ଲୋକ ଲୋଚନକୁ ଆସିପାରିଛି । ଶିଶୁପାଳଗଡ଼ ନିଶ୍ଚିତ ଭାବରେ କୌଣସି ଏକ ପ୍ରାଚୀନ ରାଜବଂଶର ରାଜଧାନୀ ଥିଲା । ଏହା ଖାରବେଳଙ୍କ ରାଜଧାନୀ ହୋଇପାରେ ।

ପ୍ରାଚୀନ କଳିଙ୍ଗ ସ୍ଥାପତ୍ୟର ଅନ୍ୟଏକ ଉଦାହରଣ ହେଲା ଗୁମ୍ଫାଖନନ । ଓଡ଼ିଶାରେ ଜୈନ୍ୟ ଧର୍ମର ପ୍ରସାର ସଙ୍ଗେ ସଙ୍ଗେ ଭୁବନେଶ୍ୱର ନିକଟସ୍ଥ ଖଣ୍ଡଗିରି ଓ ଉଦୟଗିରି ଜୈନ ଧର୍ମର ପ୍ରଧାନ କେନ୍ଦ୍ର ରୂପେ ବିକାଶ ଲାଭ କରିଥିଲା । ଖ୍ରୀ. ପୂ. ପ୍ରଥମ ଶତାବ୍ଦୀରେ ଖାରବେଳ ଏଠାରେ ଅନେକ ଗୁମ୍ଫା ଖୋଳାଇଥିଲେ । ଏହା ହାତୀ ଗୁମ୍ଫା ଅଭିଲେଖରୁ ଜଣାପଡ଼େ । ଗୁମ୍ଫାଗୁଡ଼ିକ ମୁଖ୍ୟତଃ ଜୈନ ସନ୍ନ୍ୟାସୀମାନଙ୍କ ଆଶ୍ରୟସ୍ଥଳୀ ନିର୍ମିତ ହୋଇଥିଲା । ସାଧାରଣ ଘର ପରି ଏଥିରେ ପ୍ରକୋଷ୍ଠ ସମ୍ମୁଖରେ ବାରଣ୍ଡା ଦେଖାଯାଏ । ଗୁମ୍ଫାଗୁଡ଼ିକର ଭିତରକୁ ଯିବାକୁ ଛୋଟ ଦ୍ୱାର ଅଛି । ଏଗୁଡ଼ିକ ଅତି ଅଳ୍ପ ଉଚ୍ଚ ଓ ୧୦ଟି ମଧ୍ୟରେ । ସେ ପ୍ରକୋଷ୍ଠ

ହେବା ଆୟସସାଧ୍ୟ । ଭାରତବର୍ଷର ପଶ୍ଚିମାଞ୍ଚଳରେ ପ୍ରସ୍ତର ଗାତ୍ରରେ ଖୋଦିତ କେତେକ ବୌଦ୍ଧ ବିହାର ଦେଖାଯାଏ । କିନ୍ତୁ ଖଣ୍ଡଗିରି ଓ ଉଦୟଗିରିର ଗୁମ୍ଫାମାନ ଭିନ୍ନ ଧରଣର । ପଶ୍ଚିମ ଭାରତର ଗୁମ୍ଫାପରି ଏଠାରେ କୌଣସି ଚୈତ୍ୟ ଗୃହ ଦେଖାଯାଏ ନାହିଁ । କେତେକ ଗୁମ୍ଫା ଯଥା ରାଣୀଗୁମ୍ଫା, ମଞ୍ଚପୁରୀ ଓ ସ୍ୱର୍ଗପୁରୀ ଆଦି ଦ୍ୱିତଳ ବିହାର ରୂପେ ପରିକଳ୍ପିତ । ଭାରତୀୟ ଗୁମ୍ଫା ସ୍ଥାପତ୍ୟର କ୍ରମବିକାଶରେ ଏଗୁଡ଼ିକର ଯଥେଷ୍ଟ ଗୁରୁତ୍ୱ ରହିଛି ।

ଓଡ଼ିଶାରେ ବୌଦ୍ଧଧର୍ମର ପ୍ରସାର ସଙ୍ଗେ ସଙ୍ଗେ ଅନେକ ସ୍ତୂପ ଓ ବିହାର ନିର୍ମିତ ହୋଇଥିଲା । ବୌଦ୍ଧ ସାହିତ୍ୟରୁ ଜଣାପଡେ ଯେ ବୁଦ୍ଧଙ୍କର ପରିନିର୍ବାଣ ପରେ ତାଙ୍କର ପବିତ୍ର ଦନ୍ତ କଳିଙ୍ଗକୁ ଅଣାଯାଇ ତାହା ଉଦ୍ଦେଶ୍ୟରେ ସ୍ତୂପ ନିର୍ମାଣ କରାଯାଇଥିଲା । ବାଲେଶ୍ୱର ଜିଲ୍ଲାର ଜୟରାମପୁର ଗ୍ରାମରୁ ପ୍ରାପ୍ତ ଏକ ତାମ୍ରଫଳକରୁ ଷଷ୍ଠ ଶତାବ୍ଦୀରେ ଏକ ବୌଦ୍ଧ ମହା ବିହାର ଥିବା ସୂଚିତହୁଏ । ଆର୍ଯ୍ୟ ଅବଲୋକିତେଶ୍ୱର ଏହି ବୌଦ୍ଧ କେନ୍ଦ୍ରର ଆରାଧ୍ୟ ଦେବତା ଥିଲେ । ଢେଙ୍କାନାଳ ଜିଲ୍ଲାର ତାଳଚେରରୁ ପ୍ରାପ୍ତ ଭୌମ କରବଂଶୀୟ ତାମ୍ର ଶାସନରୁ ଜୟାଶ୍ରମ ବିହାର ନାମକ ଏକ ବୌଦ୍ଧପୀଠର ସୂଚନା ମିଳେ । କଟକ ଜିଲ୍ଲାର ଲଳିତଗିରି, ଉଦୟଗିରି ଓ ରତ୍ନଗିରି ବୌଦ୍ଧଧର୍ମ କେନ୍ଦ୍ରରୂପେ ବିଶେଷ ଖ୍ୟାତି ଅର୍ଜନ କରିଥିବା ଜଣାପଡେ । ରତ୍ନଗିରିଠାରେ ପ୍ରତ୍ନତାତ୍ତ୍ୱିକ ଖନନରୁ ବୌଦ୍ଧ ଧର୍ମର ଏକ ବିରାଟ କେନ୍ଦ୍ରସ୍ଥଳୀ ଆବିଷ୍କୃତ ହୋଇଛି । ଏକଦା ରତ୍ନଗିରି ଖ୍ୟାତି ତିବ୍ବତ ଓ ଚୀନ ପର୍ଯ୍ୟନ୍ତ ମଧ୍ୟ ବ୍ୟାପିଯାଇଥିଲା । ରତ୍ନଗିରି ସ୍ତୂପର ଇତିହାସ ପଞ୍ଚମ ଶତାବ୍ଦୀଠାରୁ ଆରମ୍ଭ ବୋଲି ଧରାଯାଇପାରେ । କାଳକ୍ରମେ ନାଳନ୍ଦାପରି ଏକ ପ୍ରସିଦ୍ଧ ବୌଦ୍ଧ ସଂସ୍ଥା ଏଠାରେ ଗଢ଼ି ଉଠିଥିଲା । ପ୍ରତ୍ନତାତ୍ତ୍ୱିକ ଖନନ ଦ୍ୱାରା ଏଠାରେ ଯେଉଁ ବିଶାଳ ସ୍ତୂପ ଉନ୍ମୋଚିତ ହୋଇପାରିଛି ତାହା ଯଥାର୍ଥରେ ଅତୀବ ମନୋରମ । ବୋଧଗୟାପରି ଏଠାରେ ମଧ୍ୟ ଅନେକ ଭୂତିଏ ଛୋଟ ଛୋଟ ସ୍ତୂପ ରହିଛି । ଏତଦ୍‌ବ୍ୟତୀତ ଦୁଇଟି ମହାବିହାରର ଅବଶେଷ ଲୋକଲୋଚନକୁ ଆସିପାରିଛି । ଉଦୟଗିରି ଓ ଲଳିତଗିରିଠାରେ ବୌଦ୍ଧ ସ୍ଥାପତ୍ୟର ଅବଶେଷ ଭୂପୃଷ୍ଠରେ ଅଦ୍ୟାପି ବିଦ୍ୟମାନ । ପ୍ରତ୍ନତାତ୍ତ୍ୱିକ ଖନନ ହେଲେ ଲଳିତଗିରି ଓ ଉଦୟଗିରିରୁ ବୌଦ୍ଧ ଧର୍ମ ସମ୍ବନ୍ଧୀୟ ଅମୂଲ୍ୟ କଳାରତ୍ନ ଉଦ୍ଧାର କରାଯାଇ ପାରିବ । ଓଡ଼ିଶାର ଅନ୍ୟ କେତେକ ସ୍ଥାନରେ ବୌଦ୍ଧ ସ୍ଥାପତ୍ୟର ଅବଶେଷ ରହିଛି । ସେଥି ମଧ୍ୟରୁ କଟକ ଜିଲ୍ଲାର ବାଡେଶ୍ୱରନାସି, ପୁରୀ ଜିଲ୍ଲାର କୋଣାର୍କ ନିକଟବର୍ତ୍ତୀ କୁରୁମ ଗ୍ରାମ, ଫୁଲବାଣୀ ଜିଲ୍ଲାର ବୌଦ୍ଧ, ମୟୂରଭଞ୍ଜ ଜିଲ୍ଲାର ଖିଚିଂ, ବାଲେଶ୍ୱର ଜିଲ୍ଲାର ଖଡ଼ିପଦା, ଅଯୋଧ୍ୟା ଓ ସୋଲମପୁର ଆଦି ସ୍ଥାନ ଉଲ୍ଲେଖଯୋଗ୍ୟ । ବୌଦ୍ଧ ଧର୍ମର ଇତିହାସ ଓ କଳା କ୍ଷେତ୍ରରେ ଓଡ଼ିଶାର ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଓଡ଼ିଶାର ବିଭିନ୍ନ ସ୍ଥାନରୁ ଆବିଷ୍କୃତ ବୌଦ୍ଧ ମୂର୍ତ୍ତିମାନଙ୍କରୁ ପ୍ରତିପାଦିତ ହୁଏ ।

ମନ୍ଦିର ନିର୍ମାଣ କ୍ଷେତ୍ରରେ ଓଡ଼ିଶା ବିଶେଷ ଉନ୍ନତି କରିଥିଲା । ଭାରତବର୍ଷରେ ଯେଉଁ ଅଳ୍ପ କେତେକ ଲକ୍ଷ୍ମୀ ମନ୍ଦିର ଅଛି, ପୁରୀର ଲକ୍ଷ୍ମୀ ମନ୍ଦିର ସେଥି ମଧ୍ୟରୁ ଅନ୍ୟତମ । ସୂର୍ଯ୍ୟ ମନ୍ଦିର ମଧ୍ୟରେ ଓଡ଼ିଶାର କୋଣାର୍କ ମନ୍ଦିର ସ୍ଥାନ ଅଦ୍ୱିତୀୟ । ଭୁବନେଶ୍ୱରର ବୈତାଳ ମନ୍ଦିର ଓ ପୁରୀ ଜିଲ୍ଲାର ଚଉରାଶୀ ଗ୍ରାମର ବାରାହୀ ମନ୍ଦିର କ୍ଷୁଦ୍ର ହେଲେ ମଧ୍ୟ କଳାବିତ୍‌ମାନଙ୍କ ମଧ୍ୟରେ ଅବିଦିତ ନୁହେଁ । ଅତ୍ୟନ୍ତ ଗୌରବର କଥା ଯେ ବଲାଙ୍ଗିରର ରାଣୀପୁର ଝରିଆଲଠାରେ ଓ ଭୁବନେଶ୍ୱର ନିକଟସ୍ଥ ହୀରାପୁର ଗ୍ରାମରେ ଚଉଷଠୀ ଯୋଗିନୀ ମନ୍ଦିରର ଭଗ୍ନାବଶେଷ ଦେଖିବାକୁ ମିଳେ । ଏ ପ୍ରକାର ମନ୍ଦିର ଭାରତ ବର୍ଷର ଅଳ୍ପକେତେକ ସ୍ଥାନରେ ଦେଖିବାକୁ ମିଳେ । ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ଶୈବ ଧର୍ମର ଏକ ଅକ୍ଷୟ କୀର୍ତ୍ତି । ସର୍ବଧର୍ମ ସମନ୍ୱୟର ପତାକ ଶ୍ରୀ ପୁରୁଷୋତ୍ତମ ଜଗନ୍ନାଥଙ୍କର ମନ୍ଦିର ଯଥାର୍ଥରେ ବିଶ୍ୱବିଶ୍ରୁତ । କେବଳ ଯେ ଓଡ଼ିଶାରେ ବିଭିନ୍ନ ଧର୍ମର ମନ୍ଦିର ଦେଖିବାକୁ ମିଳେ ତାହା ନୁହେଁ, ମନ୍ଦିର ନିର୍ମାଣ କ୍ଷେତ୍ରରେ ନାଗର, ଦ୍ରାବିଡ଼ ଓ ବେଶର ଶୈଳୀ ବ୍ୟତୀତ ଓଡ଼ିଶା ଏକ ସ୍ୱତନ୍ତ୍ର ଶୈଳୀର ଜନକ । ସ୍ଥପତିଗଣ କଳିଙ୍ଗରେ ପ୍ରଚଳିତ ମନ୍ଦିର ନିର୍ମାଣ ପଦ୍ଧତିକୁ ଏକ ସ୍ୱତନ୍ତ୍ର ଶୈଳୀଭାବରେ ଗ୍ରହଣ କରିଥିବା ଶିଳ୍ପ ଶାସ୍ତ୍ର ଓ ଅଭିଲେଖର ପ୍ରମାଣରୁ ପ୍ରତି-ପାଦିତ ହୁଏ । ଏହି କଳିଙ୍ଗ ଶୈଳୀର କେତେକ ବିଶେଷତ୍ୱ ରହିଛି । ଓଡ଼ିଶାର ମନ୍ଦିର ସାଧାରଣତଃ ଦୁଇଟି ଅଂଶରେ ବିଭକ୍ତ । ମୁଖ୍ୟ ମନ୍ଦିରକୁ ବିମାନ ବା ବଡ଼ ଦେଉଳ କୁହାଯାଏ ଓ ଏଥିରେ ଦେବ ବିଗ୍ରହ ପ୍ରତିଷ୍ଠିତ ହୁଅନ୍ତି । ତାହା ସମ୍ମୁଖରେ ଥିବା ମନ୍ଦିରକୁ ମୁଖଶାଳା ବା ଜଗମୋହନ କୁହାଯାଏ । ମୁଖ୍ୟମନ୍ଦିର ରେଖ ଦେଉଳ ଓ ଜଗମୋହନ ପୀଢ଼ା ଦେଉଳ ଭାବରେ ନିର୍ମିତ । କାଳକ୍ରମେ ଦେଉଳ ଓ ଜଗମୋହନ ସମ୍ମୁଖରେ ନାଟମନ୍ଦିର ଓ ଭୋଗମଣ୍ଡପର ପରିକଳ୍ପନା କରାଯାଇ ଥିଲା । ଓଡ଼ିଶା ମନ୍ଦିରର ଅନ୍ୟ ଏକ ବିଶେଷତ୍ୱ ହେଲା ଯେ ଏହାର ଅଭ୍ୟନ୍ତର । ଚତୁରସ୍ର ମନ୍ଦିରର ଅଭ୍ୟନ୍ତରରେ

ସାଧାରଣତଃ କୌଣସି କାରୁକାର୍ଯ୍ୟ ନଥାଏ କିନ୍ତୁ ଉଡ଼ିଶାର ଗୁହାଳଣ୍ଡ ଓ ଅଶୋକ ସ୍ତମ୍ଭର କ୍ରୀଡ଼ା ଅତି ଚମତ୍କାର । ଓଡ଼ିଶାରେ ଷଷ୍ଠ ଶତାବ୍ଦୀଠାରୁ ଆରମ୍ଭ କରି ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଅନେକ ମନ୍ଦିର ନିର୍ମିତ ହୋଇଥିଲା । ପ୍ରାଚୀନ ସ୍ଥାପତ୍ୟର ଏକ ବିଶେଷ ସ୍ଥାନ ରହିଛି । ଦଶମ ଶତାବ୍ଦୀରେ ନିର୍ମିତ ମୁକ୍ତେଶ୍ୱର ଓଡ଼ିଶା ମନ୍ଦିର ସ୍ଥାପତ୍ୟର ଏକ ଅମୂଲ୍ୟରତ୍ନ । ରାଜରାଣୀ ମନ୍ଦିରେ ପରିକଳ୍ପନା ମଧ୍ୟପ୍ରଦେଶର ଖଜୁରାହୋ ମନ୍ଦିର ମନ୍ଦିରେ ପରିକଳ୍ପନା ମଧ୍ୟପ୍ରଦେଶର ଖଜୁରାହୋ ମନ୍ଦିରର ତୁଲ୍ୟ । ରାଜରାଣୀର ବିଶେଷତ୍ୱ ହେଲା ମୁଖ୍ୟମନ୍ଦିରର ଦେହରେ ଅନେକ ଗୁଡ଼ିଏ ଅଂଶ ଶିଖର ବା କ୍ଷୁଦ୍ର କ୍ଷୁଦ୍ର ମନ୍ଦିରର ସମନ୍ୱୟ । ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ଏକାଦଶ ଶତାବ୍ଦୀରେ ନିର୍ମିତ ହୋଇଥିଲା ଓ ଏହି ସମୟକୁ ଓଡ଼ିଶାର ମନ୍ଦିର ସ୍ଥାପତ୍ୟ ପୂର୍ଣ୍ଣ ବିକାଶ ଲାଭ କରିଥିଲା । ପୁରୀର ଜଗନ୍ନାଥ ମନ୍ଦିର ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ହୋଇଥିଲା । କୋଣାର୍କ ମନ୍ଦିର ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ ହୋଇଥିଲା ଓ ଏହା ଓଡ଼ିଶାର ମନ୍ଦିର ସ୍ଥାପତ୍ୟର ଚୂଡ଼ାନ୍ତ ନିଦର୍ଶନ । ଏହାପରେ ପରେ ମନ୍ଦିର ସ୍ଥାପତ୍ୟର କ୍ରମେ ଅବନତି ଘଟିଥିଲା ।

ମୂର୍ତ୍ତିକଳା ବା ଭାସ୍କର୍ଯ୍ୟ କ୍ଷେତ୍ରରେ ଓଡ଼ିଶାର ଅବଦାନ ଉଲ୍ଲେଖଯୋଗ୍ୟ । ଓଡ଼ିଶାର ମୂର୍ତ୍ତିକଳାରେ ଏକ ସଫଳ ନିଦର୍ଶନ ହେଲା ଧଉଳି ଠାରେ ଖୋଦନ କରଯାଇଥିବା ଅଶୋକକାଳୀନ ହସ୍ତୀର ସମ୍ମୁଖଭାଗ । ପଥର ଦେହରୁ ବାହାରି ଆସୁଥିବା ହାତୀର ମୂର୍ତ୍ତି ଅତ୍ୟନ୍ତ ସ୍ୱାଭାବିକ ଓ ସଜୀବ । ଏହା ବିହାରର ରାମପୁରୁଓ୍ୱା ଠାରୁ ପ୍ରାପ୍ତ ବୃଷଭ ମୂର୍ତ୍ତି ପରି ଏକ ଉନ୍ନତ କଳାର ପରିଚୟ ଦିଏ । ଭୁବନେଶ୍ୱରରୁ ଗୋଟିଏ ବିଶାଳ ସ୍ତମ୍ଭ ଶୀର୍ଷ ଆବିଷ୍କୃତ ହୋଇଛି । ଅଶୋକଙ୍କ ସମୟରେ ବା ତାଙ୍କ ପରବର୍ତ୍ତୀ ଯୁଗରେ ଗୋଟିଏ ସ୍ତମ୍ଭ ଥିବାର ଏହା ସୂଚନା ଦିଏ । ଖଣ୍ଡଗିରି ଓ ଉଦୟଗିରି ସ୍ଥାପତ୍ୟ ଦୃଷ୍ଟିରୁ ଯେପରି ମହନୀୟ, ଭାସ୍କର୍ଯ୍ୟ ଦୃଷ୍ଟିରୁ ତଦପେକ୍ଷା ଅଧିକ ମହତ୍ ପୂର୍ଣ୍ଣ । ଭରହୁତ, ବୋଧଗୟା, ସାଞ୍ଚି ଓ ଅମରାବତୀର ମୂର୍ତ୍ତିକଳାର ପରିପେକ୍ଷୀରେ ବିଚାର କଲେ ଜଣାପଡ଼େ ଯେ ଉଦୟଗିରିର ରାଣୀ ଗୁମ୍ଫାର ମୂର୍ତ୍ତିକଳା ବୋଧଗୟାର ପରିବର୍ତ୍ତିକାଳର ଓ ସାଞ୍ଚି-କଳାର ସମସାମୟିକ । ପ୍ରତିକୃତି ଗୁଡ଼ିକର ଗଠନ ଓ ଆକାର ଅମରାବତୀ ମୂର୍ତ୍ତିମାନଙ୍କ ପରି କିଞ୍ଚିତ ଦୀର୍ଘ ଓ କମନୀୟ । ଏତଦ୍ ବ୍ୟତୀତ ଭୁବନେଶ୍ୱରରୁ କେତେକ ଯକ୍ଷ ଓ ନାଗମୂର୍ତ୍ତି ଆବିଷ୍କୃତ ହୋଇଛି । ସେହି ଗୁଡ଼ିକ ଓଡ଼ିଶାର ମୂର୍ତ୍ତିକଳାର ଅତିପୁରାତନ ଧାରଣା ଦିଏ । ଗୁପ୍ତ ଯୁଗରେ ଭାରତରେ ମୂର୍ତ୍ତିକଳାର ବିଶେଷ ଉନ୍ନତି ଘଟିଥିଲା । ଓଡ଼ିଶାର କେତେକ ମୂର୍ତ୍ତିରେ ଗୁପ୍ତକଳାର ପ୍ରଭାବ ଦେଖିବାକୁ ମିଳେ । ଏହିମଧ୍ୟରେ ଲଳିତଗିରି ଓ ରତ୍ନଗିରିର କେତେକ ବୁଦ୍ଧ ଓ ବୋଧିସତ୍ତ୍ୱ ମୂର୍ତ୍ତି ଅନ୍ତର୍ଗତ । ଶାରୀରିକ ସୌନ୍ଦର୍ଯ୍ୟ ଅପେକ୍ଷା ଆଧ୍ୟାତ୍ମିକ ସୌନ୍ଦର୍ଯ୍ୟ ପ୍ରଦର୍ଶନ କରିବାରେ ଓଡ଼ିଶାରେ ଶିଳ୍ପୀଗଣ ବିଶେଷ ସାଫଲ୍ୟ ହାସଲ କରି ପାରିଥିଲେ । ଓଡ଼ିଶାର ମୂର୍ତ୍ତିକଳା ମୁଖ୍ୟତଃ ଧର୍ମଉପରେ ପ୍ରତିଷ୍ଠିତ । ଆଧ୍ୟାତ୍ମିକ ତାତ୍ପର୍ଯ୍ୟକୁ ବାଦ ଦେଲେ ମଧ୍ୟ କେବଳ କଳାତ୍ମକ କୃତି ହିସାବରେ ଓଡ଼ିଶାର ମୂର୍ତ୍ତିମାନଙ୍କର ସ୍ଥାନ କୌଣସି ଗୁଣରେ ନ୍ୟୁନ ନୁହେଁ । ଖଣ୍ଡଗିରି, ଖିଚିଙ୍ଗ, ଜୟପୁର, କାକଟପୁର ଓ ଯାଜପୁର ଆଦି ସ୍ଥାନରୁ ଉନ୍ନତ ମୂର୍ତ୍ତିକଳାର ନିଦର୍ଶନ ମିଳିଛି । ଯାଜପୁର, ଧର୍ମଶାଳା ଓ ପୁରୀର ସପ୍ତମାତୃକା ମୂର୍ତ୍ତି ଓଡ଼ିଶାର ମୂର୍ତ୍ତିକଳାର ସଫଳ ପରିପ୍ରକାଶ । ଖିଚିଙ୍ଗରୁ ପ୍ରାପ୍ତ ମୂର୍ତ୍ତିଗୁଡ଼ିକର ଗଠନ ଅତ୍ୟନ୍ତ ମନୋରମ । ଢେଙ୍କାନାଳ ଜିଲ୍ଲାର ଭୀମତାଣ୍ଡ ଓ ସମ୍ବଲପୁରର ବିଷ୍ଣୁମୂର୍ତ୍ତି କେବଳ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ବିଚାର କଲେ ମଧ୍ୟ ଅସାଧାରଣ । ଓଡ଼ିଶାର ମନ୍ଦିରମାନଙ୍କର ମୂର୍ତ୍ତିକଳାର କ୍ରମବିକାଶ ବିଭିନ୍ନ ସମୟରେ ନିର୍ମିତ ମନ୍ଦିର-ମାନଙ୍କରୁ ସୁସ୍ପଷ୍ଟ । ବାସ୍ତବିକ ସ୍ଥାପତ୍ୟ ଓ ମୂର୍ତ୍ତିକଳାର ଯେଉଁ ସମନ୍ୱୟ ଓଡ଼ିଶାର ମନ୍ଦିରରେ ଦେଖିବାକୁ ମିଳେ ତାହା ଅନ୍ୟତ୍ର ବିରଳ । ଓଡ଼ିଆ ଶିଳ୍ପୀ ବଡ଼ ବଡ଼ ମୂର୍ତ୍ତି ତିଆରି କରିବାରେ ଯେପରି ସିଦ୍ଧହସ୍ତ, ଅତିକ୍ଷୁଦ୍ର ସୂକ୍ଷ୍ମ କାର୍ଯ୍ୟ କରିବାରେ ମଧ୍ୟ ସେହିପରି କୁଶଳୀ । କୋଣାର୍କର ମୂର୍ତ୍ତିମାନ କେବଳ ଭାରତୀୟ କଳାରେ ନୁହେଁ ବିଶ୍ୱ-କଳାର ଇତିହାସରେ ମଧ୍ୟ ଅତୁଳନୀୟ । ଓଡ଼ିଶାର ମୂର୍ତ୍ତିକଳା କେବଳ ଯେ ଶିଳ୍ପୀମାନଙ୍କର ପ୍ରତିଭା, ରୁଚି ଓ କଳାକୌଶଳ ପ୍ରତିପାଦନ କରେ ତାହା ନୁହେଁ, ସାମାଜିକ ଓ ନୈତିକ ଚିତ୍ର ମଧ୍ୟ ମୂର୍ତ୍ତିମାନଙ୍କରୁ ଅବଧାରଣ କରିହୁଏ । ଓଡ଼ିଶାର ମୂର୍ତ୍ତିକଳା ଭାରତର ଅନ୍ୟ ଅଞ୍ଚଳର କଳାଠାରୁ କେତେକ ପରିମାଣରେ ସ୍ୱତନ୍ତ୍ର । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ନଟରାଜ ମୂର୍ତ୍ତିର ପରିକଳ୍ପନା ଦକ୍ଷିଣ ଭାରତଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଦକ୍ଷିଣଭାରତ ନଟରାଜ ମୂର୍ତ୍ତିର ଏକ ବିଶେଷତ୍ୱ ହେଲା ଯେ ଶିବ ଅପସ୍ମାର ପୁରୁଷ ଉପରେ ତାଣ୍ଡବ ନୃତ୍ୟରତ । ଓଡ଼ିଶାର ନଟରାଜ ମୂର୍ତ୍ତିରେ ଅପସ୍ମାର ପୁରୁଷ ଦେଖିବାକୁ ମିଳେ ନାହିଁ । ସେହିପରି ଦକ୍ଷିଣ ଭାରତର ସୂର୍ଯ୍ୟ ମୂର୍ତ୍ତିମାନଙ୍କର ପାଦ ଯୋତାଦ୍ୱାରା ଆବୃତ ନୁହେଁ । କିନ୍ତୁ ଓଡ଼ିଶାର ସୂର୍ଯ୍ୟ ମୂର୍ତ୍ତି ସବୁର ପାଦ ଯୋତା ଦ୍ୱାରା ଆବୃତ ।

ଧାତବ ମୂର୍ତ୍ତି ଓ ମୃଣ୍ମୟ ମୂର୍ତ୍ତି ଗଠନରେ ମଧ୍ୟ ଓଡ଼ିଶାରେ ଶିଳ୍ପୀମାନେ ନିଜର ପରାକାଷ୍ଠା ଦେଖାଇ ଥାଇଛନ୍ତି । ଶିଶୁପାଳ ଗଡ଼ର ଖନନରୁ ମୃଣ୍ମୟ ଶିଳ୍ପର କେତେକ ନିଦର୍ଶନ ମିଳିଛି । ରତ୍ନଗିରି, ବୌଦ୍ଧ, କାକଟପୁର ଓ ବାଣପୁରରୁ କେତେକ ସୁନ୍ଦର ଧାତୁମୂର୍ତ୍ତି ସଂଗୃହୀତ ହୋଇଛି । ଏହିମଧ୍ୟରୁ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ବାଣପୁରର ବୁଦ୍ଧ ମୂର୍ତ୍ତି ଗୁଡ଼ିକ ପ୍ରକୃଷ୍ଟ ନିଦର୍ଶନ ।

ଓଡ଼ିଶା ମୂର୍ତ୍ତିକଳା ଓ ସ୍ଥାପତ୍ୟ ନିମନ୍ତେ ଯେପରି ପ୍ରସିଦ୍ଧ, ଚିତ୍ରକଳା ଲାଗି ମଧ୍ୟ ସେହିପରି ବିଖ୍ୟାତ । ପ୍ରାଗୈତିହାସିକ ଚିତ୍ରକଳାର ନିଦର୍ଶନ ସମ୍ବଲପୁରର ଉଲ୍ଲାପଗଡ଼, ସୁନ୍ଦରଗଡ଼ ମାଣିକ ମୁଣ୍ଡ ଓ କଳାହାଣ୍ଡିର ଗୁଡ଼ହାଣ୍ଡି ଠାରେ ଦେଖିବାକୁ ମିଳେ । ଏତଦ୍ ବ୍ୟତୀତ କେନ୍ଦୁଝରର ସୀତାବିଞ୍ଜି ଠାରେ ପ୍ରାୟ ପଞ୍ଚମ ଷଷ୍ଠ ଶତାବ୍ଦୀର ଚିତ୍ରକଳା ଦେଖିବାକୁ ମିଳେ । ପରବର୍ତ୍ତୀ ଯୁଗରେ ଓଡ଼ିଶା ତାଳପତ୍ର ପୋଥିଚିତ୍ର ଓ ପୁରୀର ପଟ ଚିତ୍ର ଲାଗି ପ୍ରସିଦ୍ଧି ଲାଭ କରିଥିଲା ।

ପରିଶେଷରେ କୁହାଯାଇ ପାରେ ଯେ ଓଡ଼ିଶାର କଳାର ଇତିହାସରୁ ଭାରତୀୟ କଳାର ମହତ୍ତ୍ୱ ଅବଧାରଣା କରାଯାଇ ପାରେ । ଓଡ଼ିଶାର କଳାକାରମାନଙ୍କର ପ୍ରତିଭା ଏବେ ମଧ୍ୟ ଅକ୍ଷୁର୍ଣ୍ଣ ରହିଛି ।

(ଆକାଶବାଣୀ ସୌଜନ୍ୟରୁ)



ରାଜସ୍ୱ, ଜଳସେଚନ, ଓ ବିଦ୍ୟୁତ, ଶିକ୍ଷା ଓ ଯୁବକଲ୍ୟାଣ ଏବଂ ଆଇନ ମନ୍ତ୍ରୀ ଶ୍ରୀବଲ୍ଲଭ ପାଣିଗ୍ରାହୀ ଗତ ଫେବୃଆରୀ ୧୭ ତାରିଖ ଦିନ ସମ୍ବଲପୁର ଜିଲ୍ଲା ଅତାବିରା ବ୍ଲକ ଅଧିନରେ ଥିବା କୁମେଲ ସିଙ୍ଗା ଗ୍ରାମଠାର ଭୂମିହୀନ ଲୋକମାନଙ୍କୁ ଭୂମି ଓ ବୃଦ୍ଧ ଲୋକମାନଙ୍କୁ ବାର୍ଦ୍ଧକ୍ୟ ଭତ୍ତା ପ୍ରଦାନ କରୁଛନ୍ତି ।

# ୧୯୧୫ର
# ସମ୍ବଲପୁର ଉତ୍କଳ ସମ୍ମିଳନୀ

ସଂଗ୍ରାହକ—କବିଚନ୍ଦ୍ର ଶ୍ରୀ କାଳୀଚରଣ ପଟ୍ଟନାୟକ

ଏକ ଚମତ୍କାର ବର୍ଣ୍ଣନା

ଅନେକ ବର୍ଷ ତଳର କଥା । ମୁଁ ସେତେବେଳେ ଖୋରଧା ହାଇସ୍କୁଲର ଛାତ୍ର । ମାଟ୍ରିକୁଲେସନ୍ ଟେଷ୍ଟ ପରୀକ୍ଷା ଦେଇଥାଏଁ । ଡିସେମ୍ବର ମାସ ଶେଷ, ୧୯୧୫ ମସିହା ।

ମୋ ଘର ତାଙ୍ଗୀର ଖମାରଙ୍କ ମୌଜାରେ । ଆମକୁ ଘାସିପଡ଼ା ଆଡ଼େଖୀର ଖୋଇଗଡ଼ର କହନ୍ତି । ବାଙ୍କୀ ଉତ୍ତାଙ୍କ ଅମଳରେ ଆଡ଼େଶା (ପ୍ରଗନା) ର ଆମ ବଂଶ ଥିଲେ ମାର୍ଫତ୍‌ଦାର । ଆମ ଘରଠାରୁ ପ୍ରାୟ ଚାରିମାଇଲ ଦୂରରେ ଶାଟପୁର ଗାଁ । ପଣ୍ଡିତ ଗୋବିନ୍ଦ ରଥ, ସେତେବେଳକୁ ଜୀବିତ । ମୋ ଜେଜବାପା ନିମାଇଁ ଚରଣ ପଟ୍ଟନାୟକ ସଂସ୍କୃତ-ସାହିତ୍ୟ ପ୍ରେମୀ । ରଥେ ସାହିତ୍ୟିକ, ଲେଖକ ଓ ଦେଶପ୍ରାଣ ବ୍ୟକ୍ତି ଥିଲେ । ସେ କଟକ ନିମଚଉଡ଼ାରେ ରହୁଥିଲେ । ତେଲେ ବେଳେ ସେ ଗାଁକୁ ଆସିଲେ ବରାବର ଆମଘରକୁ ଆସନ୍ତି । ମୋ ଜେଜବାପା ଓ ବାପାଙ୍କର ସେ ଅତିପ୍ରିୟ । ସେଇ ସୂତ୍ରରେ ମୋତେ ଖୁବି ସୁଖ ପାଆନ୍ତି ରଥେ । ମୋ ଜେଜଙ୍କ କାଳ ହେଲାପରେ ରଥେ ମଧ୍ୟ ଆମଘରକୁ ଯା ଆସ କରନ୍ତି । ବାପାଙ୍କ ସହିତ ନାନା ଆଲୋଚନା ହୁଏ ତାଙ୍କର ।

ମୁଁ ଘରେ ଥାଏଁ । ରଥେତ ଦେଶ-ସେବୀ । ଅନ୍ୟାୟ ସେ ବରଦାସ୍ତ କଲାବାଲା ନୁହନ୍ତି । ନାନା ସ୍ଥାନର ସଭାସମିତିରେ ରଥେ ଯୋଗ ଦିଅନ୍ତି । ୧୯୧୫ ୨୩।୨୪ ତାରିଖରେ ସମ୍ବଲପୁରରେ ଉତ୍କଳ ସମ୍ମିଳନୀ ବସିଲା, ରଥେ ସେଠିରେ ଯୋଗଦେଇ ଆସି ଖଣ୍ଡିଏ ଛୋଟ ବହି ଲେଖିଲେ । ବହିଟି କଟକ ଧର୍ମପ୍ରେସ୍‌ରେ ୧୯୧୬ରେ ଛପା ମୂଲ୍ୟ ଏକଅଣା ମାତ୍ର । ବହିଟିକୁ ମୁଁ ସାଇତି ରଖିଛି ।

କାହିଁ ୧୧୫—କାହିଁ ୧୯୭୬ । ସେକାଳର ପୁରୁଣା କଥା, ସେତେବେଳେ ଆମଲୋକେ କେମିତି ଥିଲେ, ଦେଶଲାଗି କିଭଳି ଏକତା-ବଦ୍ଧ ଥିଲେ ଓ ଅବସ୍ଥା ଆମର କିପରି ଥିଲା ଏସବୁ କଥା ଉତ୍କଳ ସମ୍ମିଳନୀ ଲେଖାରୁ ଜାଣିହେବ । ଏଥିରେ ଉପଲେଖାମାନଙ୍କପ୍ରତି ବିଶେଷ ଦୃଷ୍ଟି ଓ ବିଚାର ବଡ଼ ଗୁରୁତ୍ୱ ପୂର୍ଣ୍ଣ ବୋଲି ମୋର ଏକାନ୍ତ ବିଶ୍ୱାସ । ସୁହୃଦୟ ପାଠକ ପାଠିକାମାନଙ୍କ ଅବଗତି ନିମିତ୍ତ ସ୍ୱର୍ଗୀୟ ପଣ୍ଡିତ ରଥଙ୍କର ସେହି ଅପୂର୍ବ ମୂଲ୍ୟବାନ ଅବଦାନ "ସମ୍ବଲପୁର ଉତ୍କଳ ସମ୍ମିଳନୀ" ପୁସ୍ତିକାଟିର ଗୋଟିଏ ନକଲ ଏଥି ସହିତ ଭେଟୁଛି—ମନଯୋଗ ଦେଇ ପଢ଼ି ଜୀବନ ଗଢ଼ିବାକୁ ଉପଦେଶ ଦେଇ ନିଜେ ରଥେ ମୋତେ ଆଶୀର୍ବାଦ କରିଥିଲେ ୧୯୧୬ ରେ ।

## ସମ୍ବଲପୁର

### ଉତ୍କଳସମ୍ମିଳନୀ

ସମ୍ବଲପୁର ପୀଠେ କି ଶୋଭା ଧର
ଉତ୍କଳମାନଙ୍କର ମିଳନେ ଭର ।।

ସ୍ୱସ୍ତି ପ୍ରଜାଭ୍ୟଃ ପରିପାଳୟନ୍ତୁ
ନ୍ୟାୟେନ ମାର୍ଗେଣ ମହୀଂ ମହୀଶାଃ ।
ଗୋ ବ୍ରାହ୍ମଣେଭ୍ୟଃ ଶୁଭମସ୍ତୁ ନିତ୍ୟଂ
ଲୋକାଃ ସମସ୍ତାଃ ସୁଖିନୋ ଭବନ୍ତୁ ।

ଶ୍ରୀ ଗୋବିନ୍ଦ ରଥଙ୍କ ଦ୍ୱାରା ପ୍ରଥମବାର ପ୍ରକାଶିତ ।
କଟକ ଦତ୍ତ ପ୍ରେସରେ ମୁଦ୍ରିତ

CUTTACK

Printed by H. M. Dutta at the Dutta Press, 1916

ମୂଲ୍ୟ ଟ୦/ ଏକଅଣା ମାତ୍ର

## ମଙ୍ଗଳାରୋପଣ

ସମ୍ବଲେଶ୍ୱରୀଙ୍କ ମନ୍ଦିରେ ନିଶାଣ,
ଗୋଶାଳାରେ ହେଲା ଗୋପୂଜାବିଧାନ ।

ଗୋପାଳଜୀମଠେ କଲେ ସାଧୁ ଧ୍ୟାନ,
ବ୍ରହ୍ମପୁରପୀଠେ ଶୁଭ ସ୍ମରଣ ।

ସୋମନାଥଙ୍କର ଘୋର ଘଣ୍ଟାଧ୍ୱନି,
ସନ୍ୟାସୀ ଡାକିଲେ ଉଚ୍ଚେ ଶୁଭବାଣୀ ।

ଭିକ୍ଟୋରିୟା ଘାଟେ ହେଲା ପ୍ରତିଧ୍ୱନି,
ପ୍ରହରୀ ସତେକି ନଦୀ ପାଷାଣ । ୧ ।

ଡାକିଲେ ଅଲକ୍ଷେ ଦେବ ପିତୃଗଣ,
ଆସ ଆସ ଉଠ ଉଠ ଶିଶୁଗଣ ।

ମାତୃଯଜ୍ଞକାର୍ଯ୍ୟ କର ହେ ସାଧନ,
ସରଳ ଭାବରେ ମଣ୍ଡପେ ଯାଇ ।

ପତାକା ଉଡ଼ାଇ ହେଲେ ଧାବମାନ,
ଥାନୀ ଆଗନ୍ତୁକ ଉତ୍କଳ-ସନ୍ତାନ ।

ଉଜ୍ଜ୍ୱଳ ଦିଶିଲା ମାତୃପୀଠ ସ୍ଥାନ,
ଉତ୍ସାହେ ନାଚିଲେ ସକଳ ଭାଇ । ୨ ।

ଆନନ୍ଦେ ସଭାରେ ପ୍ରତିନିଧିଗଣ,
ଆଲିଙ୍ଗନ କେହି କରମରଦନ ।

କଲେ ପରସ୍ପରେ ପ୍ରୀତି ସମ୍ଭାଷଣ,
ଉତ୍ସାହ ତରଙ୍ଗ ଉଠିଲା ଖରେ ।

କେଉଁ ଧରାଧିପ ହେଲେ ସଭାପତି,
ଆଉ ଭାଇମାନେ ବସି ପନ୍ତି ପନ୍ତି ।

ଦେଶର ମଙ୍ଗଳ ମନରେ ଭାବନ୍ତି,
ଜୟ ଜୟ ଧ୍ୱନି ହେଲା ଉଚ୍ଚରେ । ୩ ।

## ସଭାଗୃହ

ସଭାଗୃହ ଅତି ପ୍ରଶସ୍ତ, ଦୁଇ ସହସ୍ର ବ୍ୟକ୍ତି ବସିବାର ଉପଯୋଗୀ ସ୍ଥାନ । ନାନା ବର୍ଣ୍ଣରେ ଚିତ୍ରିତ ଓ ବଡ଼ ବଡ଼ ଚନ୍ଦ୍ରାତପମାନଙ୍କରେ ସୁଶୋଭିତ । କାଠଖୁଣ୍ଟମାନଙ୍କରେ ରଙ୍ଗିନୀ କାଗଜ ମୋଡ଼ ଦିଆଯାଇ ଦର୍ଶକ ନେତ୍ରକୁ ଲୋଭା-ସ୍ପଦପରି ପ୍ରତୀୟମାନ ହେଉଥିଲା । ସଭାପତିଙ୍କ ନିମିତ୍ତ ଦୁଇହାତ ଉଚ୍ଚରେ କାଷ୍ଠ ନିର୍ମିତ ପିଣ୍ଡି ପ୍ରସ୍ତୁତ ହୋଇ ନାନା କାରୁକାର୍ଯ୍ୟରେ ମଣ୍ଡିତ ଥିଲା । ସେଠେ ଶୁକ, ଶାରୀ ଓ ଭଦଭଦଳିଆ ପକ୍ଷୀ ବସି ଶୁଭସୂଚନା କରୁଥିଲେ । ଏମନ୍ତ କି ତାହା ଦେଖି ଅଗଣିତ ଲୋକେ ଛନକା ହେଉଥିଲେ । ସଭାଗୃହର ଦ୍ୱାର ଉପରେ ସ୍ୱାଗତ ଲେଖା ହୋଇ ନାନାସ୍ଥାନରେ ସ୍ତମ୍ଭମାନଙ୍କରେ ସ୍ୱଦେଶ ହିତକର ଉପଦେଶ ସୂଚକ ବାକ୍ୟମାନ ଚୋଟକାଗଜରେ ବଡ଼ ବଡ଼ ଅକ୍ଷରରେ ଲିଖିତ ହୋଇ ଟଙ୍ଗା ଯାଇଥିଲା । ଲୋକମାନେ ତାହା ପାଠକରି ଆନନ୍ଦିତ ଓ ଉତ୍ସାହିତ ହେଉଥିଲେ । ତହିଁମଧ୍ୟରୁ କେତେଗୁଡ଼ିଏ ବାକ୍ୟ ନିମ୍ନରେ ପ୍ରଦର୍ଶିତ ହେଲା ।

୧ । ଶରୀରଂ ବା ପାତୟେତ୍ । କାର୍ଯ୍ୟଂ ବା ସାଧୟେତ୍ ॥

୨ । ଉତ୍କଳର ସୁତା ସୁତ । ଲୁଗିକର ଦେଶ ହିତ ॥

୩ । ନିୟମ କରିଛି ବିଧି । ସାଧନାରେ ହୁଏ ସିଦ୍ଧି ॥

୪ । କର୍ମେ ମାନ । ମାନେ ପ୍ରାଣ ॥

୫ । କୋଣାର୍କ ଭୁବନେଶ୍ୱର । ସୁଷମା ଦେଶ ନେତ୍ରର ॥

୬ । ଉତ୍କଳ ସମ୍ମିଳନୀ । ଅଟେ ମଙ୍ଗଳ ସାଧନୀ ॥

୭ । ମାତୃଭାଷା ମାତୃଭୂମି । ଅଟନ୍ତି ଦୁହେଁ ଜନନୀ ॥

୮ । ଜାଗର କବଳେ ପଡ଼ି । ଯାଉଛିରେ ସବୁ ସରି ॥

୯ । ଦେଶ ସେବା ମହାଧର୍ମ । ତାହା ଜାଣି କର କର୍ମ ॥

୧୦ । ଉଠି ମନ ଦୃଢ଼ କର । ପ୍ରକୃତ ସାହସ ଧର ॥

୧୧ । ବିକଳାଙ୍ଗ ମାତା ଆଜ । ଉଠିବାକୁ ଶକ୍ତି ନାହିଁ ॥

୧୨ । ଦେଖ ସାବଧାନେ ଜ୍ଞାନ ନେତ୍ର ଫେଇ । ତୁମ୍ଭ ମଧ୍ୟେ ସାନ ବଡ଼ ନାହିଁ କେହି ॥

୧୩ । ପୂତକରି ପ୍ରାଣ ମନ । ଲଭହେ ଗୌରବ ଧନ ॥

୧୪ । ଉଠ ନିଦ୍ରା ପରିହରି । ଯାଉଛିରେ ଦିନ ସରି ॥

୧୫ । ମନ୍ତ୍ରର ସାଧନ ଅବା । ଶରୀର ପାତନ ॥

୧୬ । ଖାଇ ତଣ୍ଡିଟିପି ନ ନିଅ ଧନ । ଏଥିରେ ଦେଶଟି ହେବ ଉଜ୍ଜନ ॥

୧୭ । ବିହି ନାରୀ ଶିକ୍ଷା । କର ଜାତି ରକ୍ଷା ॥

୧୮ । କାହା ଚିର ଦିନ । ନ ଯାଏ ସମାନ ॥

୧୯ । କର ଯତ୍ନ ସର୍ବେ ମିଳି । ଶୁଭ୍ର ହେଉ ମାତା ଶିରୀ ॥

୨୦ । ଦେଖ ଏ ନବୀନ ଯୁଗେ । ଦୀପ୍ତି ଉଜ୍ଜଳ ଚୌଦିଗେ ॥

୨୧ । ଜାଗ ଜାଗ ଜଗ ଜାଗ । ଜନ୍ମଭୂମି ସେବାରେ ॥

୨୨ । ଦେଖ ଆଜି ନବଯୁଗେ । ଜାଗ ସର୍ବେ କର୍ମଯୋଗେ ॥
ଦେଖି ଏହି କାଳ ଭାବ । ଦେଖାଅ ନିଜ ପ୍ରଭାବ ॥

୨୩ । ନାହିଁ ସେ ପୂର୍ବ ବିଭୂତି । ନାହିଁ ଗୌରବ କୀରତି ॥

୨୪ । ମୋହ ଅନ୍ଧକାରେ ପଡ଼ି । ନ ଯାଅହେ ପଥ ହୁଡ଼ି ॥

୨୫ କର୍ମକର, କର୍ମକର । ଜନନୀର ଦୁଃଖ ହର ॥

୨୬ । ସ୍ୱଦେଶ ହିତ ସାଧନ । ଅଟଇ ପରମ ଧନ ॥

୨୭ । ମା' ସମ୍ବଲେଶ୍ୱରୀ ସିଂହବାହିନୀ ।
ସର୍ବଶକ୍ତିଦାୟିନି ମାତଃ ଶିବପ୍ରିୟେ ।
ତୁମ୍ଭର ଶତ୍ୟାଂଶଜାତ ଆମ୍ଭେ ଉତ୍କଳୀୟ—
ସନ୍ତାନ ତୁମ୍ଭର ମନ୍ଦିରରେ ଆସୀନ ।
ପ୍ରାର୍ଥନା କରୁଁ—ଶୁଣ ମାତଃ ।
ଉତ୍କଳରେ ପ୍ରକାଶ ହୁଅ ॥

୨୮ । କର୍ମକର କର୍ମ-ବୀର । ଜନନୀର ଦୁଃଖ ହର ॥

୨୯ । ଦେଖୁନାହଁ କି ହେ ମନେ ବହି ଲାଜ । କି ଥିଲା ଏ ରାଜ୍ୟ କି ହୋଇଛି ଆଜ ॥

୩୦ । ନଶ୍ୱର ଧନ ଧାନ୍ୟେ । ପୂଜ ହେ ବିଦ୍ୟମାନେ ॥

୩୧ । ହିତାହିତ ମୂଳ ଜ୍ଞାନ । ଅନୁଜ୍ଞା ପକ୍ଷେ ସ୍ୱପନ ॥

୩୨ । ମିଳିଲେ ସକଳ ଭାଇ । ମା' ଦୁଃଖ ରହିବ ନାହିଁ ॥

୩୩ । ନିଜ ପକ୍ଷେ ବାଧା ବିଘ୍ନ ଅତିକ୍ରମ । କରିବାର ସିନା ପ୍ରେମର ଧରମ ॥

୩୪ । ଆସ ଆସ ଭାଇ, ସରବେ ଉତ୍କଳି । ଦେଶ-ସେବା ପୂଜା କରିବା ଯେ ମିଳି ॥

୩୫ । ଆସ ଆସ ଆସ ଭାଇ । ଆଶାର ସଙ୍ଗୀତ ଗାଇ ॥

୩୬ । ଆଗେ ଚାଲ ଆଗେ ଚାଲ । ଥାଉଁ ଥାଉଁ ସମୟ ॥

୩୭ । ଅସାର ଝଟକ ହୋଇଅଛି ସାର । ଭଣ୍ଡତାର ବଢ଼ି ଯାଉଛି ପ୍ରସାର ॥

୩୮ । ଉତ୍କଳ ଜନନୀ ରହିଛନ୍ତି ରୁହିଁ । ପାଳହେ କର୍ତ୍ତବ୍ୟ ସର୍ବେ ତାଙ୍କପାଇଁ ॥

୩୯ । ସର୍ବେ ଲଗାଇଲେ ମନ । ଦେଶର ହେବ କଲ୍ୟାଣ ॥

୪୦ । ଏକତାର ଗୁଣ, । ଅଟଇ ମହାନ ॥

୪୧ । ଅହମିକା ବାଦ୍ଧୁ ଗ୍ରସ୍ତହୋଇ ବ୍ୟସ୍ତେ । ମୁଁ ମୁଁ କରି ଆହା କରନ୍ତି ସମସ୍ତେ ॥

୪୨ । ହେ ଉତ୍କଳ ଯୋଗ୍ୟପୁତ୍ର । କର ମାତୃଭୂମି ହିତ ॥

୪୩ । ମଣ ସର୍ବ ହୁଡା ହୁତେ । ପୁଷ୍ପ ବେନି ଏକ ବୃନ୍ତେ ॥

୪୪ । ମିଳିଣ କାର୍ଯ୍ୟ କର ଭାଇ । ସହାୟ ହେବେ ସମ୍ବଲ୍ପର ॥

୪୫ । ଦେଶ ଆଜି ନବଯୁଗେ । ରତ ସର୍ବେ କର୍ମଯୋଗେ ॥

୪୬ । ନାହିଁ ପୂର୍ବ ଧନ । ନାହିଁ ପୂର୍ବ ପୁଣ୍ୟ ॥

୪୭ । ନିଦୁ ଉଠ । ମୁଣ୍ଡଟେକ ॥

୪୮ । ମନ ଥିଲେ ବାଟ ଅଛି । ଅସମ୍ଭବ ନୁହେଁ କିଛି ॥

୪୯ । ସଦାଚିନ୍ତ ଦେଶହିତ । ଦୁଃଖ ଘୁଞ୍ଚିବ ତୁରିତ ॥

୫୦ । ନ ଦେଇ ଦୋଷ ଈଶ୍ୱରେ । ପଶ ହେ କର୍ମ କ୍ଷେତ୍ରରେ ॥

୫୧ । ଜୀବନ ଥିବାଯାଏ ଭାଇ । ଜନ୍ମଭୂମିରେ ଥାଅ ରହି ॥

୫୨ । ଦିନ ଯାଏ । ଚିହ୍ନ ରହେ ॥

୫୩ । ନକର ଆଳସ୍ୟ । ନ ହୁଅ ହତାଶ ॥

୬୪ । ଉଠ ହେ ଉଠ ଭଇନ । କର କଲ୍ୟାଣ ସାଧନ ।।
୬୫ । ଅର୍ଜ୍ଜିକରି ଅର୍ଥ ଭୁଞ୍ଜ । ଜଗତରେ ପୂଜାପାଅ ।।
୬୬ । ଧନ ଯେବେ ଅଛି ହାତେ । ଦାନକର ଦେଶ ହିତେ ।।
୬୭ । ଉଠ ଉଠ ଶେଷ କର । ବୃଥା ଚିନ୍ତା ପରିହର ।।
୬୮ । ଅଚିତ୍ର ଭଞ୍ଜନସେତ୍ର । ସୁସ୍ତ୍ରୁ ଶିଳ୍ପ ବିଚିତ୍ର ।।
୬୯ । ଶିଥିଲ ଏ ଦେଶ । ହୋଇଅଛି କିସ ।।
୭୦ । ଶିର୍ଯ୍ୟ ଗୁଣେ ମସ୍ତ । ଉଚ୍ଛଳ ସନ୍ତାନ ।।
୭୧ । ଦେଶ-ଭାର୍ଯ୍ୟେ ଧନ୍ୟ ଯେହୁ । ମନୁଷ୍ୟରେ ଗଣ୍ୟ ସେହୁ ।।
୭୨ । ଯତୋଧର୍ମ ସ୍ତତୋ ଜୟଃ । କୀର୍ତ୍ତି ଯସ୍ୟ ସଜୀବତି ।।
୭୩ । ସ୍ମରହେ ପୂର୍ବ ଗୌରବ । ସ୍ମର ହେ ପୂର୍ବ ବିଭବ ।।
୭୪ । ଉଠ ମନ ଦୃଢ଼କର । ପ୍ରକୃତ ସାହସ ଧର ।।
୭୫ । କାନ୍ଦିଣ ଡାକନ୍ତି ମାତା । ଜାଗ ମୋର ସୁତ ସୁତା ।।
୭୬ । କେତେକାଳ ଆଉ ରହିଥିବ ପଡ଼ି । ପ୍ରକୃତ ଉନ୍ନତି ମାର୍ଗକୁ ଯେ ଛାଡ଼ି ।।
୭୭ । ଭାଇ ଭାଇ ହୋଇ ଏକ । ଭରମାତା ନାମଟେକ ।।
୭୮ । ଧନ ଜନ ଗୋପ ଲକ୍ଷ୍ମୀ । ଉନ୍ନତି ପ୍ରଧାନ ସାକ୍ଷୀ ।।
୭୯ । ଭାରୁ ନାମ ଯେହୁ ବହନ୍ତି ସ୍ୱଭାବେ । ବୀର ହୁଅନ୍ତି ସେ ପ୍ରେମର ପ୍ରଭାବେ ।
୭୦ । କରୁଛନ୍ତି ଲୋକେ ଉପାଧି ଆଶାରେ । ମନୁଷ୍ୟର ପୂଜା ଷୋଡ଼ଶୋପଚାରେ ।।
୭୧ । ଏ ଯେ ତୁମ୍ଭ ଦେଶ । କୀର୍ତ୍ତିରେ ଅଶେଷ ।।
୭୨ । ଦେଶର ଏ ଦୀନ ଦଶା । ନାଶଇ ଦେଶ ଭରସା ।।
୭୩ । ମା ସମ୍ପଦେ ମୋ ସମ୍ପଦ । ମା ବିପଦେ ମୋ ବିପଦ ।।
୭୪ । ରକ୍ଷ ଜାତି ଶାଣ । ସାର୍ଥ କର ପ୍ରାଣ ।।
୭୫ । ପୂର୍ବ ଗୌରବର କଥା । ନ ଟାଳଇ କାହାଁ ମଥା ।।
୭୬ । ଅନ୍ନ ଜଳ ଦେଶେ ରଖ । ବର୍ଦ୍ଧିବରେ ଭାଇ ଦେଖ ।।
୭୭ । କୃଷି ବାଣିଜ୍ୟରେ ମନ । ଦେଇ ଭାଇ ରଖ ମାନ ।।
୭୮ । ସାହିତ୍ୟ ଉନ୍ନତି-ପଥ । କର ହେ ଭାଇ ପ୍ରଶସ୍ତ ।।
୭୯ । ପୁସ୍ତକ ଗ୍ରନ୍ଥମାନ । ଛାପିକର ବିତରଣ ।।
୮୦ । ଦେବାଳୟ ସରୋବର । ଚଞ୍ଚଳ ସଂସ୍କାର କର ।।
୮୧ । ଦେଖାଇ ଶିଳ୍ପ ଚତୁରୀ । ନିଅ ବେଗେ ବାହାଦୁରୀ ।।
୮୨ । ଶ୍ରୀ ଜଗନ୍ନାଥ ଦୟାଧର । ପୁରୀ ଭାଇଙ୍କି ରକ୍ଷାକର ।।
୮୩ । ସତ୍ୟବାଦୀର ଭାଇଗଣେ । ସାକ୍ଷୀଗୋପାଳ ରଖ ପ୍ରାଣେ ।।
୮୪ । ତାରା ତାରିଣୀ ଶ୍ରଦ୍ଧ ଚିତ୍ତେ । ଗଞ୍ଜାମ ଭାଇଙ୍କି ରଖିବେ ।।
୮୫ । ବାଲେଶ୍ୱରର ଗୋପିନାଥେ । ରହିବ ଭାଇଙ୍କର ସାଥେ ।।
୮୬ । କଟକ କାଳୀ ଠାକୁରାଣୀ । ଷଷ୍ଠୀ ରଖନ୍ତୁ ସର୍ବପ୍ରାଣୀ ।।
୮୭ । ହେ ପ୍ରଭୁ ଶ୍ରୀ ଚନ୍ଦ୍ରଶେଖର । ଗଡ଼ଜାତିଙ୍କ ରକ୍ଷାକର ।।

୪୮ । ତାଙ୍କ ଚର୍ଚ୍ଚା ଦେଖୁଥିବେ । ସର୍ବ ବିପଦ ସଂହାରିବେ ॥
୪୯ । ଭଦରଖର ଭଦ୍ର-କାଳୀ । ଦିଅ ମା ତାଙ୍କିନାଙ୍କି ତାଳି ॥
୫୦ । ସାରଳା ଦେବୀ ଭଗବତୀ । ତାପ ନାଶନେ ଦେବ ଛତି ॥
୫୧ । ଢାକଟପୁରର ମଙ୍ଗଳା । ସଭାରେ କରିବ ଶୃଙ୍ଖଳା ॥
୫୨ । ରଖଟେ। ମାତ ସମ୍ବଲାଇ । ସହଜେ ଏ କାର୍ଯ୍ୟ ସାଧଇ ॥
୫୩ । ହେ ଦେବଦେବ ଲିଙ୍ଗରାଜ । ଲିଭ ଏଡାଇ ସାଧ କାର୍ଯ୍ୟ ॥

## ପ୍ରତିନିଧିମାନଙ୍କର ଅଭ୍ୟର୍ଥନା

ସମ୍ବଲପୁର ଭାଇମାନେ ଆଗନ୍ତୁକ ପ୍ରତିନିଧିମାନଙ୍କୁ ରେଲ ଷ୍ଟେସନଠାରୁ ଗାଡ଼ି କରାଇ ନେଇ ଯାଇଥିଲେ । ସେମାନଙ୍କପାଇଁ କେରୁଆପଡା, ମୁଦିପଡା ଓ ଅନ୍ୟାନ୍ୟ ସ୍ଥାନରେ ବଡ ବଡ ବଙ୍ଗଳାମାନ ବସାଘର କରାଇ ଦେଇଥିଲେ । ଏମନ୍ତ କି ବାବୁ ରମନାରାୟଣ ମିଶ୍ର ଆପଣାର ବସୁବାସ ଦ୍ୱିତଳ ଭବନ ଛାଡ଼ିଦେଇଥିଲେ, ଖାଦ୍ୟସାମଗ୍ରୀର ସୁବନ୍ଦୋବସ୍ତ କରାଇଥିଲେ, ସମ୍ବଲେଶ୍ୱରୀଙ୍କ ପ୍ରସାଦ ଦେଇଥିଲେ । ସ୍ୱେଚ୍ଛା ସେବକମାନେ ପ୍ରତିନିଧିଙ୍କ ନିକଟରେ ରହି ସକଳ ତତ୍ତ୍ୱ ବୁଝୁଥିଲେ । ସେମାନଙ୍କ ଚଳିବାକାର୍ଯ୍ୟ ସର୍ବାଙ୍ଗ ସୁନ୍ଦର ହୋଇଥିଲା । ପ୍ରତିନିଧିମାନଙ୍କୁ ସଭାରେ ଉପସ୍ଥିତ ହେବାପାଇଁ ଏକ ଏକ କାର୍ଡ ଦିଆଯାଇଥିଲା । ତହିଁରେ ଏହିକଥା ଲେଖାଅଛି —

> **ସ୍ୱାଗତ**
>
> ଉତ୍କଳ ସମ୍ମିଳନୀ
>
> ଏକାଦଶ ବାର୍ଷିକ ଅଧିବେଶନ ।
>
> ସମ୍ବଲପୁର
>
> ସ: ୧୩୨୩-ଖ୍ରୀ: ୧୯୧୫ ।
>
> ସ୍ଥାନ—"ବୁଢ଼ାରଜା ପ୍ରାନ୍ତର" ।
>
> ଦିନ—ଧନୁ ୧୩-୧୪ ଡିସେମ୍ବର ୨୭—୨୮
>
> ବେଳ—ପୂର୍ବାହ୍ଣ ୧୨୳ ଦଣ୍ଡ-୧୧ ଘଣ୍ଟା ।

ସଭା—୨୭ । ୧୨ । ୧୯୧୫

ସିଂହଭୂମଜିଲ୍ଲା କେରସୁଆର ନୃପତି ଶ୍ରୀ ଲକ୍ଷ୍ମୀନାରାୟଣ ସିଂହଦେଓ ସଭାପତି ଆସନ ଗ୍ରହଣ କଲେ । ଚତୁର୍ଦ୍ଦିଗରେ ଜୟ ଜୟ ଧ୍ୱନି ଉଠିଲା ।

ବାଦ୍ୟ ସଙ୍ଗୀତ ପରେ ସମ୍ମିଳନୀ ମଣ୍ଡପରେ ଲିଖିତ ନିର୍ଦ୍ଧାରଣମାନ ଧାର୍ଯ୍ୟ ହେଲା ।

ପ୍ରଥମ ନିର୍ଦ୍ଧାରଣ—ମହାମହିମ ସମ୍ରାଟଙ୍କର ମହାସମରରେ ଜୟକାମନା ।

ଦ୍ୱିତୀୟ ନିର୍ଦ୍ଧାରଣ—ଗୋପାଳକୃଷ୍ଣ ଗୋଖେଲ, ସାର ଫିରୋଜ ସାହା ମେହତା ଓ ହେନେରୀ କଟନଙ୍କର ଏବଂ ବାବୁ ଗୋକୁଳାନନ୍ଦ ଚୌଧୁରୀଙ୍କର ଅକାଳ ମୃତ୍ୟୁ ନିମିତ୍ତ ଶୋକ ପ୍ରକାଶ ।

ତୃତୀୟ ନିର୍ଦ୍ଧାରଣ—ଖୋର୍ଦ୍ଧାରୋଡ଼ଠାରୁ ସମ୍ବଲପୁର ପର୍ଯ୍ୟନ୍ତ ସ୍ୱତନ୍ତ୍ର ରେଲପଥ ପ୍ରସ୍ତୁତ କରଣ ।

ଏପରି ପାଠନା ସମ୍ମିଳନୀ ନାମକ ପୁସ୍ତକ ଅନେକ ପରିମାଣରେ ସଭାରେ ଓ ଅନ୍ୟ ସ୍ଥାନ ରେ ବିକ୍ରୟ ହୋଇଥିଲା । ଏହି ପୁସ୍ତକ ପ୍ରକାଶନରେ:

| | | |
|---|---|---|
| ବାବୁ ଶ୍ରୀ ମଧୁସୂଦନ ଦାସଙ୍କ ପକ୍ଷରୁ | .. | ଖ ୫୦୦ ଣ |
| ବାବୁ ଶ୍ରୀ ବ୍ରଜସୁନ୍ଦର ଦାସ ,, | .. | ଖ ୧୦୦ ଣ |
| ପଣ୍ଡିତ ଶ୍ରୀ ଗୋବିନ୍ଦ ରଥ ,, | .. | ଖ ୧୦୦ ଣ |
| ବାବୁ ଶ୍ରୀ କଳ୍ପତରୁ ଦାସ ଓକିଲ ,, | .. | ଖ ୫୦ ଣ |
| ,, ଶ୍ରୀ ରମାଶଙ୍କର ରାୟ ଓକିଲ ,, | .. | ଖ ୫୦ ଣ |
| ଏକ୍ଷଣପୁରରେ ଜଣେ ମହାତ୍ମା— ଶ୍ରୀ ବିନ୍ଧାଧର ମିଶ୍ରଙ୍କ ଦ୍ୱାରା ନେଇଥିଲେ | .. | ଖ ୫୦ ଣ |
| ମୋଟ | .. | ଖ ୮୫୦ ଣ |

ଏହି ପୁସ୍ତକ ସମ୍ବଲପୁର ଜିଲ୍ଲା ଅନେକ ଗଡ଼ଜାତରେ ଏବଂ ଗଞ୍ଜାମ ଜିଲ୍ଲାର ନାନା ସ୍ଥାନରେ ଓ ପୁରୀ, କଟକ, ବାଲେଶ୍ୱର, ମେଦିନୀପୁର ଅଞ୍ଚଳରେ ପ୍ରଚାରିତ ହୋଇଅଛି, ଏତଦ୍ଦ୍ୱାରା ସମ୍ମିଳନୀ କଥା ବହୁତ ଲୋକେ ଜାଣି ଅଛନ୍ତି ।

ସମ୍ମିଳନୀ ମଣ୍ଡପରେ ନିମ୍ନଲିଖିତ ବ୍ୟକ୍ତି ମାନଙ୍କର ଲିଖିତ ପଦ୍ୟ ବିତରିତ ଓ ପଠିତ ହୋଇଥିଲା ।

୧ । ଉଦ୍‌ବୋଧନ—ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର

୨ । ଉଦ୍‌ବୋଧନ ସଙ୍ଗୀତ—ଶ୍ରୀ ଚିନ୍ତାମଣି ମହାନ୍ତି

୩ । ଭାରତ ଗୀତିକା—ସ୍ୱର୍ଗୀୟ କବିବର ରାୟ ରାଧାନାଥ ରାୟ ବାହାଦୁର

୪ । ଜାତୀୟ ସଙ୍ଗୀତ—ଶ୍ରୀ ମଧୁସୂଦନ ଦାସ,

୫ । ଉଦ୍‌ବୋଧନ—ଶ୍ରୀ ଗଙ୍ଗାଧର ମେହେର,

୬ । ମାତୃପୂଜା—ଶ୍ରୀ ଦାମୋଦର ପଟ୍ଟନାୟକ,

୭ । ଜାତୀୟ ସଙ୍ଗୀତ—ଶ୍ରୀମତୀ ଅନ୍ନପୂର୍ଣ୍ଣା,

୮ । ଉତ୍ସାହ ସଙ୍ଗୀତ—ଶ୍ରୀ କୃଷ୍ଣମୋହନ ପଟ୍ଟନାୟକ,

୯ । ଜନନୀଙ୍କ ଦୁଃଖ ବର୍ଣ୍ଣନା—ଶ୍ରୀ କୃଷ୍ଣମୋହନ ପଟ୍ଟନାୟକ,

୧୦ । ମାତୃପୂଜା—ଶ୍ରୀ କୃଷ୍ଣମୋହନ ପଟ୍ଟନାୟକ,

୧୧ । ବିଦାୟ ସଙ୍ଗୀତ—ଶ୍ରୀ କୃଷ୍ଣମୋହନ ପଟ୍ଟନାୟକ ।

## ସ୍ୱଦେଶ ଉନ୍ନତିକଳ୍ପେ ବକ୍ତୃତା

ବାବୁ ଶ୍ରୀ ଗୋପବନ୍ଧୁ ଦାସ,

ବାବୁ ଶ୍ରୀ ବ୍ରଜସୁନ୍ଦର ଦାସ,

ବାବୁ ଶ୍ରୀ ରାମକୃଷ୍ଣ ପଟ୍ଟନାୟକ,

ବାବୁ ଶ୍ରୀ ବିଶ୍ୱନାଥ ମିଶ୍ର,

ବାବୁ ଶ୍ରୀ ହନୁମନ୍ତ ରାଓ ପଟ୍ଟନାୟକ,

ମହନ୍ତ ଶ୍ରୀ ବିହାରୀ ଦାସ ।

ସାହେବ ଶ୍ରୀ ଭୁବନେଶ୍ୱର ବଡ଼ହିଦାର ଓ ଆଉ କେହି କେହି ତେଜସ୍ୱିନୀ ବକ୍ତୃତା କରିଥିଲେ । ଗୋପବନ୍ଧୁ ସିଂହଭୂମି ? ଓଡ଼ିଆ ଭାଷାର ଉନ୍ନତି ନିମିତ୍ତ ଷ୍ଟିମାସ ଭଟାଇବେ ବୋଲି ପ୍ରତିଜ୍ଞା କରିଥିଲେ । ଭୁବନେଶ୍ୱର ବାବୁ ବକ୍ତୃତାରେ ବଡ଼ ଉପହାସ ଉଠିଥିଲା । ସେ କହିଥିଲେ—

ତିସ୍‌-କନାରେ ମୋତିହର ।
ମୂଲ୍ୟ କି ତୁଟିବ ତାହାର ।।

ଇଂରାଜୀରେ ଯେତେକ ଦୀର୍ଘ ବକ୍ତୃତା ଦେଇଥିଲେ, ତାହା ସଭାପତିଙ୍କି ସମୁଝାଇ ଦିଆ ନ ଯିବା କଥା କେହି କେହି ଭାବୁଥିଲେ । ଗଞ୍ଜାମ ଜିଲ୍ଲାର ତେଣ୍ଟାପଦର ଗ୍ରାମନିବାସୀ ବାବୁ ମଦନମୋହନ ରଥ ଇଂରାଜୀରେ ଯେଉଁ ଦୀର୍ଘ ବକ୍ତୃତା ଦେଇଥିଲେ । ତାହା ଶୁଣି ଲୋକେ ଆଶ୍ଚର୍ଯ୍ୟ ହୋଇ ଭାବୁଥିଲେ ଏହାଙ୍କର ପର-ଭାଷାରେ ଏତେବଡ଼ କ୍ଷମତା, ଓଡ଼ିଆ ଭାଷାରେ କେଡ଼ାଣି କେତେବଡ଼ ଶକ୍ତି ଥିବ ।

## ଶ୍ରୀ ଗୌରୀଶଙ୍କର ରାୟ

ବାବୁ ଶ୍ରୀ ଗୌରୀଶଙ୍କର ରାୟ ସଭାମଣ୍ଡପରେ ଦଣ୍ଡାୟମାନ ହୋଇ ବିନୀତଭାବରେ କହିଥିଲେ । ଆମ୍ଭମାନଙ୍କ ପୂର୍ବପୁରୁଷମାନେ ବହୁକାଳ ପୂର୍ବେ ଏ ଦେଶକୁ ଆସିଥିଲେ । ଆମ୍ଭମାନଙ୍କର ଏହି ଦେଶରେ ଜନ୍ମ, ବର୍ତ୍ତମାନ ଆମ୍ଭେମାନେ ଏଠାରେ ବାସିନ୍ଦା ଅଟୁ । ଆମ୍ଭମାନଙ୍କୁ କେଉଁ ବୋଲି ଘୃଣା କରିବା ସଙ୍ଗତ ନୁହେଁ । ସଭାପତି କେଉଁ ନୃପତି ବିସ୍ମିତ ହୋଇ କହିଲେ, ନାହିଁ ନାହିଁ ତୁମ୍ଭଙ୍କୁ କେହି ଘୃଣା କରିବେ ନାହିଁ । ଗୌରୀଶଙ୍କର ବାବୁଙ୍କ ମୁଖରୁ ଏହିକଥା ଶ୍ରବଣ କରି, ସମସ୍ତ ଓଡ଼ିଆଙ୍କର ହୃଦୟ ଦ୍ରବୀଭୂତ ଓ ସ୍ନେହଭାବ ଉଦିତ ହୋଇଥିଲା । ଅନେକେ ଭାବିଥିଲେ ଭାଷାର ଓ ସ୍ୱଭାବଙ୍କର କିଛିଏ ପ୍ରଭେଦ ହୋଇପାରେ ଏହା ସ୍ୱାଭାବିକ, ଏହାବୋଲି କେଉଁ ଭାଷା ବା କେଉଁ ଜାତି ବୋଲି କୌଣସି ସମ୍ପ୍ରଦାୟ ନାହିଁ । ବାହିବି ଘୃଣା କରିବେ; ଯେତେବେଳେ ଏ ଦେଶବାସୀ ବଙ୍ଗାଳୀଙ୍କ ମଧ୍ୟରେ ରାଧାନାଥ ଓ ରାମଶଙ୍କରଙ୍କ ପରି ଉଚ୍ଚଲେଖକ ଜନ୍ମି ଓଡ଼ିଆ ଭାଷାରେ ଉପାଦେୟ ଗ୍ରନ୍ଥମାନ ଲେଖି ଅଛନ୍ତି । ସେତେବେଳେ ତାଙ୍କର ଭାଷା ଜାତି କଦାପି ଘୃଣ୍ୟ ହୋଇ ନ ପାରେ । କୁତଘରେ ଓଡ଼ିଆ ଶବ୍ଦ ଘେନି ଯେଉଁ ତର୍କ ଉଠିଥିଲା, ସେଥିପାଇଁ ବୋଧହୁଏ ବାବୁ ଏକଥା ସଭାରେ ପକାଇଲେ । ବାବୁଙ୍କର ବାକ୍ୟ ଗୁଡ଼ିକ ଶିକ୍ଷାପ୍ରଦ ଅଟେ ।

## ଛାତ୍ରସଭା, ୨୯-୧୨-୧୯୧୪

ସମ୍ମିଳନୀ ମଣ୍ଡପରେ ଛାତ୍ରମାନଙ୍କର ଶିକ୍ଷାବିଷୟରେ ଏକ ସଭା ହୋଇଥିଲା । ମାନ୍ୟଗଣ୍ୟ ପାଦେରୀ ଉଇଲକିନ୍ସ ସାହେବ ସଭାପତି ହୋଇଥିଲେ । ସେ ପୁରୁଣା କାହାଣି ଲଗାଇ ବଡ଼ ମଧୁର ବକ୍ତୃତା କରିଥିଲେ । ଓଡ଼ିଆ ଜାତିର ଓ ବାଳକମାନଙ୍କର ସୌଜନ୍ୟତାର ପ୍ରଶଂସା କରିଥିଲେ । ସେ କହିଲେ ଆମ୍ଭେ କଟକରେ ଗୋଟିଏ କଥା ଶୁଣିଥିଲୁଁ ତାହା ଏହି; କଥାଟିଏ କହୁଁ ଅଛୁଁ, ଚମଡ଼ଉଡ଼ିରେ ଶୁଣିଲି; କିଏକଥା, ପାଣବାରତା, ଏହା ଆମ୍ଭେ ଗଞ୍ଜାମରେ ଅବିକଳ ଶୁଣିଅଛୁଁ ସମ୍ବଲପୁରରେ ମଧ୍ୟ ସେହିପରି ଶୁଣିଲୁଁ; ମାତ୍ର ବୁଦାସମ୍ବରରେ ଶୁଣିଲୁଁ "କିସକଥା" ଉଦାହରଣ ଭାଷାକଥା ଏତିକିମାତ୍ର ପ୍ରଭେଦ ମାତ୍ର ସବୁଠାରେ ଏକଭାବ, ସେ ଓଡ଼ିଆଙ୍କୁ ଭଲପାଉଥିବାର ଓ ସେ ନିଜେ ଆପଣାକୁ ଜଣେ ଓଡ଼ିଆ ବୋଲି ପରିଚୟ ଦେଇ ଓଡ଼ିଆଙ୍କର ବହୁଳ ପଗଡ଼ି ଗୋଟିଏ ପିନ୍ଧି ବିଦାୟ ନେଇ ଚାଲିଗଲେ । ସଭାର ଅବଶିଷ୍ଟ କାର୍ଯ୍ୟ ବାବୁ ସୁଦାମଚନ୍ଦ୍ର ନାୟକ ସଭାପତି ହୋଇ ନିର୍ବାହ କଲେ । ବାବୁ ବିଶ୍ୱନାଥ ମିଶ୍ର ଓ ବାବୁ ଫକିରମୋହନ ସେନାପତି ବାଳକମାନଙ୍କୁ ମଧୁର ଉପଦେଶ ଦେଇଥିଲେ ।

## ମଧୁବାବୁ

ମଧୁବାବୁ କଟକରେ ରହି କହିଲେ ଆମ୍ଭେ ସମ୍ବଲପୁର ଯାଇପାରିବୁଁ ନାହିଁ । ଏଲାହାବାଦରେ ଖ୍ରୀଷ୍ଟୀୟାନମାନଙ୍କର ଏକ ସଭାକୁ ଯିବୁଁ । ସେଥି ତା ୨୫ ରିଖ ଡିସେମ୍ବର (ବଡ଼ଦିନ)ରେ ସମ୍ବଲପୁରରେ ଉପସ୍ଥିତ ହୋଇ ସେହି ସମ୍ବାଦ ଦେଲେ । ତାହା କ୍ଷଣକ ମଧ୍ୟରେ ନଗରମୟ ବ୍ୟାପିଗଲା । ସମ୍ମିଳନୀ ଉଦ୍‌ଯୋଗୀ ବ୍ୟକ୍ତିମାନେ ତାଙ୍କ ନିକଟକୁ ଟେଲିଗ୍ରାମ କଲେ । ସେହିପରି ଜବାବ ପାଇଲେ । ମାତ୍ର ସମସ୍ତେ ତାଙ୍କୁ ନେତାକରି ମଣିଅଛନ୍ତି । ସେ ସମ୍ମିଳନୀର ସୃଷ୍ଟିକର୍ତ୍ତା । ତାହାଙ୍କ ଅଭାବରେ ଓଡ଼ିଆମାନେ ଯେ କେତେଦୂର ଉଦ୍‌ବିଗ୍ନ ତାହା ସମ୍ବଲପୁରରେ ଉତ୍ତମ ପରିଚୟ ମିଳିଅଛି । ସେ ଘଟନାକ୍ରମେ ଯାଇ ନପାରିଲେ ମଧ୍ୟ ଏ ସଭାରେ ତାଙ୍କର ପ୍ରଚୁର ସହାନୁଭୂତି ଥିଲା ।

କେଣେ କେଣେ ପୁରୁଣା-କାଳିଆ ଲୋକ କହିଲେ ମଧୁବାବୁଡ ଅସ୍ତର, ସେ କେଣେ କାହିଁକି ଯିବେ ?

ବିଶେଷ ପରିଚୟେ ପାଇଲରୁ ବିସ୍ମିତ ହବରେ କହିଲେ ତୁମ୍ଭେ ବ୍ରାହ୍ମମାନେ ମିଳି ତାଙ୍କୁ ଆମ ଅଞ୍ଚଳକୁ ଅଣୁନାହିଁ ?

କେହେ କହିଲେ ତାହା ହେବ କି ? ତାଙ୍କର କେଉଁପରି ଇଚ୍ଛା ଜଣାଗଲେ କେହି ମୁକ୍ତି ମଣ୍ଡପରେ କଥାଟା ପକାଇ ଦିଅନ୍ତା । ପରେ ଆଲୋଚନା ହେଲେ ଯାହା ହୁଅନ୍ତା । ଇତ୍ୟାଦି ଇତ୍ୟାଦି—ଅନେକ ବିଚାରେଣ ।

## ଆଲୋଚନା ସଭା

ସମ୍ବଲପୁର "କ୍ଲବଘରେ" ଗୋଟିଏ ଆଲୋଚନା ସଭା ହୋଇଥିଲା । ତହିଁରେ ଓଡ଼ିଆ ଶବ୍ଦ ନେଇ ଅନେକ ତର୍କ ବିତର୍କ ହେଲା । ବାବୁ ନିମାଇଁ ଚରଣ ମିତ୍ର ଅଭିମାନ କରି ବାହାରି ଆସିଲେ । ପରିଶେଷରେ "ଉତ୍କଳବାସୀ" ବୋଲି ଏହି ଶବ୍ଦଟି ସ୍ଥିର ହେଲା । ଏତଦ୍ୱାରା ଏ ଦେଶବାସୀ ବଙ୍ଗାଳୀମାନେ ଓଡ଼ିଆ ମଧ୍ୟରେ ଗଣ୍ୟ ହେଲେ ।

## ବାବୁ ଶ୍ରୀ ଗଙ୍ଗାଧର ମେହେର

ସମ୍ବଲପୁର ଅଞ୍ଚଳର ପ୍ରଧାନ କବି "ବାବୁ ଗଙ୍ଗାଧର ମେହେର" ଉପସ୍ଥିତ ଭଦ୍ରଲୋକମାନଙ୍କୁ ଦେଖା ଦେଇଥିଲେ । ସେ ଶ୍ରୀ ଗୋବିନ୍ଦ ରଥଙ୍କ ସହିତ ଦେଖାକରି ଭକ୍ତି ପୂର୍ଣ୍ଣପ୍ରଣାମ କଲେ । ତାଙ୍କୁ କହିଲେ ଆପଣଙ୍କର "କଳିକତା ବର୍ଣ୍ଣନା" ପାଠକରି ମୋହର କବିତା ଲେଖିବାର ସ୍ପୃହା ଜନ୍ମିଥିଲା ଆପଣ ମୋହର ଗୁରୁ । ଗଙ୍ଗାଧର ବଡ଼ ବିନୟୀ ଓ ନମ୍ରସ୍ୱଭାବୀ ଅଟନ୍ତି । ବାବୁ ରାଧାନାଥ ରାୟ ଏହାଙ୍କ କବିତାର ପ୍ରଶଂସା କରିଥିଲେ । ଗଙ୍ଗାଧର ନିଜ ରଚିତ କେତେକ ଗୁଡ଼ିଏ ପୁସ୍ତକ ଉପହାର ଦେଇଥିଲେ । ଗଙ୍ଗାଧରଙ୍କର କେତେକ ପୁସ୍ତକ ପ୍ରକାଶ କରିବା ପାଇଁ ସମ୍ବଲପୁରର ଦେଶ ହିତୈଷୀ ବାବୁ ଶ୍ରୀ ରାମନାରାୟଣ ମିଶ୍ର ଅର୍ଥ ସାହାଯ୍ୟ କରିଥିଲେ । ମେହେର କବି ତଳ ଲିଖିତ ପୁସ୍ତକମାନ ପ୍ରକାଶ କରିଅଛନ୍ତି ।

| | |
|---|---|
| ୧ । ମହିମା | ୫ । କବିତା କଲ୍ଲୋଳ |
| ୨ । ଅଯୋଧ୍ୟା ଦୃଶ୍ୟ | ୬ । ଉତ୍କଳ ଲକ୍ଷ୍ମୀ |
| ୩ । ଅହଲ୍ୟା ସ୍ତବ | ୭ । ତପସ୍ୱିନୀ |
| ୪ । ଇନ୍ଦୁମତୀ | ୮ । ପ୍ରଣୟ ବଲ୍ଲରୀ |

## ନାନା ସମାଚାର

ପାରଳାଖେମୁଣ୍ଡିର ୧ମ ଅଧିବେଶନର ବିବରଣ ରଜାଙ୍କ ତରଫ କର୍ମଚାରୀ ବାବୁ ନିତ୍ୟାନନ୍ଦ ପଟ୍ଟନାୟକ ଅର୍ପଣ କଲେ । ତାହା ଚନ୍ଦ୍ରୋଦୟ ପ୍ରେସରେ ଉତ୍ତମ ରୂପେ ଛାପା ହୋଇଅଛି । ଉକ୍ତ କର୍ମଚାରୀ ସେହି ଅଧିବେଶନର ଆୟ ବ୍ୟୟର ବିବରଣ ପାଠ କରିଥିଲେ ।

୨ । ଅଭ୍ୟର୍ଥନା ସଭାର ସଭାପତି ବାବୁ ବାଳୁକେଶ୍ୱର ମିଶ୍ର ଯେଉଁ ବିବରଣୀ ପାଠ କଲେ, ତହିଁରେ ନାନା କଥା ମଧ୍ୟରେ ସମ୍ବଲପୁରର ଚାଉଳ ଓ ତରଡ଼ ଡାଲିର ପ୍ରଶଂସା ଥିଲା ।

୩ । କୌଣସି କାରଣରୁ ସମ୍ବଲପୁର ଅଞ୍ଚଳର ରଜାମାନେ ସମ୍ମିଳନୀରେ ଯୋଗ ଦେଇନାହାନ୍ତି । ପାଟନାର ମହାରାଜ ପୃଥ୍ୱୀରାଜ ସିଂହ ସମ୍ମିଳନୀ ଫଣ୍ଡରେ ଏକସହସ୍ର ଟଙ୍କା ଦାନ କରିଥିଲେ । ତାହାଙ୍କ କର୍ମଚାରୀମାନଙ୍କର ଏଥିରେ ସହାନୁଭୂତି ଥିଲା । ଏ କାର୍ଯ୍ୟରେ ତାଙ୍କର ଦେଶାନୁରାଗ ପ୍ରକଟିତ ହୋଇଅଛି ।

୪ । ସମ୍ବଲପୁର କ୍ଲବଘରେ ଦିନେ ନାଟକାଭିନୟ ହୋଇଥିଲା । ବାବୁ ଶ୍ରୀ ଗୋଦାବରୀଶ ମିଶ୍ରଙ୍କର ପାଦେଶ୍ରୀ ସାହେବ ଅଭିନୟରେ ଘନ ଘନ କରତାଳି ଓ ଉଚ୍ଚହାସ ଉଠିଥିଲା ।

୫ । ସର୍ବଜନୀ ଯୋଗୁଁ ସମଲେଶ୍ୱରୀଙ୍କ ମନ୍ଦିର ସଂସ୍କାର କଥା ସମ୍ବଲପୁରରେ ଉତ୍ଥାପିତ ହେବ । ସୋନପୁର ମହାରାଜା ଏ କାର୍ଯ୍ୟପାଇଁ ପଚିଶହଜାର ଟଙ୍କା ଦାନ କରିଥାଇଛନ୍ତି । ମହାରାଜାଙ୍କର ଦେଶହିତ କାର୍ଯ୍ୟରେ ମତି ସର୍ବଦା ସ୍ଥିର ରହୁ ।

୬ । ସମ୍ବଲପୁର ନଗର ନିବାସୀ ବାବୁ ଶ୍ୟାମସୁନ୍ଦର ପାଠୀଙ୍କ ନିକଟରେ ସମ୍ବଲପୁରର ଅନେକ ହାତଲେଖା ଇତିହାସ ପୁସ୍ତକ ଅଛି ବୋଲି ଶୁଣା ଯାଉଅଛି ।

୭ । ଓଡ଼ିଶାର ସମ୍ବାଦ-ପତ୍ରମାନେ ସର୍ବଜନୀ ପକ୍ଷରେ ଭଲ ମତ ଦେଇଥିଲେ ।

୮ । କେଷ ସମ୍ବାଦ ଖଣ୍ଡବଂଶରେ ଠାକୁର ସାହିବ ଉପାଧି ମଧ୍ୟ ପ୍ରଚଳିତ ଥିବାର ଶୁଣାଯାଏ ।

## ପ୍ରତିନିଧିମାନେ ସମ୍ବଲପୁର ନଗର ଦର୍ଶନ କରିଥିଲେ ଦର୍ଶନୀୟ ସ୍ଥାନ ଓ ସଂକ୍ଷିପ୍ତ ବିବରଣୀ—

୧ । ବୁଢ଼ାରଜା ମନ୍ଦିର

୨ । ଶମଲା ମନ୍ଦିର

୩ । ଭିକ୍ଟୋରିଆ ଘାଟ ( ଏଠାର ବୁରୁଜ ଉପରେ ଚଢ଼ି ମହାନଦୀର ସୁନ୍ଦର ଦୃଶ୍ୟ ଦେଖାଯାଏ । ନଦୀ ଗର୍ଭରେ ହୀରାଜ ପରି ଅନେକ ପଥର ଅଛି )

୪ । ସୋମନାଥଙ୍କ ମନ୍ଦିର

୫ । ଧର୍ମଶାଳା

୬ । ପଞ୍ଚନେଶ୍ୱରଙ୍କ ମନ୍ଦିର

୭ । ସମ୍ବଲପୁର ସାବେକ ରାଜାଙ୍କ ନଅର ଓ ଗଦିନସିନ କୋଠା

୮ । ପାଟନା ରାଜପ୍ରସାଦ

୯ । କମଲି ହାଟ ( ପ୍ରତି ରବିବାରରେ ବସେ )

୧୦ । ଗୋଶାଳା

୧୧ । ସମଲେଶ୍ୱରୀଙ୍କ ମନ୍ଦିର

୧୨ । ବୃଷନେଶ୍ୱରଙ୍କ ମନ୍ଦିର

୧୩ । ମହାନଦୀ ପୋଲ ( ପଥର ଖୁଣ୍ଟି ଓ ଲୁହାର ଢୋଲ )

୧୪ । ବଡ଼ବଜାର

୧୫ । ଭିକ୍ଟୋରିଆ ହଲ

୧୬ । ପଲିଟିକେଲ ଏଜେଣ୍ଟଙ୍କ କଚେରି

୧୭ । ( ଜିଲଟଙ୍କା, ଅଦାଲତ ଆଦି କଚେରିମାନ )

୧୮ । କିଲ୍ଲା

୧୯ । ଗୋରା ସାହେବଙ୍କ କୋଠିମାନ

୨୦ । ପର୍ବତ ଉପରେ ସର୍କିଟ ହାଉସ

୨୧ । ରମପାଗଡ଼ ( ସ୍ନାନ ନିଷେଧ )

୨୨ । ଜରି ( ଏହା ଅତି ଗଭୀର ଅଟେ )

୨୩ । ସହର ମଧ୍ୟରେ ଅନେକ ଦେବାଳୟ ଓ ସୁଦୃଶ୍ୟ ପଥର କୋଠାମାନ ଅଛି

୨୪ । ବାସନ ଦୋକାନ

୨୫ । ନଦପଡ଼ା

ଏ ନଗରରେ ବହୁତ ବ୍ରାହ୍ମଣ ଅଛନ୍ତି ।

ମିଉନିସିପାଲିଟି ତରଫରୁ ଦୈନିକ ହାଟ ବିକିବା ଅଛି । ସେଠିମାନେ ସହର ଭିତରକୁ କୌଣସି ପଦାର୍ଥ ବିକ୍ରୟ ବାହାରୁ ଆଣିଲେ ତାହାଠାରୁ ମାସୁଲ ନିଆଯାଏ । ମହାନଦୀ ଯେ ରେଳ ପୋଲ ହୋଇଅଛି ତହିଁରେ ଦୈନିକ କର ପ୍ରାୟ ଟ ୨୦୦ଙ୍କା ଅଦାୟ ହୁଏ ବୋଲି ଶୁଣାଯାଏ । ହାଟକି ରେଳକତେ ଏବେ ଢେଙ୍କାନାଳ ମହାରାଜାଙ୍କ ହାତରେ ଅଛି ।

## ବେଦବ୍ୟାସଙ୍କ ଆଶ୍ରମ

ତୁମ୍ଭମାନଙ୍କ ମଧ୍ୟରେ କେହି କେହି ଏହି ଆଶ୍ରମ ଦେଖିଥିବେ । ପାନପୋଷ ରେଳଷ୍ଟେସନ ନିକଟରେ ପାନପୋଷ ହାଟ; ଏହି ବଜାରରେ ବହୁତ କାରବାର ହୁଏ । ମାରୱାଡ଼ୀମାନେ ଦୋକାନ କରିଅଛନ୍ତି । ଚୋପ ଲୋକେ ଏଠାରେ ରହି ଜିନିଷପତ୍ର ସଂଗ୍ରହ କରୁଅଛନ୍ତି । ଡାକଘର, ଡାକ୍ତରଖାନା, ଥାନାଘର, ସ୍କୁଲ ଆଦି କେତେକ କାର୍ଯ୍ୟାଳୟ ଅଛି । ନାଗସର୍ପୁ ମଧ୍ୟରେ ବ୍ରାହ୍ମଣୀ ନଦୀତୀରରେ ଏହି ବଜାର ଅବସ୍ଥିତ । ନଦୀର ଅପର ପାରରେ ଏକ ପର୍ବତ ଉପରେ ବେଦବ୍ୟାସ ଆଶ୍ରମ । ଏହି ସ୍ଥାନଟି ବଡ଼ ରମଣୀୟ; ଏହାର ନିକଟରେ ଶଙ୍ଖ, କୋଏଲି ଓ ସରସ୍ୱତୀ ନାମକ ତିନିନଦୀ ଏକତ୍ର ମିଶି ଅଛନ୍ତି । ଏହି ମିଳନ ସ୍ଥାନଠାରୁ ନଦୀ ପ୍ରବାହ ହୋଇ ବ୍ରାହ୍ମଣୀ ନାମ ଧାରଣ କରି ପୂର୍ବଦିଗକୁ ବହିଅଛି । ଆଶ୍ରମ ନିକଟରେ ନଦୀରେ ପୋଲ ବନ୍ଧା ହୋଇ ରେଳଗାଡ଼ି ଚାଲୁଅଛି । ଏଠାରେ କେତେଗୁଡ଼ିଏ ଦେଉଳ ଅଛି । ତନ୍ମଧ୍ୟରେ ବାଲୁକେଶ୍ୱର ମନ୍ଦିର, ଚନ୍ଦ୍ରଶେଖରଙ୍କ ମନ୍ଦିର ଏବଂ ଲଙ୍କା ମନ୍ଦିର ପ୍ରସିଦ୍ଧ । ରାମ, ଲକ୍ଷ୍ମଣ, ସୀତା ତିନୋଟି ମୂର୍ତ୍ତି ସବୁ ସାନ ସାନ ଲାଗିବ ପିଲାଙ୍କପରି ଦିଶୁଅଛନ୍ତି । ଗୋଟିଏ ପଥର ଗୁମ୍ଫାରେ ବେଦବ୍ୟାସ ଉପବେଶନ କରି ତପସ୍ୟା କରୁଥିଲେ । କେତେଗୁଡ଼ିଏ ବୈଷ୍ଣବଙ୍କ ମଠ ଅଛି । ଯାତ୍ରୀଙ୍କ ପାଇଁ ଗୋଟିଏ ଧର୍ମଶାଳା ଅଛି । ମାଘମାସରେ ପନ୍ଦର ଦିନ ପର୍ଯ୍ୟନ୍ତ ବିଶେଷ ଯାତ୍ରା ହୁଏ । ବହୁତ କାରବାର ହୁଏ । ନରସିଂହପୁରର ପୂର୍ବ ଦେୱାନ ଶ୍ରୀଯୁକ୍ତ ନଦୀତୀରରେ ପଥର ବନ୍ଧ ଓ ବୁରୁଜ, ପଥର ସୋପାନ କରାଇ ଦେବାରୁ ସ୍ଥାନଟି ସୁଦୃଢ଼ ହୋଇଅଛି । ଶଙ୍ଖ ଓ କୋଏଲି ନଦୀର ମଧ୍ୟସ୍ଥଳରୁ ନାଗପଟ୍ଟଣକୁ ଗୋଟିଏ ସଡ଼କ ଅଛି । ଏଠାରୁ ତାହା ଦେଢ଼ କ୍ରୋଶ ପଥ ଅଟେ ।



## ପ୍ରାଚୀନ ସମ୍ବଲପୁର ଓ ଆର୍ଯ୍ୟୋତର ସଂସ୍କୃତି

**ସୁ**ବର୍ଣ୍ଣଭୂମି ସମ୍ବଲପୁର ଦକ୍ଷିଣାପଥ ବା ଦାକ୍ଷିଣାତ୍ୟର ଅନ୍ତର୍ଗତ । ମୋଟ ଜନସଂଖ୍ୟାର ଶତକଡ଼ା ୪୦ ଭାଗ ଆଦିମ ଅଧିବାସୀ । ଏମାନଙ୍କ ମଧ୍ୟରେ ଶବର (ସହରା ବା ସଉରା), କନ୍ଧ, ଗଣ୍ଡ, ବିଞ୍ଝାଲ, ଭୂୟାଁ (ଭୁଏଁନା), କୋହ୍ଲ, କିଶାଣ, କୋଡ଼ା, ଖଡ଼ିଆ, ଓରାଁ, ମୁଣ୍ଡା ଆଦି ପ୍ରଧାନ । ଏହି ଆଦିମ ଅଧିବାସୀମାନେ ଦୁଇଦଳରେ

ସମ୍ବଲପୁର କୋଶଳର ଆଦିବାସୀମାନେ ପ୍ରଥିଅନ୍ତେ ଜଙ୍ଗଲ ପରିଷ୍କାର କରି ଗ୍ରାମମାନ ବସାଇ ଥିଲେ ଏବଂ କୃଷିଭୂମି ତିଆରି କରିଥିଲେ । ଆଦିବାସୀ ସର୍ଦ୍ଦାର ବା ଦଳପତି ନିଜ ଅଧିକୃତ ଭୂଖଣ୍ଡରେ ମାଟିରେ ଗୋଟିଏ ଗୋଟିଏ ଦୁର୍ଗ ତୋଳୁଥିଲେ । ଦୁର୍ଗ ଚତୁର୍ଦ୍ଦିଗରେ ପରିଖା, ଉଚ୍ଚ ପ୍ରାଚୀର ଓ ବଂଶଗୁଳ୍ମ ବୃକ୍ଷଲତା ବେଷ୍ଟନ କରି ରହୁଥିଲା । ଏ ସମସ୍ତ ଦୁର୍ଗର ଭଗ୍ନାବଶେଷଗୁଡ଼ିକ ସ୍ଥାନେ

# ସମ୍ବଲପୁର ଅଂଚଳର
# ଐତିହ୍ୟ ଓ ସାଂସ୍କୃତିକ ବୈଶିଷ୍ଟ୍ୟ

## (ଇତିହାସ ଓ କିମ୍ବଦନ୍ତୀରୁ ସଂଗୃହୀତ)

ଶ୍ରୀ ବୀରବର ଦାଶ
ଶ୍ରୀ ବାଲଗୋପାଳ ପୁରୋହିତ

ବିଭକ୍ତ । କୋହ୍ଲ, କିଶାଣ, କୋଡ଼ା, ମୁଣ୍ଡା, ଓରାଂ ଆଦି କୋହ୍ଲ ବା ମୁଣ୍ଡାବଂଶୀୟ ଏବଂ ଶବର, ଭୂୟାଁ, ଗଣ୍ଡ, କନ୍ଧ, ବିଞ୍ଝାଲ, ଖଡ଼ିଆ ଆଦି ଦ୍ରାବିଡବଂଶୀୟ । ବେଦରେ ଓ ବ୍ରାହ୍ମଣରେ ଦ୍ରାବିଡମାନଙ୍କୁ ସାମୁହିକଭାବରେ ଶବର ନାମରେ ବର୍ଣ୍ଣନା କରାଯାଇଅଛି । ଆର୍ଯ୍ୟମାନଙ୍କ ଦ୍ୱାରା ବିତାଡ଼ିତ ହେବାପରେ ଉତ୍ତର ଭାରତରୁ ଛତିଶଗଡ଼ବାଟେ ଦ୍ରାବିଡମାନେ ସମ୍ବଲପୁର ଅଂଚଳରେ ପ୍ରବେଶ କରିଥିଲେ । ବିଭିନ୍ନ ଅଂଚଳରେ ବସତି ସ୍ଥାପନ କରିବା ପରେ ଶବରମାନଙ୍କର ବିଭିନ୍ନ ଦଳ ଭିନ୍ନଭିନ୍ନ ନାମରେ କଥିତ ହୋଇ ଅଛନ୍ତି । ଜେନେରଲ କନିଂହାମ କହନ୍ତି, ଶବରଇ ବା ଶବର ଜାତି ସମ୍ବଲପୁରର ଆଦିମ ଅଧିବାସୀ ଏବଂ ଆଧୁନିକ ସହରମାନଙ୍କର ପୂର୍ବପୁରୁଷ । ଶବର (ସହରା) ଓ ମୁଣ୍ଡାମାନେ ସମ୍ବଲପୁରର ଏବେମଧ୍ୟ ଏକ ପ୍ରଧାନ ଅଧିବାସୀ ହୋଇ ରହିଅଛନ୍ତି । (୧)

ସ୍ଥାନେ ଏପର୍ଯ୍ୟନ୍ତ ରହିଥିବାର ଦେଖାଯାଏ । (ବରଗଡ଼ ଓ ତନ୍ନିକଟବର୍ତ୍ତୀ ନୂଆଗଡ଼ ଏହାର ମାତ୍ର ଦୃଷ୍ଟାନ୍ତ) । ସମ୍ବଲପୁର ବରଗଡ଼ ଅଞ୍ଚଳରେ ସହରମାନେ, ପାଟଣା-ତୋଷା-ସମ୍ବର-ଖଡ଼ିଆଲ-ବିନ୍ଦ୍ରାନୂଆଗଡ଼ ଅଞ୍ଚଳରେ ବିଞ୍ଝାଲମାନେ, ରାଜପୁର-ବଣାଇ-ବାମଣ୍ଡା ଅଞ୍ଚଳରେ ଭୂୟାଁ ଓ କିଶାଣମାନେ ଏବଂ ସୋନପୁର-ବୌଦ-ଆଠମଲ୍ଲିକ ଅଞ୍ଚଳରେ କନ୍ଧମାନେ ପ୍ରାଧାନ୍ୟ ଲାଭ କରିଥିଲେ ।

ଏମାନଙ୍କ ମଧ୍ୟରେ ଗଣତାନ୍ତ୍ରିକ ଶାସନ ପଦ୍ଧତି ପ୍ରଚଳିତ ଥିଲା । (୨) କେତେକ ଗୋଷ୍ଠୀ ମିଶି ଗୋଟିଏ ସଂଘ ବା ମଣ୍ଡଳ ଗଠନ କରୁଥିଲେ । ମଣ୍ଡଳେଶ୍ୱର ମଣ୍ଡଳର ଅଧିପତି ଥିଲେ । ଏହି ମଣ୍ଡଳେଶ୍ୱରମାନଙ୍କୁ ରାଣକ କୁହାଯାଉଥିଲା । ମହାମଣ୍ଡଳେଶ୍ୱରମାନେ ରାଜାମାନଙ୍କ ଉଚ୍ଚ ସମର୍ଥୀୟ ଓ ପ୍ରତିନିଧି ଥିଲେ । ମଣ୍ଡଳ

(୧) 'ସମ୍ବଲପୁର ଇତିହାସ'—୰ଶିବ ପ୍ରସାଦ ଦାଶ—ପୃ ୧୫୭ ।
(୨) 'ସଂକ୍ଷିପ୍ତ କୋଶଳ ଇତିହାସ'—ଶ୍ରୀ ରମଚନ୍ଦ୍ର ମଲ୍ଲିକ—ପୃ ୬୬-୬୮

ଅନ୍ତର୍ଗତ ଗଡ ବା ଜମିଦାରୀ, ଗୋଟିଏ ଗୋଟିଏ ମଣ୍ଡଳିକର ଅଧୀନରେ ରହୁଥିଲା । ଦୁର୍ଗର ଚତୁର୍ଦ୍ଦିଗରେ ଏକ କ୍ଷୁଦ୍ର ଭୂମିଖଣ୍ଡ ମଣ୍ଡଳିକଙ୍କ ଅଧୀନ ଅଞ୍ଚଳ ଥିଲା । ଅଞ୍ଚଳର କେତେକ ଗ୍ରାମରେ ଗୋଷ୍ଠୀଭୁକ୍ତ ପ୍ରଜାକୁଳ ବାସ କରି ରହୁଥିଲେ । ପ୍ରତି ଗ୍ରାମରେ ଜଣେ ଖେଗୀ ବା ନାୟକ ଗ୍ରାମ ଶାସନର ଦାୟିତ୍ୱ ନେଉଥିଲେ । ଆଦିମ ଗୋଷ୍ଠୀ ସମାଜଠାରୁ ପ୍ରଚଳିତ ଶାସନ ସଂସ୍ଥା ଅଳ୍ପ ବହୁତ ବିକଶିତ ହୋଇ ସମ୍ବଲପୁର-କୋଶଳଖଣ୍ଡରେ ବରାବର ଚଳିଆସିଛି । ସୋମଗୁପ୍ତ ରାଜବଂଶର ରାଜତ୍ୱକାଳ ପର୍ଯ୍ୟନ୍ତ (ଖ୍ରୀଷ୍ଟୀୟ ନବମ ଶତାବ୍ଦୀ) । ସମ୍ବଲପୁର କୋଶଳରେ ଏ ପ୍ରକାର ପ୍ରଚଳିତ ଗଣତନ୍ତ୍ର ଶାସନର ଉଚ୍ଛେଦ ସାଧନ କରି ରମେଚନ୍ଦ୍ର ଦେବ ବା ରମାଇଦେବ ପାଣ୍ଡଳାମଣ୍ଡଳର ରଣକ କ୍ଷମତା ହସ୍ତକୁ ନେଲେ ଏବଂ ସେଠାରେ ରାଜତନ୍ତ୍ର ପ୍ରତିଷ୍ଠା କଲେ । (୩) ସେ ଗୋଟିଏ ମଣ୍ଡଳକୁ କ୍ରମେ ବାହୁବଳରେ ଏକ ରାଜ୍ୟରେ ପରିଣତ କଲେ । ଚତୁର୍ଦ୍ଦିଗର ଅଠରଗୋଟି ଗଡ ଜୟ କରି ପାଟଣା ରାଜ୍ୟ ଗଠନ କଲେ । କୋଶଳରେ ଲୋକଶାସନ ବା ଗଣତନ୍ତ୍ର ଶାସନର ସମାଧି ହେଲା ।

ଐତରେୟ ବ୍ରାହ୍ମଣର ପ୍ରଥମ ଅଧ୍ୟାୟ ୪୮୩ ଶ୍ଳୋକରେ ପ୍ରାଚୀନ ଭାରତରେ ବିଶେଷ ପ୍ରତିପତ୍ତି ଲାଭ କରିଥିବା ଆଦିବାସୀ ଗୋଷ୍ଠୀଙ୍କୁ 'ଦୁର୍ଦ୍ଦାନ୍ତ ଶବର' ଜାତି ବୋଲି ବର୍ଣ୍ଣନା କରାଯାଇଅଛି । ଶବର ଜାତି 'ଶବରୀ ବିଦ୍ୟା' ବା ଡାଆଣୀ ବିଦ୍ୟାରେ ଧୁରନ୍ଧର ଥିଲେ । ଅଥର୍ବ ବେଦ ପ୍ରଭୃତି ଗ୍ରନ୍ଥରେ ଏହାର ଉଲ୍ଲେଖ ଦେଖାଯାଏ । ପାଟଣାରେ ଏହାର ସମଧିକ ଆଲୋଚନା ରହିଥିବାରୁ ସେ ସମୟରେ ପାଟଣା ଗଡକୁ "କୁଆଁରୀପାଟଣା" (ଯାଦୁ-ପାଟଣା) ବୋଲି କୁହାଯାଇଥିବା ୰ଚୈତନ୍ୟ ଦାସଙ୍କ ନିର୍ଗୁଣ ମାହାତ୍ମ୍ୟରେ ଉଲ୍ଲେଖ ରହିଛି । ଗଡର ଏହି ନାମ ସେଠାରେ ବାସ କରୁଥିବା ସାତୋଟି ତାନ୍ତ୍ରିକା କୁମାରୀଙ୍କ ନାମାନୁସାରେ ହୋଇଥିଲା । ସେହି ସପ୍ତ କୁମାରୀଙ୍କ ନାମ ଥିଲା, ଗାଙ୍ଗୀ ଗଉଡୁଣୀ, ଶୁଆ ତେଲୁଣୀ, ଷାନ (ମଦନା) ଦେଇ ମାଳୁଣୀ, ନେତାଇ ଧୋବଣୀ, ହୁହୁକୁଟି ତମୋଲୁଣୀ ଏବଂ ପତ୍ରପିନ୍ଧି ସହରୁଣୀ । ଏମାନଙ୍କ ଅଦ୍ଭୁତ ତାନ୍ତ୍ରିକ ଶକ୍ତି ସମ୍ବନ୍ଧରେ ଏପର୍ଯ୍ୟନ୍ତ ଲୋକ ମୁଖରେ ଏ ଅଞ୍ଚଳରେ ବହୁ କିମ୍ବଦନ୍ତୀ ପ୍ରଚଳିତ ଅଛି । ଏଇ କୁମାରୀଗଣ ପଶ୍ଚିମ ଓଡ଼ିଶାରେ ନବମ ଶତାବ୍ଦୀର ସହଜ-ଯାନ ବୌଦ୍ଧ ଶାଖାର ଉଦ୍‌ଘାଟିକା 'ଲକ୍ଷ୍ମୀଙ୍କରା'ଙ୍କ ଅନୁସାରିଣୀ ଥିଲେ ବୋଲି କେତେକ ଐତିହାସିକ ନିରୂପିତ କରୁଅଛନ୍ତି ।

ହୁଏନ୍‌ସାଂ ଓ ତତ୍‌ପୂର୍ବବର୍ତ୍ତୀ ପରିବ୍ରାଜକଗଣ ତଥା ପାଶ୍ଚାତ୍ୟ ଲେଖକ ମୋଟ ପ୍ରଭୃତି ଲେଖକଗଣ ଆଦିବାସୀମାନଙ୍କର ସଭ୍ୟତା ଓ ସଂସ୍କୃତିର ବିଶେଷ ପ୍ରଶଂସା କରିଯାଇଅଛନ୍ତି । ଗଣ୍ଡମାନେ ସମ୍ବଲପୁରରେ ଅତି ପରାକ୍ରମୀ ଥିଲେ । ସେମାନଙ୍କ ମଧ୍ୟରେ ଗୋଷ୍ଠୀ ଶାସନ ଓ ଦଳପତି ପ୍ରଥା ଥିଲା । ସମ୍ବଲପୁର-ଖଣ୍ଡର ୧୭ ଜଣ ଜମିଦାରଙ୍କ ମଧ୍ୟରୁ ୧୦ ଜଣ ଗଣ୍ଡ ଓ ୭ ଜଣ ବିଞ୍ଝାଲ । ଗଣ୍ଡମାନଙ୍କର ପୃଥକ୍ ଭାଷା ଅଛି, କିନ୍ତୁ ସେମାନେ କ୍ରମେ ଆର୍ଯ୍ୟ ଭାଷା ବ୍ୟବହାର କରୁଛନ୍ତି । ଆର୍ଯ୍ୟମାନେ ମଧ୍ୟ ସେମାନଙ୍କର ପର୍ବପର୍ବାଣି, ରୀତିନୀତି, ଆଚାର ବ୍ୟବହାର ଓ ଭାଷାକୁ ନିଜର କରିନେଇ ସେମାନଙ୍କୁ ଆର୍ଯ୍ୟ ପ୍ରଭାବରେ ପ୍ରଭାବିତ କରିଅଛନ୍ତି । ବୁଢ଼ା ରଜା, ବୁଢ଼ା ଲିଙ୍ଗ (ବୁଢ଼ା ଶିବ) ପ୍ରଭୃତି ଗଣ୍ଡପଣ୍ଡାରୁ ଗୃହୀତ ଦେବତା ।

ବୋଡ଼ାସମ୍ବର ରାଜା ସ୍ୱର୍ଗତ ସୁରେନ୍ଦ୍ର ସିଂହ ବରିହାଙ୍କ ପ୍ରକାଶିତ ଏବଂ ୰ଲକ୍ଷ୍ମଣ ମିଶ୍ରଙ୍କ ପ୍ରଣୀତ "ନୃସିଂହ ମାହାତ୍ମ୍ୟ" ଗ୍ରନ୍ଥର କିମ୍ବଦନ୍ତୀମୂଳକ ପୌରାଣିକ ଉପାଖ୍ୟାନ ମାର୍ଜାର-ମୂଷିକ ଦୈତ୍ୟ ଯୁଦ୍ଧ ଆର୍ଯ୍ୟ-ଆଦିମ ଯୁଦ୍ଧର ଏକ ଉଲ୍ଲେଖ ମାତ୍ର । ଆର୍ଯ୍ୟମାନେ ସମ୍ବଲପୁର ଅଞ୍ଚଳରେ ଯେତେବେଳେ ପ୍ରଥମେ ବସତି ସ୍ଥାପନ କଲେ, ଆଦିମ-ମାନଙ୍କ ସଙ୍ଗେ ସେମାନଙ୍କର ବିବାଦ ହୋଇଥିଲା । ଆଦିମମାନେ ଆର୍ଯ୍ୟମାନଙ୍କ ସ୍ତ୍ରୀ ଅପହରଣ କରୁଥିଲେ ଏବଂ ହୁଏତ ସ୍ୱାମୀମାନଙ୍କୁ ବଧ କରୁଥିଲେ । ଆର୍ଯ୍ୟମାନେ ଆଦିମମାନଙ୍କୁ ଦମନ କରି ଅଥବା ଯୁଦ୍ଧରେ ପରାସ୍ତ କରି ଅଞ୍ଚଳମାନ ନିଜ ଅଧିକାରକୁ ଆଣିଲେ । ଆଦିମ ନେତା-ମାନେ ଅନ୍ୟତ୍ର ପଳାୟନ କଲେ । ମୂଷିକ ଦୈତ୍ୟ ସମ୍ଭବତଃ ଜଣେ ଆଦିମ ନେତା ଥିଲେ । 'ନୃସିଂହନାଥ'ର ଉଗ୍ରଲିଙ୍ଗକୁ ଆଦିମମାନେ ପୂଜା କରୁଥିଲେ । ଲିଙ୍ଗ ପୂଜା ସେମାନଙ୍କର ଥିଲା । ଆର୍ଯ୍ୟମାନେ ନୃସିଂହ ପୂଜା ଗ୍ରହଣ କରିଥିଲେ ।

---

*(୩) ମଣ୍ଡଳେଶ୍ୱରମାନେ ବାସ୍ତବତଃ ମଣ୍ଡଳର ରଣକ ବା ରାଜା ଥିଲେ । ସେମାନଙ୍କର ମଣ୍ଡଳ ମଧ୍ୟରେ ଅସୀମ କ୍ଷମତା ଓ ପ୍ରଭାବ ଥିଲା । ରାଷ୍ଟ୍ରର ପ୍ରଧାନ ଅଧିପତି ସେମାନଙ୍କ ଉପରେ କଠୋର ଶାସନ ପ୍ରବର୍ତ୍ତନ କରିବାକୁ ନିଜ ଦୁର୍ବଳତା ପ୍ରକାଶ କରୁଥିଲେ । ଏଥିର ଦୃଷ୍ଟାନ୍ତ ସୋମଗୁପ୍ତ ଜନମେଜୟ ଓ ଭବଦେବଙ୍କ ରାଜତ୍ୱକାଳୀନ କେତେକ ତାମ୍ର ଶାସନରୁ ପ୍ରମାଣିତ ହୁଏ । 'ସମ୍ବଲପୁର ଇତିହାସ'—ପୃ ୧୬୭-୧୬୮ ।

## ପ୍ରାଗୈତିହାସିକ ଯୁଗର ସଭ୍ୟତାଗୁଡ଼ିକ ଅବଶେଷ: ପ୍ରାଚୀନ ସଂସ୍କୃତିର ସଙ୍କେତ

ସମ୍ବଲପୁର ଜିଲ୍ଲାର ବାରପାଲି ରେଳ ଷ୍ଟେସନଠାରୁ ୧୫ ମାଇଲ ଦୂରରେ ପଶ୍ଚିମ ଦିଗରେ ନିବିଡ଼ ଜଙ୍ଗଲ ମଧ୍ୟରେ ଅବସ୍ଥିତ, 'ବିକ୍ରମ ଅଧିତ୍ୟକା' । ବିକ୍ରମ ଅଧିତ୍ୟକାର ଏକ ପାହାଡ଼ ଗୁମ୍ଫାର ନାମ 'ବିକ୍ରମଖୋଲ' । ସେହି ଗୁମ୍ଫାରେ ୩୨ ଫୁଟ ଦୀର୍ଘ ଓ ୭ ଫୁଟ ପ୍ରସ୍ଥ ବିଶିଷ୍ଟ ଏକ ଶିଳାଲିପି ଅଛି । ବିଶେଷଜ୍ଞମାନେ କହନ୍ତି, ଖ୍ରୀଷ୍ଟ ଜନ୍ମର ପୂର୍ବ ତିନି ହଜାର ବର୍ଷ ପୂର୍ବେ 'ବିକ୍ରମଖୋଲ' ଶିଳାଲିପି ଖୋଦିତ ହୋଇଥିଲା ଏବଂ ଏହି ଲିପି ସୈନ୍ଧବ-ଲିପି ଓ ବ୍ରାହ୍ମୀଲିପିର ଅନ୍ତର୍ବର୍ତ୍ତୀ ବା ଯୋଗବାହ (୪) । ପ୍ରାଚୀନ କୋଶଳଖଣ୍ଡରେ ଅସଂଖ୍ୟ ପାର୍ବତ୍ୟ ଦୁର୍ଗ ଥିଲା । ଶତ୍ରୁର ସହଜ ଦମନ ଓ ଶତ୍ରୁ ହସ୍ତରୁ ଆତ୍ମରକ୍ଷା ସକାଶେ ସେହି ଦୁର୍ଗମାନ ଚତୁର୍ଦ୍ଦିଗରେ ପର୍ବତ ପରିବେଷ୍ଟିତ ଅଧିତ୍ୟକାମାନଙ୍କରେ ନିର୍ମିତ ହୋଇଥିଲା । ଅଧିତ୍ୟକାର ପ୍ରବେଶ ପଥ ବା ଘାଟମାନଙ୍କରେ ସୈନ୍ୟ ଛାଉଣୀ ନିବେଶିତ ରହୁଥିଲା । ସମ୍ଭବତଃ ବିକ୍ରମଖୋଲ ଏହିପରି ଏକ ଦୁର୍ଗ ରାଜଧାନୀ ଥିଲା । 'ରାଜାପଡ଼ା' ଜାଗାର ସୂଚନା ଦିଏ । ସେଠାରେ ଏକ ଅତି ପ୍ରାଚୀନ ରାଜବଂଶ ରାଜତ୍ୱ କରୁଥିଲେ । ଏହି ରାଜ୍ୟରେ କେତେକ ବର୍ଗାକାର ଓ ଆୟତାକାର ପ୍ରସ୍ତର କୁଣ୍ଡ ତଥା 'ଉଷାକୋଠୀ' ନାମକ ଏକ ଗୁମ୍ଫା ରହିଛି । ଏହି ଗୁମ୍ଫା ଭିତରେ କେତେକ ଶିଳାଲିପି, ଶିଳାଚିତ୍ର ଓ ହସ୍ତାଙ୍କ ଦେଖାଯାଏ । 'କନ୍ଦର' ଶବ୍ଦର ଅପଭ୍ରଂଶ 'ଖୋଲ' । ସୋମଗୁପ୍ତ ବଂଶର ତାମ୍ର ଶାସନରେ ଥିବା 'ସୁବାପଲ୍ଲୀ କନ୍ଦର'ର ଆଧୁନିକ ନାମ "ଡେବ୍ରୀ-ଖୋଲ" ।

ବିକ୍ରମ ଖୋଲର ପ୍ରାଗ୍ ବ୍ରାହ୍ମୀଲିପି ସୂଚନା ଦିଏ ଯେ ପ୍ରାୟ ପାଞ୍ଚ ଛଅ ହଜାର ବର୍ଷ ପୂର୍ବେ ଏକ ସଭ୍ୟ ଓ ଉନ୍ନତ ଜାତି ସମ୍ବଲପୁରରେ ବାସ କରୁଥିଲେ । ସେମାନେ ଜାଣିଥିଲେ, ଦୁର୍ଗ ନିର୍ମାଣ, ଯୁଦ୍ଧବିଦ୍ୟା ଓ ପ୍ରସ୍ତର ଖୋଦନ ସେମାନଙ୍କର ଥିଲା ଲିପି ଓ ଭାଷା ଏବଂ ସେମାନେ ଥିଲେ ସୈନ୍ଧବ ଅବବାହିକାର ସଭ୍ୟ ଜାତିର ବଂଶଧର । ମଧ୍ୟପ୍ରଦେଶ ଅନ୍ତର୍ଗତ ରାୟଗଡ଼ ନିକଟବର୍ତ୍ତୀ 'ସିଂହନପୁର' ଶିଳାଚିତ୍ର ପ୍ରାଚୀନତମ ସଂସ୍କୃତିର ଚିହ୍ନ (୫) ।

## ଆର୍ଯ୍ୟ ସଂସ୍କୃତିର ଅନୁପ୍ରବେଶ

ହରିବଂଶ ପ୍ରଥମ ଅଧ୍ୟାୟରେ ବର୍ଣ୍ଣିତ ପୌରାଣିକ ଉପାଖ୍ୟାନ ମତରେ ବୈବସ୍ୱତ ମନୁଙ୍କ କନ୍ୟା ଇଳା । ଇଳା ଚନ୍ଦ୍ରଙ୍କ ପୁତ୍ର ବୁଧଙ୍କୁ ବିବାହ କରିଥିଲେ । ତାଙ୍କର ଋଷିପୁତ୍ର, ପୁରୁରବା, ଗୟ, ଉତ୍କଳ ଓ ବିନିତାଶ୍ୱ । ଚନ୍ଦ୍ର ଓ ବୁଧଙ୍କଠାରୁ ପ୍ରାପ୍ତକ୍ରମେ ପୁରୁରବାଙ୍କ ବଂଶଧରମାନେ ସୋମବଂଶ ବା ଚନ୍ଦ୍ରବଂଶ ନାମରେ ବିଦିତ ହୋଇଥିଲେ । ସୋମବଂଶୀୟମାନେ କାଶୀ କୋଶଳରେ ରାଜତ୍ୱ କରୁଥିଲେ । ଗୟ, ଉତ୍କଳ ଓ ବିନୀତାଶ୍ୱ ମାତାଙ୍କ ନାମ ଅନୁସାରେ ଐଳବଂଶ ନାମରେ ବିଦିତ ହେଲେ । ଗୟ ଗୟାଖଣ୍ଡରେ, ଉତ୍କଳ ଉତ୍କଳଖଣ୍ଡରେ, ବିନୀତାଶ୍ୱ ଦକ୍ଷିଣ କୋଶଳରେ ରାଜତ୍ୱ କଲେ । ବିନୀତାଶ୍ୱଙ୍କ ରାଜଧାନୀର

---

(୪) K. P. Jayaswal କହନ୍ତି :—

The characters in Vikramkhol inscription belong to a period intermediary between the script of Mahenzodaro and Brahmi. Some letters still retain their original or secondary Mohenzodaro forms and some have assumed the Brahmi or proto-brahmi forms. This proves the origin of Brahmi to be Indian and throws a flood of light on the history of writing, as from Brahmi the Phoenician and European scripts are derived."

(ସମ୍ବଲପୁର ଇତିହାସ—ଶିବ ପ୍ରସାଦ ଦାଶ—ପୃ ୧୭)

(୫) A few Pre-historic Relics and the Rockpaintings of Sinhapur—A. N. Dutta, M.A., LL. B.—Mahakosala Historical Societie's Papers, Vol. I-P.P. 9-10 —ଏହି ଶିଳା ଚିତ୍ରଗୁଡ଼ିକ 'ପ୍ରାଚୀନ ପ୍ରସ୍ତର ଯୁଗ'ର (Palaeolithic) ମୂର୍ତ୍ତି ଏବଂ ହରପ୍ପା ମହେଞ୍ଜୋଦାରୋ ସଭ୍ୟତା ଓ ପ୍ରାଚୀନ ମେସୋପଟେମିଆ ସଭ୍ୟତା ସଙ୍ଗେ ସମ୍ପୃକ୍ତ । କେହି କେହି ବିଦ୍ୱାନମାନେ କହନ୍ତି ଯେ ଏହି ଶିଳାଚିତ୍ର ପାଞ୍ଚ ହଜାର ବର୍ଷ ପ୍ରାଚୀନ । ଏହି ଅନୁମାନ ଯଦି ଅବିସମ୍ବାଦ୍ୟ ହୁଏ, ତେବେ ଅର୍ଦ୍ଧଲକ୍ଷ ବର୍ଷ ପୂର୍ବେ ସମ୍ବଲପୁର ଅଞ୍ଚଳରେ ସଭ୍ୟ ମାନବ ଜାତି ବାସ କରୁଥିଲେ । ସେହିମାନେ ଶିଳା ଦେହରେ ସୁନ୍ଦର ମନୁଷ୍ୟ ଓ ପ୍ରାଣୀର ଚିତ୍ର ଅଙ୍କି ପାରୁଥିଲେ ଏବଂ ସେହି ଚିତ୍ର ଆଜି ପର୍ଯ୍ୟନ୍ତ ବିଦ୍ୟମାନ ରହିଛି ।

(ସମ୍ବଲପୁର ଇତିହାସ—ଶିବ ପ୍ରସାଦ ଦାଶ—ପୃ ୧୭)

ନାମ ଶିନୋଡାପୁର (ଆଧୁନିକ ବିନିକା ?) । ତାଙ୍କ ବଂଶଧର କେତୁଭଦ୍ର ଉତ୍କଳ ଓ କୋଶଳ ମିଶାଇ 'କଳିଙ୍ଗ' ସ୍ଥାପନ କରିଥିଲେ । ଏହି ଉପାଖ୍ୟାନରୁ ଜଣାଯାଏ ଯେ ଆର୍ଯ୍ୟମାନେ କୋଶଳରୁ କଳିଙ୍ଗକୁ ପ୍ରସାର ଲାଭ କରିଥିଲେ ଏବଂ କୋଶଳ ସ୍ଥାପନ କଳିଙ୍ଗ ସ୍ଥାପନ ଅପେକ୍ଷା ପ୍ରାଚୀନତର । ଐଳ ବା ଐରବଂଶ ପ୍ରଥମେ ସ୍ଥାପନ କରିଥିଲେ କୋଶଳ, ତା'ପରେ ସ୍ଥାପନ କଲେ ଉତ୍କଳ ଏବଂ ଉତ୍କଳ—କୋଶଳ ଦୁଇ ଦେଶ ମିଶି ହେଲା କଳିଙ୍ଗ । କଳିଙ୍ଗର ଐଳ ବା ଐରବଂଶ ଓ ଖାରବେଳ ଥିଲେ ସୋମ ବା ଚନ୍ଦ୍ରବଂଶୀୟ ରାଜା ।

ବିକ୍ରମଖୋଲ-ଉଲ୍ଲାପଗଡ଼ ସିଂହାନପୁର ଶିଳାଲିପି ଚିତ୍ର-ଗୁଡ଼ିକ ପ୍ରାଚୀନତମ ସଂସ୍କୃତିର ଅବଶେଷ । ମଧ୍ୟବର୍ତ୍ତୀ-କାଳୀନ କୌଣସି ଇତିହାସ ମିଳେ ନାହିଁ—ତା'ପରେ ବିଦର୍ଭର ଶିଶୁପାଳ ଚେଦିଙ୍କ ବିବରଣୀ ମିଳେ । ଶିଶୁପାଳ ବିଦର୍ଭ ବା ମହାକୋଶଳର ରାଜା ଥିଲେ । ତାଙ୍କ ରାଜଧାନୀ ଶୁକ୍ତିପୁର ଶୁକ୍ତିମାନ ପର୍ବତ ନିକଟରେ ଶୁକ୍ତିମତୀ (ସୁକତେଲ) ନଦୀ କୂଳରେ ଥିଲା । ବାୟୁପୁରାଣରେ କୋଶଳ ରାଜବଂଶ 'ମେଘବଂଶ' ନାମରେ କଥିତ ହୋଇ ଅଛି । (୨) ବିଦର୍ଭର ଚେଦି ରାଜବଂଶ ମେଘଶାଖା କୋଶଳ ସ୍ଥାପନ କରିବା ପରେ ମେଘବଂଶର ଏକ ଶାଖା କଳିଙ୍ଗକୁ ଅଗ୍ରସର ହୋଇ କଳିଙ୍ଗ ରାଜ୍ୟ ସ୍ଥାପନ କରି-ଥିଲେ । କୋଶଳର ମେଘବଂଶ ଓ କଳିଙ୍ଗର ମେଘବାହନ ବଂଶ ଏହିପରି କୋଶଳ ଓ କଳିଙ୍ଗ ଉଭୟ ଦେଶ ସ୍ଥାପନ କରିଥିଲେ । ସେଥିପାଇଁ ବିଦର୍ଭ ରାଜବଂଶର ନାମ ଚେଦି ଥିବା ସ୍ଥଳେ କଳିଙ୍ଗ ରାଜବଂଶର ନାମ ଚେତି ରହିଥିଲା । କାଳକ୍ରମେ କଳିଙ୍ଗ ରାଜବଂଶ ପ୍ରାଧାନ୍ୟ ଓ ପରାକ୍ରମ ଅର୍ଜ୍ଜନ କରିଥିଲେ । କଳିଙ୍ଗ ଯୁଦ୍ଧ ପରେ କଳିଙ୍ଗର ମହାମେଘ-ବାହନ ବା ଚେତି ରାଜା କୋଶଳରେ ଆଶ୍ରୟ ନେଇଥିଲେ ଏବଂ ଅଶୋକଙ୍କ ବିରତି ପରେ ପୁଣି କଳିଙ୍ଗକୁ ଫେରି ସ୍ୱାଧୀନତା ପୁନରୁଦ୍ଧାର କରିଥିଲେ ।

**ଜୈନ ଓ ବୌଦ୍ଧ ସଂସ୍କୃତି**

ଶିତରେୟ ବ୍ରାହ୍ମଣ ଓ ମହାଭାରତର ରଚନା କାଳ ମଧ୍ୟରେ କୋଶଳ ବା ଦକ୍ଷିଣ କୋଶଳର ନାମକରଣ ହୋଇଥିଲା । ଗଙ୍ଗାଠାରୁ ଓଡ୍ରା (୩) ପର୍ଯ୍ୟନ୍ତ ଭୂଖଣ୍ଡକୁ ଦକ୍ଷିଣ କୋଶଳ କୁହାଯାଉଥିଲା । ସାର୍ ଏ. କନିଂହାମ କହନ୍ତି ଯେ, ଖ୍ରୀଷ୍ଟ ୩୧୯ ଅବ୍ଦରୁ ମହାନଦୀ କୂଳବର୍ତ୍ତୀ ଶ୍ରୀପୁର ନଗରରେ (ପାଣ୍ଡବ) ସୋମବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । ୧୯୫୫-୫୬ ଖ୍ରୀ:ରୁ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗର ଚେଷ୍ଟାରେ ଏଠି ମୃତ୍ତିକା ଗର୍ଭରୁ ପ୍ରାଚୀନ ଶ୍ରୀପୁର ରାଜଧାନୀ ଉଦ୍ଧାର କରାଯାଇଅଛି । ସେଠାରେ ୬ ଫୁଟ ଉଚ୍ଚ ଏକ ବୌଦ୍ଧମୂର୍ତ୍ତି, ବୌଦ୍ଧ ମନ୍ଦିର ଓ ମଠ ଉଦ୍ଧାର କରାଯାଇଅଛି । ଉଦ୍ଧାର ମଧ୍ୟରେ ପ୍ରାଚୀନ ଶିଳାଲେଖ, ମୁଦ୍ରା ଓ ଚୀନ୍‌ର ତାମ୍ରମୁଦ୍ରା ଉଲ୍ଲେଖ-ଯୋଗ୍ୟ । ସେହି ପ୍ରାଚୀନ ରାଜଧାନୀର ପ୍ରସିଦ୍ଧି ମୌର୍ଯ୍ୟ-ସମକାଳୀନ ବୋଲି ଅନୁମାନ କରାଯାଉଛି । ସେହି ପ୍ରାଚୀନ ରାଜଧାନୀ ମହାନଦୀର ଗର୍ଭରେ ଭୂପୃଷ୍ଠରେ ପୋତି ହୋଇ ରହିଥିଲା ଏବଂ ମୃତ୍ତିକା ସ୍ତର ଉପରେ ଏକ କ୍ଷୁଦ୍ର ଗ୍ରାମ ସ୍ଥାପିତ ହୋଇଥିଲା । ଏହି ଶ୍ରୀପୁର ଗ୍ରାମର ଦୂରତା ରାୟପୁର ସହରଠାରୁ ୪୦ ମାଇଲ ।

ସମୁଦ୍ରଗୁପ୍ତଙ୍କ ପ୍ରୟାଗସ୍ତମ୍ଭୋଲ୍ଲିଖିତ ମହେନ୍ଦ୍ର ଶ୍ରୀପୁର ରାଜା ଥିଲେ । ଗୁପ୍ତ ରାଜତ୍ୱ କାଳରେ ବୌଦ୍ଧ ଧର୍ମର ପୁନଃରୁଦ୍ଧାର ହୋଇଥିଲା । ସୁତରାଂ ଶ୍ରୀପୁରର ପ୍ରସିଦ୍ଧି ଓ ନିଷ୍କାସିତ ବୌଦ୍ଧମନ୍ଦିର ଓ ବୌଦ୍ଧମଠ ସୂଚନା ଦିଏ ଯେ ଗୁପ୍ତ ରାଜତ୍ୱ ଓ ସୋମଗୁପ୍ତ ବଂଶର ବହୁ ପୂର୍ବେ ପ୍ରାଚୀନ-ତର ରାଜଧାନୀ ଶ୍ରୀପୁର ଭୂଗର୍ଭରେ ପ୍ରୋଥିତ ହୋଇ ସାରିଥିଲା । ସମ୍ରାଟ ଅଶୋକଙ୍କ ସମୟରେ ବୌଦ୍ଧଧର୍ମ ରାଜଧର୍ମରୂପେ ପରିଗଣିତ ହୋଇଥିଲା । ଏହି ଧର୍ମର ଏକ ପରିମାର୍ଜିତ ଚିନ୍ତାଧାରା 'ସର୍ବାସ୍ତିବାଦୀ' ସୋନପୁର ଓ ସମ୍ବଲପୁର ଅଞ୍ଚଳରେ ବହୁଜନାଦୃତ ହୋଇପାରିଥିଲା ।

ବୋଧିସତ୍ତ୍ୱ ନାଗାର୍ଜ୍ଜୁନ ବୌଦ୍ଧଧର୍ମର ମାଧ୍ୟମରେ ଦକ୍ଷିଣ କୋଶଳ (ପଶ୍ଚିମ ଓଡ଼ିଶା)ରେ ତନ୍ତ୍ରବିଦ୍ୟାର ପ୍ରସାର କରିଥିଲେ । ଆନ୍ଧ୍ର ରାଜା ଶାତବାହନ ଏହି ନାଗାର୍ଜ୍ଜୁନଙ୍କର ପରମ ବନ୍ଧୁ ଓ ପୃଷ୍ଠପୋଷକ ଥିଲେ । ପବିତ୍ର ନୃସିଂହନାଥରେ ତାଙ୍କର ବିହାର ପ୍ରତିଷ୍ଠା କରି-ଥିଲେ । ଖ୍ରୀ: ଦ୍ୱିତୀୟ ଶତକରେ 'ପ୍ରଜ୍ଞା ପାରମିତା ଶାସ୍ତ୍ର' ଓ ମୂଳ ମାଧ୍ୟମିକ ଶାସ୍ତ୍ର ଆଦି ରଚିତ ହୋଇଥିଲା । ତାଙ୍କର ପଟ୍ଟଶିଷ୍ୟ ଆର୍ଯ୍ୟଦେବ ପରିମଳ ଗିରିରେ ଅଭୂତ-ପୂର୍ବ ଉନ୍ନତି ସାଧନ କରିଥିଲେ ଓ ସ୍ୱର୍ଣ୍ଣପୁର ଅଞ୍ଚଳରେ

(୨) ମେଘ ବାହନ ନାମକ ଦ୍ୱାବିଂଶତ୍ କଳ୍ପରେ ବିଷ୍ଣୁ ମେଘରୂପ ଧାରଣ କରି ସହସ୍ର ଦିବ୍ୟବର୍ଷ ପର୍ଯ୍ୟନ୍ତ କୃତ୍ତିବାସ ଶିବଙ୍କୁ ବହନ କରିଥିଲେ । ତେଣୁ ବିଷ୍ଣୁଙ୍କୁ "ମେଘ" ଏବଂ ଶିବଙ୍କୁ "ମେଘବାହନ" ବୋଲି କୁହାଯାଏ । କୋଶଳର ଚେଦି ରାଜବଂଶକୁ ବାୟୁପୁରାଣ 'ମେଘବାହନ' ସଂକ୍ଷେପରେ ମେଘ ବୋଲି କହିଅଛି । (ବା. ପୁ. ୨୧ ଅ:)
("ସମ୍ବଲପୁର ଇତିହାସ"—ଶିବ ପ୍ରସାଦ ଦାଶ—ପୃଷ୍ଠା ୭୧)

(୩) "ସମ୍ବଲପୁର ଇତିହାସ" ପୃଷ୍ଠା ୨୬-୨୭ ।

ମହାଯାନ ବୌଦ୍ଧଧର୍ମର ପ୍ରବର୍ତ୍ତକ ଅନେକ ଆଶ୍ରମ ମଧ୍ୟ ସ୍ଥାପନ କରିଥିଲେ । ଯୋଗାଙ୍କର ବିଜ୍ଞାନବାଦପନ୍ଥ: ପାଠୋପାଠ ସୋନପୁର ଓ ସମ୍ବଲପୁର ଅଞ୍ଚଳରେ ତନ୍ତ୍ରଶିକ୍ଷା ଲାଭ କରିଥିବା ପ୍ରସିଦ୍ଧ ବୌଦ୍ଧଧର୍ମ ଗ୍ରନ୍ଥରୁ ଜଣାଯାଏ ।

ପଶ୍ଚିମ ଓଡ଼ିଶାରେ ମହାଯାନ ବୌଦ୍ଧଧର୍ମ ବିଲୁପ୍ତ ହେବା ପୂର୍ବରୁ ସୋନପୁର ଓ ସମ୍ବଲପୁର ଅଞ୍ଚଳରେ ମହାଯାନରୁ ବଜ୍ରଯାନର ସୃଷ୍ଟି ହୋଇଥିଲା । ଦ୍ୱିତୀୟ ତନ୍ତ୍ରଯାନରୁ ସାହିତ୍ୟରୁ ଜଣାପଡେ ସେ ବଜ୍ରଯାନର ଆଦିଭୂମି ଥିଲା ଉଡ୍ଡିୟାନ । ବଜ୍ରଯାନର ପ୍ରବର୍ତ୍ତନ ବୌଦ୍ଧଧର୍ମରେ ଏକ ନୂତନ ଚିନ୍ତାଧାରା ଆନୟନ କରିଥିଲା । ବଜ୍ରଯାନର ତନ୍ତ୍ର ଶ୍ଳୋକ କ୍ରିୟାପଦ୍ଧତି ମୂଳମନ୍ତ୍ର ହେଲା । ମାରଣ, ମୋହନ, ସ୍ତମ୍ଭନ, ବିଦ୍ୱେଷଣ, ଉଚ୍ଚାଟନ ଓ ବଶୀକରଣ ଆଦି ଷଟ୍‌କର୍ମର ଓ ମଦ୍ୟ, ମାଂସ, ମତ୍ସ୍ୟ, ମୁଦ୍ରା ଓ ମୈଥୁନ ଆଦି ପଞ୍ଚମକାର ସେବା ଉକ୍ତ ଧର୍ମରେ ଅଧିକ ସ୍ତରରେ ସ୍ଥାନ ଲାଭ କଲା । ବହୁବିଧ ତାନ୍ତ୍ରିକ ଦେବାଦେବୀଙ୍କ ଉଦ୍ଭଟ କଳ୍ପନା ଏହି ଧର୍ମରେ ସ୍ଥାନ ଲାଭ କଲା । ଯେଉଁ ଦେବଦେବୀମାନେ ସମେଶ୍ୱରୀ, ସୁରେଶ୍ୱରୀ, ମାଉଳି, ଛିନ୍ନମସ୍ତା, ଚାମୁଣ୍ଡା, ଦ୍ୱାଦଶଭୁଜା ଆଦି ନାନା ନାମରେ ଏ ଅଞ୍ଚଳରେ ଗ୍ରାମ ଗ୍ରାମରେ ପ୍ରତିଷ୍ଠିତ ହେଲେ ।

ବଜ୍ରଯାନରୁ ସହଜଯାନର ଉଦ୍ଭବ ହୋଇଥିବା ଜଣାପଡେ । ସମ୍ବଲପୁରର ରାଜା ଇନ୍ଦ୍ରଭୂତି ଉକ୍ତ ଧର୍ମର ପ୍ରବର୍ତ୍ତକ ଥିଲେ । ଉକ୍ତ ଧର୍ମରେ ପଞ୍ଚଧ୍ୟାନୀ ବୁଦ୍ଧ ଓ ଅନେକ ତାନ୍ତ୍ରିକ ଦେବଦେବୀଙ୍କ ପୂଜା ବ୍ୟବସ୍ଥା ରହିଛି । ଇନ୍ଦ୍ରଭୂତି ତାଙ୍କର 'ଜ୍ଞାନସିଦ୍ଧି' ପୁସ୍ତକରେ ବଜ୍ରବରାହୀ ଓ କୁରୁକୁଲ୍ଲାଙ୍କୁ ନିଜର ଉପାସ୍ୟ ଦେବୀ ବୋଲି ପ୍ରକାଶ କରିଛନ୍ତି । ତାଙ୍କ ଭଗିନୀ 'ଲକ୍ଷ୍ମୀଙ୍କରା' ସ୍ୱର୍ଣ୍ଣପୁରର ରାଜା ଜଳେନ୍ଦ୍ରଙ୍କୁ ବିବାହ କରିଥିଲେ । ଭ୍ରାତାଙ୍କ ପାଖରୁ ଧର୍ମଦୀକ୍ଷା ଗ୍ରହଣ କରି ସେ ପରେ 'ସହଜଯାନ' ନାମକ ଏକ ନୂତନ ଧର୍ମ ପ୍ରବର୍ତ୍ତନ କରିଥିଲେ । ମନୁଷ୍ୟର ସହଜ ଭାବ ପ୍ରବୃତ୍ତି ଓ ଗୁଣର ସାଧନା ଏହି ଧର୍ମର ମୁଖ୍ୟ ସୂତ୍ର ଥିଲା । ସେହି ସ୍ୱାଭାବିକ ଗୁଣ ଓ ପ୍ରବୃତ୍ତିର ଅଭିବୃଦ୍ଧି ଓ ସଦ୍ବ୍ୟବହାରରେ ସିଦ୍ଧିଲାଭ ମାନବର ପରମ କର୍ତ୍ତବ୍ୟ ବୋଲି ସେ ପ୍ରଚାର କରିଥିଲେ । ଲକ୍ଷ୍ମୀଙ୍କରାଙ୍କ ଧର୍ମର ମୂଳ ତତ୍ତ୍ୱ ହେଲା, ଶରୀର ମଧ୍ୟରେ ସମସ୍ତ ଦେବଦେବୀ ଅଧିଷ୍ଠିତ । ସେମାନଙ୍କ ସେବାପାଇଁ ଶରୀର ସେବାହିଁ ମୁଖ୍ୟ ଓ ଏହାର ଉପଲବ୍ଧି ନିମିତ୍ତ ନାରୀଶକ୍ତିର ସାହଚର୍ଯ୍ୟ ମଧ୍ୟ ଅତ୍ୟାବଶ୍ୟକ ।

ପଶ୍ଚିମ ଓଡ଼ିଶାରେ ତାନ୍ତ୍ରିକ ଆନ୍ଦୋଳନ ସେ କାଳରୁ ଅଦ୍ୟାବଧି ନାନା ପ୍ରକାରରେ ଚାଲି ଆସିଅଛି । ତନ୍ତ୍ରାଚାର୍ଯ୍ୟ ଦିବ୍ୟସିଂହ ମିଶ୍ର ତାନ୍ତ୍ରିକ ବିଦ୍ୟାପ୍ରବୀଣତା ହେତୁ ପାଟଣା-ପୁର ରାଜାଙ୍କଠାରୁ ଟେମରୀ ଓ ସୁଡୁଙ୍ଗା ନାମକ ଦୁଇଗୋଟି ଗ୍ରାମ ମାଫିବୃତ୍ତି ପାଇଥିଲେ । ତନ୍ତ୍ରବିଶାରଦ ୰ ବିନାୟକ ନନ୍ଦ ଓ ତାଙ୍କ ପୁତ୍ର ୰ ବୃନ୍ଦାବନ ନନ୍ଦ ପାଟଣାର ରାଜା ସୁରପ୍ରତାପଙ୍କ ଦରବାରରେ ପ୍ରତିଷ୍ଠିତ ଥିଲେ । ସେମାନେ ଫୁଲଝରର ରାଜା ଭଗସାୟଙ୍କଠାରୁ ଖଇରଝିଟିକି ଗ୍ରାମ ବୃତ୍ତି ପାଇଥିଲେ । କଳାହାଣ୍ଡି ଦରବାରରେ ବାହିନୀପତି ଆଖ୍ୟାରେ ଜଣେ ତନ୍ତ୍ରବିଶାରଦ ଥିଲେ । ଧମା ନିକଟସ୍ଥ ଉଦେପୁରରେ ଅଗିଣ୍ଡା ଭୁରୁକି ପଣ୍ଡା ମୁଠି ଔଷଧରେ ଚମତ୍କାରିତା ଦେଖାଉଥିଲେ । ସମ୍ବଲପୁର ଅନ୍ତର୍ଗତ ବରପାଲିରେ ଚୈତନ୍ୟ ରଥ ନାମକରେ ଜଣେ ତନ୍ତ୍ରବିଶାରଦ ଥିଲେ । ହୀରାକୁଦ ବୁଡ଼ି ଅଞ୍ଚଳରେ ଅନେକ ଗ୍ରାମରେ ନାଗବନ୍ଧା ଦଳ ତାନ୍ତ୍ରିକ ସାଧନା କରୁଥିଲେ ଏବଂ ତାହା ଏ ଜିଲ୍ଲାର ଅନ୍ୟାନ୍ୟ ଅଞ୍ଚଳରେ ପ୍ରସାରଲାଭ କରିଅଛି ।

## ବିଭିନ୍ନ ସଂସ୍କୃତିର ସମନ୍ୱୟ-ସ୍ଥଳୀ ଆଧୁନିକ ସମ୍ବଲପୁର ।

ଦକ୍ଷିଣ କୋଶଳ ବା ପ୍ରାକ୍ତନ ସମ୍ବଲପୁରରେ ଅତି ପ୍ରାଚୀନ କାଳରୁ ସଂସ୍କୃତ ସାହିତ୍ୟର ଆଦର ଓ ଆଲୋଚନା ହୋଇ ଆସୁଅଛି । ସମ୍ବଲପୁର କୋଶଳ ଓ ଉପକୂଳ ଉତ୍କଳ ପରସ୍ପର ସନ୍ନିହିତ ଅଞ୍ଚଳ ଥିଲା । ସମ୍ବଲପୁର ଅଞ୍ଚଳରେ ଯେଉଁ ପ୍ରକାରରେ ଓଡ଼ିଆ ଭାଷାର ମୂଳପିଣ୍ଡ ଗଠିତ ହୋଇଥିଲା ଉପକୂଳ ଅଞ୍ଚଳରେ ମଧ୍ୟ ଅନୁରୂପ ପ୍ରକ୍ରିୟାରେ ଓଡ଼ିଆ ଭାଷାର ମୂଳପିଣ୍ଡ ଗଠିତ ହେଲା । ସ୍ଥୂଳ ଭାବରେ କହିବାକୁ ଗଲେ, ମୌର୍ଯ୍ୟ ଯୁଗରୁ ଖ୍ରୀଷ୍ଟ ଦଶମ ଶତାବ୍ଦୀ ମଧ୍ୟରେ ସଂସ୍କୃତ, ପ୍ରାକୃତ ଓ ବିଭାଷାର ପରସ୍ପର ମିଶ୍ରଣ ଓ ସଙ୍ଘର୍ଷ ଦ୍ୱାରା ସମ୍ବଲପୁର କୋଶଳରେ ଓଡ଼ିଆ ଭାଷାର ସୃଷ୍ଟି ହୋଇଅଛି । ସୋମଗୁପ୍ତ ବଂଶ ଶ୍ରୀପୁରରୁ ସୋନପୁର ରାଜଧାନୀ ପରିବର୍ତ୍ତନ କରି ଓଡ଼ିଶା ଜୟ କରି ଉପକୂଳ ଅଞ୍ଚଳରେ ଯାଜପୁର ଓ ଭୁବନେଶ୍ୱରରେ ମଧ୍ୟ ରାଜଧାନୀ ସ୍ଥାପନ କରିବା ଦ୍ୱାରା ଉପକୂଳ ଓଡ଼ିଶା ଓ ସମ୍ବଲପୁର କୋଶଳ ମଧ୍ୟରେ ସାଂସ୍କୃତିକ ଏକତା ସୁଦୃଢ଼ ହୋଇ ଉଠିଲା । କଳା-କୌଶଳ ଓ ସ୍ଥାପତ୍ୟ ପ୍ରତିଷ୍ଠା ଦିଗରେ ଏହି ସଂଶ୍ରବତା ଅଧିକ ଦୃଢ଼ ହେବାର ଜଣା ପଡ଼େ ।

ସମ୍ବଲପୁର ଚୌହାଣ ରାଜତ୍ୱରେ ଓଡ଼ିଆ ସାହିତ୍ୟର ବିଭିନ୍ନ ବହୁମୁଖୀ ବିକାଶ 'ବୈଜଳଦେବଙ୍କଠାରୁ ଭୀମଭୋଇ' ପର୍ଯ୍ୟନ୍ତ ହୋଇ ଆସିଅଛି ଓ ଆଧୁନିକ ଯୁଗରେ ଗଙ୍ଗାଧରଙ୍କଠାରୁ ସାମ୍ପ୍ରତିକ କାଳ ପର୍ଯ୍ୟନ୍ତ ବହୁ ଲେଖକ,

କବି, ଗାଳ୍ପିକ, ପ୍ରାବନ୍ଧିକ ଓ ନାଟ୍ୟକାର ଆତ୍ମପ୍ରକାଶ କରି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରି ଚାଲିଛନ୍ତି ।

ଅତିଶୋଧିତ ହେଁ ଶବ୍ଦ ଆମର ଭାଷା ଭଣ୍ଡାରକୁ ପରିପୁଷ୍ଟ କରିଅଛି । ତା'ର ବହୁ ପର୍ବପର୍ବାଣି, ଧର୍ମ-ବିଶ୍ବାସ ଓ ଚଳଣୀକୁ ସମୃଦ୍ଧ ଜନସମାଜ ଆଦରି ନେଇଛି ।

ମୋହେଞ୍ଜୋଦାରୋ-ହରପ୍ପା ସଭ୍ୟତାକାଳରୁ ତ୍ରୟୋଦଶ ଶତାବ୍ଦୀ ପର୍ଯ୍ୟନ୍ତ ଯେତେ ଐତିହାସିକ ତଥ୍ୟ ଇତିହାସ-ବେତ୍ତା ପଣ୍ଡିତ ଆମକୁ ଦେଇଯାଇଛନ୍ତି ଓ ଚୌହାଣ ବଂଶରୁ ଆଧୁନିକ କାଳ ପର୍ଯ୍ୟନ୍ତ ଯେଉଁ ସବୁ ଐତିହାସିକ ନିଦର୍ଶନ ମିଳେ, ସେଥିରୁ ଜଣାପଡ଼େ ଯେ ସମ୍ବଲପୁର-ଅଞ୍ଚଳ ଅରଣ୍ୟ ପ୍ରଧାନ ଓ ଆଦିମ ବହୁଳ ରହି-ଆସିଛି । ତାମ୍ରଶାସନମାନଙ୍କରୁ ଜଣାଯାଏ ଯେ, ବିଭିନ୍ନ କାଳର ରାଜବଂଶୀୟ ଭାରତର ବିଭିନ୍ନ ଅଞ୍ଚଳରୁ ଆଗତ ଶ୍ରେଣୀର ଜାତି ଓ ବ୍ୟବସାୟୀ କାରିଗର ତଥା ଦକ୍ଷ ଲୋକମାନଙ୍କୁ ସମ୍ବଲପୁର ଖଣ୍ଡରେ ବସବାସ କରିବା ପାଇଁ ବହୁତର ଉତ୍ସାହ ପ୍ରଦାନ କରି ଆସିଛନ୍ତି । ଏ ଆଗମନ ସ୍ରୋତ ଚୌହାଣ ରାଜତ୍ୱ ପର୍ଯ୍ୟନ୍ତ ଚାଲିଥିଲା । ସମ୍ବଲପୁର ଭୂମି ନିବିଡ଼ ଅରଣ୍ୟାଚ୍ଛନ୍ନ ଓ ଦୁର୍ଗମ ହୋଇଥିଲେ ସୁଦ୍ଧା ସୁଦୂର ଅତୀତ କାଳରୁ ଆର୍ଯ୍ୟଜାତି ଏହାର ସ୍ୱର୍ଣ୍ଣପ୍ରସୂତା ଓ ବୈଭବ-ସୁଖ-ସ୍ୱାଚ୍ଛନ୍ଦ୍ୟର ସନ୍ଧାନ ପାଇଥିଲେ । ଶୈଳବଂଶ, ସୋମବଂଶ, ହୈହୟ ବଂଶ, ଗଙ୍ଗବଂଶ ଏବଂ ଶେଷକୁ ଚୌହାଣ ବଂଶ କ୍ରମାନ୍ୱୟରେ ଏ ଅଞ୍ଚଳ ପ୍ରତି ଲୋଲୁପ ହୋଇ ଆସିଛନ୍ତି । ଶୈଳବଂଶ ପୂର୍ବରୁ ଅନ୍ୟ କେଉଁ ଆର୍ଯ୍ୟ ବଂଶ ଏ ଅଞ୍ଚଳକୁ ପ୍ରବେଶ କରିଥିଲେ 'ବିକ୍ରମଖୋଲ' ଶିଳାଲିପି ଉଦ୍‌ଘାଟିତ ହେଲେ ସେ କଥା ଜଣାଯିବ । ହେଲେ ମଧ୍ୟ ସମଗ୍ର ଐତିହ୍ୟର ଆଲୋଚନାରୁ ଏତିକି ସ୍ପଷ୍ଟ ହୁଏ ଯେ, ଆଦିମ ଓ ଆର୍ଯ୍ୟମାନେ ପରମ ସୌହାର୍ଦ୍ଦ୍ୟରେ ଏକତ୍ର ବାସ କରି ଏକ ଜାତି ଓ ଏକ ଧର୍ମାବଲମ୍ବୀରେ ପରିଣତ ହୋଇଥିଲେ । ଚୌହାଣ ରାଜବଂଶ ତଳେ ଅଠର ଗଡ଼ଜାତ ଏକତ୍ରିତ ହୋଇ 'ହୀରାଖଣ୍ଡ ସାମ୍ରାଜ୍ୟ'ର ବିଶାଳ ସଂସ୍କୃତିର ପୂର୍ଣ୍ଣରୂପ ପ୍ରଦାନ କରିଛନ୍ତି । ଏହି ସକଳ ସଂସ୍କୃତିର ସମନ୍ୱୟ କେନ୍ଦ୍ର ରୂପେ ସମ୍ବଲପୁର ସମଗ୍ର ପଶ୍ଚିମ ଓଡ଼ିଶାର ଭାଷା, ସାହିତ୍ୟ ଓ ସଂସ୍କୃତିର ପ୍ରତିନିଧିତ୍ୱ କରିବାରେ କେତେଦୂର ଆଗେଇ ଚାଲିଛି, ତାହା ସାଂପ୍ରତିକ କାଳର କବି, ଲେଖକ, ସାହିତ୍ୟିକ, ଐତିହାସିକ ଓ ବୈଜ୍ଞାନିକମାନେ କଳନା କରିବାର ବେଳ ଆସିଛି ।

(୧୯୭୬ ସମ୍ବଲପୁର ଜିଲ୍ଲା ଲେଖକ ସମ୍ମିଳନୀ ଉପଲକ୍ଷେ ପ୍ରକାଶ ପାଇଥିବା ସ୍ମରଣିକାରୁ କୃତଜ୍ଞତାର ସହିତ ଗୃହୀତ ।)

---

## ନୂଆ ଖଜଣା ପାଉତ ଫର୍ମ

ଏତଦ୍ୱାରା ସର୍ବସାଧାରଣଙ୍କୁ ଜଣାଇ ଦିଆଯାଉଅଛି ଯେ ପ୍ରଚଳିତ ଥିବା "Y" ଚିହ୍ନିତ ଛପା ଖଜଣା ପାଉତି ଫର୍ମ ତା ୩୧-୩-୧୯୭୭ରିଖ ପର୍ଯ୍ୟନ୍ତ ଲାଗୁ ରହିବ । ତାପରେ ତା ୧-୪-୧୯୭୭ରିଖରୁ ଧଳା କାଗଜରେ ନାଲି କାଳିରେ ଛପା ହୋଇଥିବା "Z" ସଂକେତ ଥିବା ଖଜଣା ପାଉତି ଫାରମ ସମସ୍ତ ଜିଲ୍ଲାରେ ପ୍ରଚଳିତ ହେବ । ଏଣୁ ସର୍ବସାଧାରଣଙ୍କୁ ଅବଗତ କରାଇ ଦିଆଯାଉଅଛିକି ଯେ, ସେମାନେ ଆସନ୍ତା ତା ୧-୪-୧୯୭୭ରିଖରୁ ଭାରପ୍ରାପ୍ତ ରାଜସ୍ୱ ଆଦାୟକାରୀ କର୍ମଚାରୀଙ୍କ ଖଜଣା, ସେସ୍, ଜଳକର ପ୍ରଭୃତି ଦେୟ ପଇଠ ଦେଇ "Z" ଚିହ୍ନିତ ଫାରମରେ ପାଉତି ଗ୍ରହଣ କରିବେ । ଅନ୍ୟ କୌଣସି ଫାରମରେ ପାଉତି ଗ୍ରହଣ କଲେ ତାହା ଅସିଦ୍ଧ ଓ ଅଗ୍ରାହ୍ୟ ହେବ ।

# ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ନିର୍ମାତା ପାରଳା ମହାରାଜା

ଶ୍ରୀ ନିହାର ରଞ୍ଜନ ନାୟକ

ଶତାବ୍ଦୀର ଊର୍ଦ୍ଧ୍ୱ ପରାଧୀନତା ଓ ଅନ୍ଧକାର ଶୃଙ୍ଖଳରୁ ଓଡ଼ିଆ ଜାତିକୁ ସ୍ୱାଧୀନତା ପଥର ସନ୍ଧାନ ଦେବା ନିମନ୍ତେ ମୁକ୍ତି ମଶାଲର ବର୍ତ୍ତିକା ଧରଇ ଯେଉଁ ମହିୟସୀ ମହାପୁରୁଷଗଣ ଅସୀମ ତ୍ୟାଗ ବରଣକରି ଯୁଗାନ୍ତକାରୀ ଇତିହାସ ସୃଷ୍ଟି କରିଛନ୍ତି ତନ୍ମଧ୍ୟରୁ ପାରଳା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଅନ୍ୟତମ । ୧୯୩୬ ମସିହା ଅପ୍ରେଲ ପହିଲିଦିନ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶରୂପେ ଭାରତ ମାନଚିତ୍ରରେ ତାର ଯୋଗ୍ୟ ସ୍ଥାନ ଅଧିକାର କରିଥିବାହେତୁ ଏହା ଓଡ଼ିଶାବାସୀଙ୍କର ଚିରସ୍ମରଣୀୟ ଦିବସଭାବେ ପୂଜ୍ୟ, ନମସ୍ୟ ଓ ବରେଣ୍ୟ । ଏହି ଦିବସରେ ଓଡ଼ିଶା ନୂତନ ରାଜ୍ୟରୂପେ ଆତ୍ମପ୍ରକାଶକରି ଓଡ଼ିଶା ଜାତିର ଜାତୀୟତାକୁ ଗୌରବ ମଣ୍ଡିତ କରିଥିଲା ।

ଦୁର୍ଦ୍ଦାନ୍ତପରାକ୍ରମଶାଳୀ ବିଦେଶୀ ଇଂରେଜ ସରକାରଙ୍କ ବିରୁଦ୍ଧରେ ପ୍ରାୟ ଦୀର୍ଘ ୭୦ ବର୍ଷକାଳ ପାଇକମାନଙ୍କ ଦ୍ୱାରା ଉପାନ୍ତ ବିଦ୍ରୋହର ବ୍ୟୁହ ରଚନାକରି ପାରଳାର ଭୂତପୂର୍ବ ଗଜପତିଗଣ ଭାରତର ବିଦ୍ରୋହ ଇତିହାସରେ ସ୍ୱାଧୀନ ଚେତନାର ଏକ ନୂତନ ପରିଚ୍ଛେଦ ସୃଷ୍ଟିକରି ଅବିସ୍ମରଣୀୟ । ପାରଳାର ଗଜପତିବୃନ୍ଦ ଓଡ଼ିଶାର ପ୍ରଖ୍ୟାତ ଗଙ୍ଗବଂଶ ତଥା ପୁରୀର ସୂର୍ଯ୍ୟବଂଶ ରାଜାଙ୍କର ବଂଶୋଦ୍ଭବ ରୂପେ ବିଦିତ । ସେହି ଗୌରବପୂର୍ଣ୍ଣ ଅଭିଜାତ୍ୟ ରାଜବଂଶରୁ ପ୍ରସୂତ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଭାରତର ସ୍ୱାଧୀନତା, ଦେଶ ମିଶ୍ରଣ ତଥା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନରେ ଅନନ୍ୟରୂପ ପଥ ପ୍ରଦେଷ୍ଟା ହୋଇ ଉଲ୍ଲେଖଯୋଗ୍ୟ ଭୂମିକାଗ୍ରହଣ କରିବା ସଙ୍ଗେ ସଙ୍ଗେ କୃତକାର୍ଯ୍ୟର ଅନବଦ୍ୟ ପଟାନ୍ତର ସୃଷ୍ଟି କରିଥିଲେ ।

ଉତ୍କଳ ଜନନୀର ଯୋଗ୍ୟତମ ବରପୁତ୍ର କୁଳବୃଦ୍ଧ ଦେଶପ୍ରାଣ ଉତ୍କଳ ଗୌରବ ତଥା ଉତ୍କଳ ଭକ୍ତ ମଧୁସୂଦନ ଦାସଙ୍କ ଅଦ୍ଭୁତ 'ଉତ୍କଳ ସମ୍ମିଳନୀ'ର ଦଶମ ଅଧିବେଶନ ୧୯୧୪ ମସିହା ଡିସେମ୍ବର ୨୬ ତାରିଖରେ ପାରଳା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତିଙ୍କ ଘନିଷ୍ଠ ତତ୍ତ୍ୱାବଧାନ ଓ ରାଜକବି ବିକ୍ରମଦେବ ବର୍ମାଙ୍କ ସଭାପତିତ୍ୱରେ ପାରଳାଖେମୁଣ୍ଡି ଠାରେ ଏହା ଅନୁଷ୍ଠିତ ହୋଇଥିଲା । ପ୍ରାରମ୍ଭରୁ ପାରଳା ମହାରାଜା 'ଉତ୍କଳ ସମ୍ମିଳନୀ' ସହିତ ଓତପ୍ରୋତଭାବରେ ଜଡ଼ିତହୋଇ ଓଡ଼ିଆ ଜାତିକୁ ଜାଗ୍ରତକରି ସ୍ୱାତନ୍ତ୍ର୍ୟ ହାସଲ କରିବା ତାଙ୍କ ଜୀବନର ଉତ୍ସର୍ଗୀକୃତ ବ୍ରତଥିଲା ।

୧୯୧୩ ମସିହାରେ ପାରଳାର ଶାସନ ସିଂହାସନ ଆରୋହଣ କଲାବେଳକୁ ତାଙ୍କ ରାଜକୋଷରେ ଥିବା ଦେଢ଼କୋଟିରୁ ଅଧିକ ଟଙ୍କାକୁ ମହାରାଜା ଦେଶମିଶ୍ରଣ ତଥା ଦେଶର ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟରେ ବିନିଯୋଗ କରି ସମସ୍ତ ଦେଶରେ ଏକ ବିଶିଷ୍ଟ ଉଦାର ଓ ସ୍ୱଦେଶ ବତ୍ସଳ ଶାସକରୂପେ ପରିଚିତ ହେଲେ । ସେ ଦୀର୍ଘ ୨୫ ବର୍ଷକାଳ ନିରବଚ୍ଛିନ୍ନ ଭାବରେ ଅସୀମ ତ୍ୟାଗ ଓ କଷ୍ଟ ସ୍ୱୀକାର କରି ଓଡ଼ିଶା ଶତ ଶତ ସ୍ମାରକ ପତ୍ର ମାନ୍ଦ୍ରାଜ ସରକାର, ଭାରତ ସରକାର ସର୍ବୋପରି ବିଲାତ ସରକାରଙ୍କୁ ପ୍ରଦାନ କରିଥିଲେ । ସେ ତତ୍କାଳୀନ ଫିଲିପ୍‌ଡଫ୍ କମିଟିର ଅନୁଧ୍ୟାନବେଳେ ସମଗ୍ର ଦକ୍ଷିଣ ଓ ଉତ୍ତର-ପୂର୍ବ ଓଡ଼ିଶାରେ ଯେଉଁ ଅପୂର୍ବ ଜନଜାଗରଣ ଓ ସ୍ୱାତନ୍ତ୍ର୍ୟତାର ଚେତନା ଆଣିଲେ ନିଜ ବଳିଷ୍ଠ ନେତୃତ୍ୱ ତଥା ଅସୀମ ସଂଗଠନ ଶକ୍ତିର ପରାକାଷ୍ଠା ପ୍ରତିପାଦିତ କରିଥିଲେ । ତାହା ଓଡ଼ିଆ ଜାତିର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ

ନିଜ କାହୁଣୀମାନ । ସେହିପରି ସାଇମନ କମିଶନଙ୍କ ଓଡ଼ିଆ କମିଟିର ଜଣେ ସକ୍ରିୟ ସଦସ୍ୟ ଭାବରେ କମିଟିକୁ ଓଡ଼ିଶାର ସ୍ୱତନ୍ତ୍ରତା ହାସଲ ସଂପର୍କରେ ସେ ଯେଉଁ ପ୍ରଶଂସନୀୟ ଉଦ୍ୟମ କରିଥିଲେ ତାହା ସ୍ୱତନ୍ତ୍ର ପ୍ରଦେଶ ଗଠନ ଦିଗରେ ଆଉ ଏକ ଉଲ୍ଲେଖଯୋଗ୍ୟ ପ୍ରମୁଖ ପଦକ୍ଷେପ ବୋଲି ବିବେଚିତ । କୁଳବୃଦ୍ଧ ଉତ୍କଳଗୌରବ ମଧୁସୂଦନଙ୍କ ବାର୍ଦ୍ଧକ୍ୟ ସମୟରେ ମହାରାଜା ଉତ୍କଳ ଜନନୀର ସୁଯୋଗ୍ୟ କର୍ଣ୍ଣଧାରରୂପେ ଅବତୀର୍ଣ୍ଣ ହୋଇଥିଲେ । ତାଙ୍କର ବାଗ୍ମିତା, ଅସୀମ ପ୍ରତିଭା ବଳିଷ୍ଠ ବ୍ୟକ୍ତିତ୍ୱ, କାର୍ଯ୍ୟଦକ୍ଷତା ଓ ବ୍ୟକ୍ତିଗତ ପ୍ରତିଷ୍ଠା ଯୋଗୁ ତତ୍କାଳୀନ ବଡ଼ଲାଟ ଓ ରାଜ୍ୟଶାସନ ଶାସକଙ୍କୁ ନିଜର ଅକାଟ୍ୟଯୁକ୍ତି ପ୍ରମାଣ ସମ୍ବଳିତ ଦାବି ସମୟରେ ପ୍ରସ୍ତାବିତ କରି ପାରିଥିଲେ ।

୧୯୩୧ ମସିହାରେ ଲଣ୍ଡନଠାରେ ଆହୂତ ହୋଇଥିବା ଗୋଲଟେବୁଲ ବୈଠକରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦାବି ଉପସ୍ଥାପିତ କରିବା ସକାଶେ ପାରଳା ମହାରାଜା ନିମନ୍ତ୍ରିତ ହୋଇଥିଲେ । ଏହା ତାଙ୍କ ପକ୍ଷେ ପରମ ସୌଭାଗ୍ୟର ଘଟଣା ବୋଲି ସେ ବର୍ଣ୍ଣନା କରିଥିଲେ । ସେ ଚିଲିକାର ରାଜାସାହେବ ଗୌରଚନ୍ଦ୍ର ଦେବଙ୍କୁ ନିଜର ପରାମର୍ଶ ଦାତାରୂପେ ଲଣ୍ଡନକୁ ନିଜ ସଙ୍ଗରେ ନେଇ ଯାଇଥିଲେ । କୋଳାହଳମୟୀ ଲଣ୍ଡନ ନଗରୀରେ ମହାରାଜା ଓଡ଼ିଶା ପ୍ରଦେଶ ଗଠନ କାର୍ଯ୍ୟକ୍ରମରେ ବ୍ୟସ୍ତ ଥାଇମଧ୍ୟ ସେ ଦେଶପ୍ରାଣ ମଧୁସୂଦନ ଦାସଙ୍କ ସହ ପତ୍ରଦ୍ୱାରା ଯୋଗାଯୋଗ ରକ୍ଷାକରି ପରାମର୍ଶ ଗ୍ରହଣ କରୁଥିଲେ । ପ୍ରଥମ ଗୋଲଟେବୁଲ ବୈଠକରେ ପ୍ରତାପୀ ଇଂରେଜ ସରକାର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସଂକ୍ରାନ୍ତ ଶ୍ୱେତପତ୍ର (White Paper) ଲଣ୍ଡନଠାରେ ପ୍ରକାଶ କରିଥିଲେ । ପ୍ରସ୍ତାବିତ ଓଡ଼ିଶା ରାଜ୍ୟରେ ଜୟପୁର ଓ ପାରଳା ବାଦ ପଡ଼ିଯିବାହେତୁ ମହାରାଜାଙ୍କ ମନରେ ଦାରୁଣ ବାଧା ଲାଗିଥିଲା । ସେ ଦୁଃଖରେ ମ୍ରିୟମାଣ ହୋଇ ଓଡ଼ିଶା ପ୍ରତ୍ୟାବର୍ତ୍ତନ କରିଥିବାହେତୁ ଶାନ୍ତିରେ ସମୟ ଅତିବାହିତ କରି ପାରିନଥିଲେ । କାରଣ ଓଡ଼ିଶାର ବହୁ ଉଚ୍ଚପଦସ୍ଥ ଅଣଓଡ଼ିଆ ସରକାରୀ ଓ ବେସରକାରୀ ବ୍ୟକ୍ତି ମହାରାଜାଙ୍କ ସ୍ୱତନ୍ତ୍ର ଓଡ଼ିଶା ଗଠନ ବିରୁଦ୍ଧରେ ଲଣ୍ଡନକୁ ତାରବାର୍ତ୍ତା ତଥା ସ୍ମାରକ ପତ୍ରମାନ ପଠାଇ ବିଘ୍ନ ସୃଷ୍ଟି କଲେ । ମାନ୍ଦ୍ରାଜର ବହୁ ଅଣଓଡ଼ିଆ ନେତା ତତ୍କାଳୀନ ଗଭର୍ଣ୍ଣରଙ୍କ ସହାୟତାରେ ମହାରାଜାଙ୍କୁ ତାଙ୍କ ଉଦ୍ୟମରୁ ନିବର୍ତ୍ତାଇବା ପାଇଁ ପ୍ରାଣାନ୍ତକ ପ୍ରଚେଷ୍ଟା ଚଳାଇ ବ୍ୟର୍ଥହୋଇଥିଲେ । ନିଜର ସ୍ୱପ୍ନକୁ ସାକାର କରିବାପାଇଁ ମହାରାଜା ଦ୍ୱିତୀୟଥର ଗୋଲଟେବୁଲ ବୈଠକରେ ଯୋଗଦେବା ସକାଶେ ଲଣ୍ଡନ ଅଭିମୁଖେ ଯାତ୍ରା କଲେ । ଏଥର ତାଙ୍କୁ ବହୁ ବାଧାବିଘ୍ନ, ଦୁଃଖକଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା । ଉତ୍ତର-ପୂର୍ବ ଓଡ଼ିଶାର କେତେକ ଜମିଦାର ପାରଳା ଓ ଜୟପୁର ବ୍ୟତୀତ ଏକ ବିଖଣ୍ଡିତ ଓଡ଼ିଶା ପ୍ରଦେଶ ଗଠନରେ ସନ୍ତୋଷ ପ୍ରକାଶକରି ତାରବାର୍ତ୍ତାମାନ ପ୍ରେରଣ କରିଥିଲେ । ମହାରାଜା ଏଥିରେ ଆଦୌ ଉଦ୍‌ବେଗ ପ୍ରକାଶ ନକରି ନିଜ ଦାବିରେ ଅଟଳ ରହିବା ସଙ୍ଗେ ସଙ୍ଗେ ଗୋଲଟେବୁଲ ବୈଠକରେ ଓଡ଼ିଶାରେ ଜୟପୁର ଓ ପାରଳାର ମିଶ୍ରଣ ସଂପର୍କରେ ବଳିଷ୍ଠ ଯୁକ୍ତିମାନ ଉପସ୍ଥାପିତ କରି ସ୍ୱଦେଶ ପ୍ରୀତିର ପରାକାଷ୍ଠା ପ୍ରତିପାଦିତ କରିଥିଲେ । ମହାରାଜାଙ୍କୁ ଆଇନ ପରାମର୍ଶ ଦେବାପାଇଁ ବିଶିଷ୍ଟ ଆଇନଜ୍ଞ ମାନ୍ଧାତା ଗୋରଚନ୍ଦ ଓ ଭୁବନାନନ୍ଦ ଦାସ ମହାରାଜାଙ୍କ ଖର୍ଚ୍ଚରେ ଲଣ୍ଡନ ଯାଇଥିଲେ । ଅବଶେଷରେ ମହାରାଜାଙ୍କ ଅଭିଳାଷ ଚରିତାର୍ଥ ହେଲା । ମହାରାଜାଙ୍କ ଅସୀମ ତ୍ୟାଗ ନିଷ୍ଠାପର ଓ ଆନ୍ତରିକ ଉଦ୍ୟମ ସକାଶେ ବିହାରର ବିଶିଷ୍ଟ ନେତା ସଚ୍ଚିଦାନନ୍ଦ ସିହ୍ନା ମହାରାଜାଙ୍କୁ ପ୍ରଶଂସାକରି ମଧୁସୂଦନ ଦାସଙ୍କ ପାଖକୁ ପତ୍ରପ୍ରେରଣ କରିଥିଲେ । ସେହିପରି ସାମୁଏଲ୍ ହୋର ଓଡ଼ିଶାର ଗୌରବବହ ଐତିହ୍ୟ ସଂପର୍କରେ ସୂଚନାପାଇ ମହାରାଜାଙ୍କ ନିସ୍ୱାର୍ଥପର ତ୍ୟାଗର ଭୂୟସୀ ପ୍ରଶଂସା ନକରି ରହିପାରି ନଥିଲେ ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବାର ପ୍ରଥମ ପଦକ୍ଷେପ ରୂପେ ନୂତନ ଗଭର୍ଣ୍ଣର ଓ ମହାରାଜାଙ୍କ ସମ୍ମାନାର୍ଥେ ରେଭେନ୍ସା ମହାବିଦ୍ୟାଳୟ ପ୍ରାଙ୍ଗଣରେ ଏକ ଗାମ୍ଭିର୍ଯ୍ୟପୂର୍ଣ୍ଣ ଉତ୍ସବର ଆୟୋଜନ କରାଯାଇଥିଲା । ଏହି ଉତ୍ସବରେ ନବନିଯୁକ୍ତ ଗଭର୍ଣ୍ଣର ଶପଥପାଠ କରିଥିଲେ, ସେହିଦିନ ସନ୍ଧ୍ୟାରେ ଐତିହାସିକ ବାରବାଟୀ କିଲ୍ଲାଠାରେ ମହାରାଜାଙ୍କୁ ନାଗରିକ ସମ୍ବର୍ଦ୍ଧନାର୍ଥେ ଏକ ବିରାଟ ଜନସଭା ଆୟୋଜନ କରାଯାଇଥିଲା । ମି: ହାଥର୍ଣ୍ଣ ଲୁଇସ୍ ଓଡ଼ିଶାର ଦ୍ୱିତୀୟ ଗଭର୍ଣ୍ଣର ରୂପେ ଅବସ୍ଥାପିତ ହେଲେ । ସେ ମହାରାଜାଙ୍କର ଘନିଷ୍ଠ ବନ୍ଧୁ ରୂପେ ସର୍ବଜନ ବିଦିତ । ମହାରାଜା ସ୍ୱତନ୍ତ୍ର ଓଡ଼ିଶାର ଶାସନ ଦାୟିତ୍ୱ ବହନ କରିଥିବା ହେତୁ ସେ ବିଶେଷ ଆନନ୍ଦିତ ହୋଇଥିଲେ ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦୁଇଥର ଓଡ଼ିଶାର ପ୍ରଧାନ ମନ୍ତ୍ରୀରୂପେ ଦାୟିତ୍ୱ ଗ୍ରହଣ କରିଥିଲେ । ତାଙ୍କ ଶାସନ କାଳରେ ସେ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତିବିଧାନ ଭିତ୍ତିଭୂମୀ ସ୍ୱରୂପ ଓଡ଼ିଶାର ପ୍ରାଣକେନ୍ଦ୍ର କଟକ ସହରରେ ହାଇକୋର୍ଟ, ଉତ୍କଳ ବିଶ୍ୱବିଦ୍ୟାଳୟ ଓ

ପ୍ରସ୍ତାବରେ, ଏକ ମେଡିକାଲ କଲେଜ ପ୍ରତିଷ୍ଠା କରିଥିଲେ । ମନ୍ତ୍ରୀ ପଦରେ ଥିବା ସମୟରେ ସେ ତାଙ୍କର ସମସ୍ତ ଦରମା, ଭତ୍ତା, ଉତ୍କଳ ବିଶ୍ୱବିଦ୍ୟାଳୟ ନିମନ୍ତେ ଦାନ କରିଥିଲେ । ମହାତ୍ମାଙ୍କ ତ୍ୟାଗପୂତ ଓ ନିଷ୍ଠାପର କର୍ମ ସଂପର୍କରେ କବିଶେଖର ଚିନ୍ତାମଣି ମହାନ୍ତି ତାଙ୍କର 'ଉତ୍କଳ ମନନ' କବିତାରେ ଉତ୍କଳ ଜନନୀ ମୁଖରେ ନିମ୍ନମତେ କହିଛନ୍ତି—

ମଧୁ ମୋର ଜ୍ୟେଷ୍ଠ ପୁତ୍ର ମାତୃ ପଦଗତ
ମୋ ମହିମା ବୃଦ୍ଧି ପାଇଁ ଉତ୍ସର୍ଗିଲା ପ୍ରାଣ

* * * *

ସେଭଳି ଯୋର ଚେଷ୍ଟା ନ ହେଲେ ସଫଳ
ଛଡ଼ା ଅଙ୍ଗୋକୁ ବନ୍ଧୁ ଯାଏ ପାଣି ଫାଟି
ଶୁଭକ୍ଷଣେ ଉଦେ ହେଲା ପାରଳା ଗଡ଼ରେ
କୃଷ୍ଣଚନ୍ଦ୍ର ଗଜପତି ଗଜପତି ବଂଶେ
ନବ ସୂର୍ଯ୍ୟ ରୂପେ ତାର ପ୍ରତିଭା କିରଣ
ଉଜ୍ଜ୍ୱଳି ମୋ ଦେଶ ଗଣ୍ଡି ଦିଗେ ଦିଗେ ବ୍ୟାପି

* * * *

ସଂଯୋଜିତ ହେଲା ମୋର ବିଖଣ୍ଡିତ ଦେହ
କୃଷ୍ଣଚନ୍ଦ୍ର ପୂର୍ଣ୍ଣଚନ୍ଦ୍ର ମୋର ଗଗନରେ
ତାହାପରି ମାତୃଭକ୍ତ ଧାର୍ମିକ ସୁପୁତ୍ର

* * * *

ମହାତ୍ମା ବୟସରେ କନିଷ୍ଠ ହୋଇଥିଲେ ମଧ୍ୟ ମଧୁ ବାବୁ ତାଙ୍କ କଥାରେ ବିଶେଷ ଗୁରୁତ୍ୱ ଆରୋପ କରୁଥିଲେ । କୃଷିର ବିକାଶ ସାଧନ ନିମନ୍ତେ ସେ ବିଶେଷ ଉଦ୍ୟମ କରିଥିଲେ । ସେ କୋଏମ୍ବାଟୁର କୃଷି କଲେଜର ପ୍ରତିଷ୍ଠାତା ଓ ପରାମର୍ଶଦାତା ଥିଲେ । କୃଷିର ବିକାଶ ନିମନ୍ତେ ତାଙ୍କର ଏହି ଅନୁରକ୍ତି ଦେଖି ଇଂରେଜ ସରକାର ତାଙ୍କୁ ରୟାଲ କୃଷି କମିଶନର ସଭ୍ୟରୂପେ ମନୋନୀତ କରିଥିଲେ । କୃଷି କମିଶନରଙ୍କ ସଦସ୍ୟ ଭାବେ ସେ ବ୍ରହ୍ମଦେଶ ଗସ୍ତରେ ଯାଇ ସେଠାରେ ଥିବା ପ୍ରବାସୀ ଓଡ଼ିଆଙ୍କଠାରୁ ବିପୁଳ ସ୍ୱାଗତ ସମ୍ବର୍ଦ୍ଧନା ଗ୍ରହଣ କରିଥିଲେ । ସେ ସେଠାରେ ଥିବା ଜଗନ୍ନାଥ ମନ୍ଦିରର ଉନ୍ନତି ବିଧାନ ସକାଶେ ଆର୍ଥିକ ସାହାଯ୍ୟ କରିଥିଲେ ।

ଓଡ଼ିଶାର ସମୃଦ୍ଧ ବିକାଶ ସାଧନ ନିମନ୍ତେ ମହାତ୍ମା ବ୍ୟାପକ ଉନ୍ନୟନମୂଳକ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । ଓଡ଼ିଶାରେ ଶିଳ୍ପ ବାଣିଜ୍ୟର ବ୍ୟାପକ ପ୍ରସାର ନିମନ୍ତେ ସେ ୫୭ ମାଇଲ ରେଳପଥ ପାରଳାଖେମୁଣ୍ଡିକୁ ଟଣାଇଥିଲେ । ଓଡ଼ିଶାର ଶିକ୍ଷା, ସାହିତ୍ୟ, ସଂସ୍କୃତି, କ୍ରୀଡ଼ାର ବ୍ୟାପକ ପ୍ରସାର କ୍ଷେତ୍ରରେ ତାଙ୍କର ଅବଦାନ ବିଶେଷ ଉଲ୍ଲେଖଯୋଗ୍ୟ । ଏହା ବ୍ୟତୀତ ସେ ଜଣେ ଧର୍ମପ୍ରାଣ, ବଦାନ୍ୟ ଓ ଶିକ୍ଷାପ୍ରେମୀରୂପେ ସମଗ୍ର ଭାରତରେ ସୁନାମ ଅର୍ଜନ କରିଛନ୍ତି । ମେଧାବୀ ଓ ଦରିଦ୍ର ଶ୍ରେଣୀର ଛାତ୍ରମାନଙ୍କୁ ମାଗଣାରେ ପାଠ ପଢ଼ାଇବା ଦାୟିତ୍ୱ ଗ୍ରହଣ କରିଥିବାରୁ ସେ ଅତ୍ୟନ୍ତ ପ୍ରଶଂସନୀୟ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ସ୍ଥିତି ଥିବା ପର୍ଯ୍ୟନ୍ତ ମହାତ୍ମା ଓଡ଼ିଆ ଜାତିର ପ୍ରାଣରେ ଯୁଗ ଯୁଗ ଧରି ପ୍ରତିଷ୍ଠିତ ହେଉଥିବେ । ତାଙ୍କର ଜୀବନ ଇତିହାସ ଓଡ଼ିଶା ଦେଶ ମିଶ୍ରଣ ଆନ୍ଦୋଳନର ଇତିହାସ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅଜିର ଏହି ଏକଷଠିତମ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଶୁଭ ପବିତ୍ର ଦିବସରେ ଓଡ଼ିଆ ଜାତି ତାଙ୍କର ପଦାଙ୍କ ଅନୁସରଣ କରି ଉପଯୁକ୍ତ ଦାୟାଦରୂପେ ପ୍ରତିଷ୍ଠା କରିବା ଆମମାନଙ୍କର ଏକାନ୍ତ କାମ୍ୟ । ଓଡ଼ିଶା ସମୃଦ୍ଧ ଓ ବିଶ୍ୱପ୍ରାଣ ପ୍ରଦେଶରୂପେ ପରିଗଣିତ ହେବାପାଇଁ ଜଗନ୍ନାଥ ମହାପ୍ରଭୁ ଓଡ଼ିଶାବାସୀଙ୍କ ପ୍ରାଣରେ ଅସୀମ ଶକ୍ତି ସଞ୍ଚାର କରିବା ପାଇଁ ତାଙ୍କଠାରେ ଆମର ବିନମ୍ର ପ୍ରଣତି ଜଣାଉଛି ।

(ସ୍ୱରାଷ୍ଟ୍ର, ଲୋକସମ୍ପର୍କ ବିଭାଗ)
ଓଡ଼ିଶା ସରକାର, ଭୁବନେଶ୍ୱର



# ଓଡ଼ିଆ ଭାଷାର
# ଧ୍ୱନି ଓ ଲିପି

ଡକ୍ଟର ନୃସିଂହଚରଣ ପଣ୍ଡା

ସଂସ୍କୃତ ଭାଷା ଓଡ଼ିଆ ଭାଷାର ଜନନୀ । ଓଡ଼ିଆରେ ଚାରି ପ୍ରକାରର ଶବ୍ଦ ବ୍ୟବହୃତ ହୁଏ, ଯଥା—ତତ୍‌ସମ, ତଦ୍‌ଭବ, ଦେଶଜ ଓ ବୈଦେଶିକ । ତତ୍‌ସମ ଶବ୍ଦଗୁଡ଼ିକ ସଂସ୍କୃତ ଭାଷାରୁ ଅପରିବର୍ତ୍ତିତ ରୂପରେ ଧାର କରାଯାଇଛି । ମନୁଷ୍ୟ, ହସ୍ତୀ, ଗ୍ରାମ, ମୁଖ, ଇତ୍ୟାଦି ସେଗୁଡ଼ିକ ତତ୍‌ସମ । ସଂସ୍କୃତ ଶବ୍ଦଗୁଡ଼ିକ ଅଳ୍ପ କିଛି ବେନି ଯାଇ ତଦ୍‌ଭବ ଶବ୍ଦରେ ପରିଣତ ହୁଅନ୍ତି । ମଣିଷ, ହାତୀ, ଗାଁ, ମୁହଁ, ଇତ୍ୟାଦି, ଏ ମୂଳ ସଂସ୍କୃତ ଶବ୍ଦର ଅପଭ୍ରଂଶ ମାତ୍ର । ଏପରି ଶବ୍ଦକୁ ତଦ୍‌ଭବ ଶବ୍ଦ କୁହାଯାଏ । ଓଡ଼ିଆ ଭାଷାର ପ୍ରାୟ ୯୯ ପ୍ରତିଶତ ଶବ୍ଦ ହୁଏତ ତତ୍‌ସମ କିମ୍ବା ତଦ୍‌ଭବ ରୂପରେ ସଂସ୍କୃତରୁ ଆନୀତ । ଅତଏବ ଏ କଥା ସହଜରେ ଅନୁମେୟ ଯେ, ଓଡ଼ିଆ ଧ୍ୱନି ଓ ଲିପିର ସଂସ୍କୃତ ଧ୍ୱନି ଓ ଲିପି ସହିତ ଅଧିକାଂଶ ମାତ୍ରାରେ ସାଦୃଶ୍ୟ ରହିଛି । ଯଦିଓ ସ୍ଥୂଳତଃ ଓଡ଼ିଆ ଲିପି ଦେଖିବାକୁ ଦେବନାଗରୀଠାରୁ ଭିନ୍ନ, ତଥାପି ସୂକ୍ଷ୍ମ ଦୃଷ୍ଟିରୁ ଅନୁଧ୍ୟାନକଲେ ଓଡ଼ିଆ ଲିପି ଦେବନାଗରୀର ରୂପାନ୍ତରଣ ବୋଲି ଅନୁଭୂତ ହୁଏ ।

ଧ୍ୱନି ବିଜ୍ଞାନ ଦୃଷ୍ଟିରୁ ପରୀକ୍ଷା କଲେ ଜଣାଯାଏ ଯେ, ପୃଥିବୀର ପୁରାତନ ଓ ଆଧୁନିକ ଭାଷାମାନଙ୍କ ମଧ୍ୟରେ ସଂସ୍କୃତ ଶ୍ରେଷ୍ଠ । ଏହି ଭାଷାରେ ପ୍ରତ୍ୟେକ ମୌଳିକ ଧ୍ୱନି ପାଇଁ ଗୋଟିଏ ଲିଖିତ ସଙ୍କେତ ବ୍ୟବହୃତ ହୁଏ ଏବଂ ସେହି ସଙ୍କେତକୁ ଗୋଟିଏ ବର୍ଣ୍ଣ କୁହାଯାଏ । କୌଣସି ଗୋଟିଏ ବର୍ଣ୍ଣ କେବଳ ଗୋଟିଏ ମାତ୍ର ମୌଳିକ ଧ୍ୱନିପାଇଁ ଉଦ୍ଦିଷ୍ଟ । ଏହା ସଂସ୍କୃତ ଭାଷାର ଲିପିର (ଦେବନାଗରୀ ଲିପିର) ଏକ ବିଶିଷ୍ଟ ବିଶେଷତ୍ୱ ।

ସଂସ୍କୃତ ଭାଷାର ବର୍ଣ୍ଣମାଳାରେ ୪୯ଟି ବର୍ଣ୍ଣ ଥାଏ । ସେଥି ମଧ୍ୟରୁ ୧୩ଟି ସ୍ୱରବର୍ଣ୍ଣ ଓ ୩୬ଟି ବ୍ୟଞ୍ଜନବର୍ଣ୍ଣ । ସ୍ୱରବର୍ଣ୍ଣ ଅନ୍ୟ ବର୍ଣ୍ଣର ବିନା ସାହାଯ୍ୟରେ ଉଚ୍ଚାରିତ ହୋଇଥାଏ, ମାତ୍ର ବ୍ୟଞ୍ଜନବର୍ଣ୍ଣ ସ୍ୱରବର୍ଣ୍ଣର ବିନା ସାହାଯ୍ୟରେ ଉଚ୍ଚାରିତ ହୋଇପାରେ ନାହିଁ ।

ଅ, ଇ, ଉ, ଋ, ଌ, ଏହି ପାଞ୍ଚଟି ବର୍ଣ୍ଣ ଏକ ନିମିଷରେ ଉଚ୍ଚାରିତ ହୁଅନ୍ତି ଏବଂ ସେଥିଯୋଗୁଁ ଏଗୁଡ଼ିକୁ ହ୍ରସ୍ୱସ୍ୱର କୁହାଯାଏ । ଆ, ଈ, ଊ, ୠ, ଏ, ଐ, ଓ, ଔ, ଏହି ଆଠଟି ବର୍ଣ୍ଣ ଦୁଇ ନିମିଷରେ ଉଚ୍ଚାରିତ ହୁଅନ୍ତି ଏବଂ ସେଥିଯୋଗୁଁ ଏଗୁଡ଼ିକୁ ଦୀର୍ଘ ସ୍ୱର କୁହାଯାଏ । ଧ୍ୱନିର ଉତ୍ପନ୍ନ ସ୍ଥାନ ବିଷୟ ବିଚାର କଲେ ଅ, ଆ, କଣ୍ଠରୁ (କଣ୍ଠ୍ୟବର୍ଣ୍ଣ), ଇ, ଈ ତାଳୁରୁ (ତାଳବ୍ୟବର୍ଣ୍ଣ), ଋ, ୠ ମୂର୍ଦ୍ଧାରୁ (ମୂର୍ଦ୍ଧନ୍ୟବର୍ଣ୍ଣ), ଌ ଦନ୍ତରୁ (ଦନ୍ତ୍ୟବର୍ଣ୍ଣ), ଉ, ଊ ଓଷ୍ଠରୁ (ଓଷ୍ଠ୍ୟବର୍ଣ୍ଣ), ଏ, ଐ କଣ୍ଠ ଓ ତାଳୁରୁ (କଣ୍ଠତାଳବ୍ୟବର୍ଣ୍ଣ), ଏବଂ ଓ, ଔ କଣ୍ଠ ଓ ଓଷ୍ଠରୁ (କଣ୍ଠୌଷ୍ଠ୍ୟବର୍ଣ୍ଣ) ଉଚ୍ଚାରିତ ହୁଅନ୍ତି ।

ବ୍ୟଞ୍ଜନବର୍ଣ୍ଣମାନଙ୍କ ମଧ୍ୟରେ କ' ଠାରୁ ମ ପର୍ଯ୍ୟନ୍ତ ୨୫ଟି ବର୍ଣ୍ଣକୁ ସ୍ପର୍ଶବର୍ଣ୍ଣ କୁହାଯାଏ । ଏଗୁଡ଼ିକୁ ପାଞ୍ଚଟି ବର୍ଗରେ ବିଭକ୍ତ କରାଯାଇଥାଏ । ସେହି କାରଣରୁ ସ୍ପର୍ଶବର୍ଣ୍ଣମାନଙ୍କର ଅନ୍ୟ ନାମ ବର୍ଗ୍ୟବର୍ଣ୍ଣ । କ୍, ଖ୍, ଗ୍, ଘ୍, ଙ୍—କ ବର୍ଗର, ଚ୍, ଛ୍, ଜ୍, ଝ୍, ଞ୍—ଚ ବର୍ଗର, ଟ୍, ଠ୍, ଡ୍, ଢ୍, ଣ୍—ଟ ବର୍ଗର, ତ୍, ଥ୍, ଦ୍, ଧ୍, ନ୍—ତ ବର୍ଗର ଏବଂ ପ୍, ଫ୍, ବ୍, ଭ୍, ମ୍—ପ ବର୍ଗର ଅନ୍ତର୍ଭୁକ୍ତ । ସ୍ପର୍ଶବର୍ଣ୍ଣମାନଙ୍କର

ଧ୍ୱନି-ଉତ୍ପତ୍ତି ପାଇଁ ଜିହ୍ୱାଗ୍ର, ତାଳୁ, ଦନ୍ତ ଓ ଓଷ୍ଠ, ଇତ୍ୟାଦି, ଏଗୁଡ଼ିକ ଅଂଶ ପରସ୍ପରକୁ ସ୍ପର୍ଶ କରନ୍ତି। କ ବର୍ଗର ପାଞ୍ଚଟି ବର୍ଣ୍ଣର ଧ୍ୱନି କଣ୍ଠରୁ ଉଚ୍ଚାରିତ ହୁଏ। ତେଣୁ କ୍, ଖ୍, ଗ୍, ଘ୍, ଙ୍‌କୁ କଣ୍ଠ୍ୟବର୍ଣ୍ଣ କୁହାଯାଏ। ଚ ବର୍ଗର ପ୍ରତ୍ୟେକ ବର୍ଣ୍ଣର ଧ୍ୱନି ଉଚ୍ଚାରିତ ହେଉଥିବାବେଳେ ଜିହ୍ୱାଗ୍ର ତାଳୁକୁ ସ୍ପର୍ଶକରେ। ସେହି କାରଣରୁ ଚ୍, ଛ୍, ଜ୍, ଝ୍, ଞ୍‌କୁ ତାଳବ୍ୟ ବର୍ଣ୍ଣ କୁହାଯାଏ। ଟ ବର୍ଗର ବର୍ଣ୍ଣମାନଙ୍କର ଧ୍ୱନି ମସ୍ତିଷ୍କମଧ୍ୟସ୍ଥ ମୂର୍ଦ୍ଧାରୁ ଉତ୍ପନ୍ନ ହୁଏ ଏବଂ ଉଚ୍ଚାରଣ ସମୟରେ ଜିହ୍ୱାଗ୍ର ତାଳୁକୁ ସ୍ପର୍ଶକରେ। ଟ୍, ଠ୍, ଡ୍, ଢ୍, ଣ୍‌କୁ ମୂର୍ଦ୍ଧନ୍ୟ ବର୍ଣ୍ଣ କୁହାଯାଏ। ତ ବର୍ଗର ବର୍ଣ୍ଣମାନଙ୍କର ଧ୍ୱନି ଉଚ୍ଚାରିତ ହେଉଥିବାବେଳେ ଜିହ୍ୱାଗ୍ର ଦାନ୍ତକୁ ସ୍ପର୍ଶକରେ। ଅତଏବ ତ୍, ଥ୍, ଦ୍, ଧ୍, ନ୍‌କୁ ଦନ୍ତ୍ୟବର୍ଣ୍ଣ କୁହାଯାଏ। ତଳ ଓ ଉପର ଓଷ୍ଠ ପରସ୍ପରକୁ ସ୍ପର୍ଶ ନ କଲେ ପ ବର୍ଗର ବର୍ଣ୍ଣମାନଙ୍କର ଧ୍ୱନିମାନେ ଉଚ୍ଚାରିତ ହୋଇପାରିବେ ନାହିଁ। ସୁତରାଂ ପ୍, ଫ୍, ବ୍, (ୱ) ଭ୍, ମ୍‌କୁ ଓଷ୍ଠ୍ୟବର୍ଣ୍ଣ କୁହାଯାଏ। ପାଞ୍ଚଟିଯାକ ବର୍ଗର ପଞ୍ଚମବର୍ଣ୍ଣ, ଯଥା—ଙ୍, ଞ୍, ଣ୍, ନ୍, ମ୍‌ର ଦ୍ୱିତୀୟ ଉଚ୍ଚାରଣ ସ୍ଥାନ ନାସିକା ହୋଇଥିବାରୁ ଏଗୁଡ଼ିକୁ ଅନୁନାସିକ ବର୍ଣ୍ଣ କୁହାଯାଏ। ବର୍ଗବର୍ଣ୍ଣମାନଙ୍କୁ ଅନୁଧ୍ୟାନ କଲେ ଅନ୍ୟ ଏକ ବିଶେଷତ୍ୱ ପରିଲକ୍ଷିତ ହୁଏ। ବର୍ଗର ପ୍ରଥମ ବର୍ଣ୍ଣର ଧ୍ୱନି କୋମଳ। ପ୍ରଥମ ବର୍ଣ୍ଣରୁ ପଞ୍ଚମ ବର୍ଣ୍ଣ ଆଡ଼କୁ ଯେତିକି ଗତି କରିବ, କୋମଳତା ଧୀରେ ଧ’ରେ କର୍କଶତାରେ ପରିଣତ ହେବ ଏବଂ କର୍କଶ କର୍କଶତର ହୋଇ କର୍କଶତମରେ ସମାପ୍ତ ହେବ।

ସଂସ୍କୃତ ବର୍ଣ୍ଣମାଳାରେ ଏଗାରଟି ଅବର୍ଗୀୟବର୍ଣ୍ଣ ଥାଏ। ଯ୍, ର୍, ଲ୍, ବ,—ଏହି ଚାରୋଟି ଅନ୍ତଃସ୍ଥ ବର୍ଣ୍ଣ। ଯ୍ ତାଳୁରୁ, ର୍ ମୂର୍ଦ୍ଧାରୁ, ଲ୍ ଦାନ୍ତରୁ ଏବଂ ବ (ୱ) ଦନ୍ତୌଷ୍ଠରୁ ଉଚ୍ଚାରିତ ହୁଏ। ବର୍ଗ୍ୟ ବ (ୱ) ଉଚ୍ଚାରିତ ହେଉଥିବାବେଳେ ଓଠକୁ ଓଠ ଲାଗିଯାଏ, କିନ୍ତୁ ଅବର୍ଗ୍ୟ ବ (ୱ) ଉଚ୍ଚାରିତ ହେଉଥିବାବେଳେ ତଳ ଓଠ ଉପର ଦାନ୍ତରେଲାଗି ଖୋଲିଯାଏ ଏବଂ ପବନ ବାହାରି ଯାଏ। ସୁତରାଂ ଅବର୍ଗ୍ୟ ବ’କୁ ଦନ୍ତୌଷ୍ଠ୍ୟ ବର୍ଣ୍ଣ କୁହାଯାଏ। ଶ୍, ଷ୍, ସ୍, ହ୍,—ଏହି ଚାରୋଟି ଉଷ୍ମବର୍ଣ୍ଣ। ଉଚ୍ଚାରଣ ବେଳେ ବାୟୁର ପ୍ରାଧାନ୍ୟ ଥିବାରୁ ଏଗୁଡ଼ିକୁ ଉଷ୍ମବର୍ଣ୍ଣ କୁହାଯାଏ। ତାଳବ୍ୟ ଶ୍ ତାଳୁରୁ, ମୂର୍ଦ୍ଧନ୍ୟ ଷ୍ ମୂର୍ଦ୍ଧାରୁ, ଦନ୍ତ୍ୟ ସ୍ ଦନ୍ତରୁ ଏବଂ ହ୍ କଣ୍ଠରୁ ଉଚ୍ଚାରିତ ହୁଏ। ଲକ୍ଷ୍ୟ କରିବାର କଥା ଯେ, ‘ହସିବା’, ‘ବସିବା’, ‘ସନ୍ତାନ’, ଇତ୍ୟାଦି, ଶବ୍ଦରେ ଥିବା ସ’କୁ ତଳ ଓ ଉପର ଦାନ୍ତ ନ ଲଗାଇଲେ ଉଚ୍ଚାରଣ କରାଯାଇ ପାରିବ ନାହିଁ। ‘ଶ୍ୟାମଳ’, ‘ଶୈବାଳ’, ‘ଶିଶୁ’, ଇତ୍ୟାଦି, ଶବ୍ଦରେ ଥିବା ଶ’କୁ ଉଚ୍ଚାରଣ କଲାବେଳେ ତଳ ଓ ଉପର ଦାନ୍ତ ନ ଲାଗି ମେଲା ରହେ, ଜିଭ ତାଳୁରେ ଲାଗେ ଏବଂ ପବନ ବାହାରେ। ଜିଭକୁ ତାଳୁରେ ନ ଲଗାଇଲେ ତାଳବ୍ୟ ଶ’କୁ ଉଚ୍ଚାରଣ କରି ହେବ ନାହିଁ। ‘ହର୍ଷ’, ‘କୃଷକ’, ‘ଔଷଧ’, ‘ଭୀଷଣ, ଇତ୍ୟାଦି, ଶବ୍ଦରେ ଥିବା ଷ’ର ଧ୍ୱନି ବଡ଼ କର୍କଶ ଏବଂ ଏହି ଷ’କୁ ଉଚ୍ଚାରଣ କଲାବେଳେ ମୁଣ୍ଡର ବ୍ରହ୍ମରନ୍ଧ୍ର ପାଖରେ ଥିବା ମସ୍ତିଷ୍କର ମୂର୍ଦ୍ଧା ସ୍ପନ୍ଦିତ ହୁଏ। ଅଯୋଗବାହ ବର୍ଣ୍ଣ ତିନୋଟି—ଅନୁସ୍ୱାର (ଂ), ବିସର୍ଗ (ଃ) ଓ ଚନ୍ଦ୍ରବିନ୍ଦୁ (ଁ)। ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣର ଆଶ୍ରୟ ବିନା ଉଚ୍ଚାରିତ ହୋଇ ନ ପାରିବାରୁ ଏଗୁଡ଼ିକୁ ଅଯୋଗବାହ ବର୍ଣ୍ଣ କୁହାଯାଏ। ଏଗୁଡ଼ିକ ମଧ୍ୟରୁ ଅନୁସ୍ୱାର ଓ ଚନ୍ଦ୍ରବିନ୍ଦୁ ଅନୁନାସିକ ବର୍ଣ୍ଣ ଏବଂ ବିସର୍ଗ ତା’ର ପୂର୍ବରେ ଥିବା ବର୍ଣ୍ଣର ଉଚ୍ଚାରଣ ସ୍ଥାନକୁ ଅନୁସରଣ କରେ।

ଦେବନାଗରୀ ଲିପିରେ ରେଫ୍ (ˊ) ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣର ପୂର୍ବବର୍ତ୍ତୀ ର୍ ବଦଳରେ ବ୍ୟବହୃତ ହୁଏ ଏବଂ ଏହା ପରବର୍ତ୍ତୀ ବ୍ୟଞ୍ଜନ ବର୍ଣ୍ଣରେ ମିଶିଲେ ରେଫ୍ (ˊ) ହୋଇ ଯୁକ୍ତ ହୁଏ। ହଲନ୍ତ (୍) ଅନ୍ୟ ଏକ ଚିହ୍ନ, ଯାହା ସ୍ୱରହୀନ ବ୍ୟଞ୍ଜନ ବର୍ଣ୍ଣଗୁଡ଼ିକୁ ପ୍ରକାଶ କରିବାରେ ସାହାଯ୍ୟ କରେ। ଜଗତ୍, ବିଦ୍ୟୁତ୍, ଇତ୍ୟାଦି ଶବ୍ଦରେ ବ୍ୟଞ୍ଜନ ବର୍ଣ୍ଣର ପୂର୍ବରୁ ସ୍ୱରବର୍ଣ୍ଣ ଥିବାରୁ ହଲନ୍ତଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ ଉଚ୍ଚାରିତ ହୋଇ ପାରେ।

ଓଡ଼ିଆ ଭାଷାର ବର୍ଣ୍ଣମାଳାରେ ସଂସ୍କୃତ ଠାରୁ କିଛି ପାର୍ଥକ୍ୟ ପରିଲକ୍ଷିତ ହୁଏ। ଌ ଧ୍ୱନି ଓଡ଼ିଆରେ ପ୍ରଚଳିତ ହୁଏ ନାହିଁ। ସଂସ୍କୃତରେ ମଧ୍ୟ ଏହାର ପ୍ରଚଳନ ବହୁଳ ନୁହେଁ। ସୁତରାଂ ଓଡ଼ିଆ ଲିପିରୁ ଌ ବର୍ଣ୍ଣକୁ ବାଦ ଦିଆଯାଏ। ଋ ଓ ୠ ବର୍ଣ୍ଣ ଦୁଇଟିର ଉଚ୍ଚାରଣ ସଂସ୍କୃତରେ ଯେପରି ହୋଇଥାଏ, ଓଡ଼ିଆରେ କିମ୍ବା ଅନ୍ୟ କୌଣସି ଆଧୁନିକ ଭାରତୀୟ ଭାଷାରେ ସେପରି ହୁଏ ନାହିଁ। ଓଡ଼ିଆରେ ‘ଋଷି’ କୁ ‘ରୁଷି’ ଓ ‘କୃଷ୍ଣ’ କୁ ‘କ୍ରୁଷ୍ଣ’ ଭାବରେ ଉଚ୍ଚାରଣ କରାଯାଏ। ବଙ୍ଗଳା, ହିନ୍ଦୀ, ଇତ୍ୟାଦି, ଭାଷାରେ ରିଷି ଓ କ୍ରିଷ୍ଣ ଭାବରେ ଉଚ୍ଚାରଣ କରାଯାଏ। ଋ ଏକ ସ୍ୱରବର୍ଣ୍ଣ। ସଂସ୍କୃତରେ ଏହାକୁ ଉଚ୍ଚାରଣ କଲାବେଳେ ଜିହ୍ୱାଗ୍ର ତାଳୁରେ କମ୍ପନ କରେ ଏବଂ ମସ୍ତିଷ୍କର ମୂର୍ଦ୍ଧାରୁ ଏ ଧ୍ୱନି ବାହାରେ। ଋ ବର୍ଣ୍ଣରେ ଇ, ଉ ବା ଅନ୍ୟ କୌଣସି ସ୍ୱରବର୍ଣ୍ଣ ଯୋଗ କରିବା ନିଷିଦ୍ଧ। ବ୍ୟଞ୍ଜନ ବର୍ଣ୍ଣରେ ସ୍ୱରବର୍ଣ୍ଣ ଯୋଗ କରାଯାଏ, ମାତ୍ର ସ୍ୱର

ଶେଷରେ ସ୍ୱରବର୍ଣ୍ଣ ଯୋଗ କରାଯାଏ ନାହିଁ । ଅତଏବ ଓଡ଼ିଆ ବର୍ଣ୍ଣମାଳାରୁ ଋ ଓ ଌ ବର୍ଣ୍ଣ ଦୁଇଟିକୁ କାଢ଼ି ଦିଆଯାଇ ପାରେ । ଅବଶ୍ୟ ଏହା କଲେ ଗୋଟିଏ ଅସୁବିଧା ହେବ । ଋ ଓ ଌ ବିନା ଓଡ଼ିଆ ଭାଷା ଲେଖି ହେବ । କିନ୍ତୁ ସଂସ୍କୃତ ଓ ପୁରାତନ ଭାରତୀୟ ଶ୍ଳୋକକୁ ଲିଖିତ ଆଲୋଚନା କଲାବେଳେ ଓଡ଼ିଆ ବର୍ଣ୍ଣମାଳାରେ ତ୍ରୁଟି ରହିଯିବ । ଏତିକି ମାତ୍ର କରାଯାଇ ପାରେ—ଓଡ଼ିଆ ବର୍ଣ୍ଣମାଳାରେ ଋ ଓ ଌ ବର୍ଣ୍ଣ ଦୁଇଟିକୁ ରଖା ଯାଇପାରେ ଏବଂ କେବଳ ସଂସ୍କୃତବାକ୍ୟ ଲେଖିବା ପାଇଁ ଏଗୁଡ଼ିକର ବ୍ୟବହାର ସୀମିତ ରଖା ଯାଇପାରେ । ଓଡ଼ିଆରେ ଡ଼ ଓ ଢ଼ ବର୍ଣ୍ଣ ଦୁଇଟି ଯଥାକ୍ରମେ ଡ ଓ ଢ ବର୍ଣ୍ଣର ରୂପାନ୍ତର । ଶବ୍ଦର ପ୍ରଥମରେ ଡ ଓ ଢ ରହେ । ଶବ୍ଦର ମଝିରେ କିମ୍ବା ଅନ୍ତରେ ଡ଼ ଓ ଢ଼ ରହେ । ଡବା, ଡମ୍ବରୁ, ଢମ, ଢଙ୍ଗ, ଢଗ, ଢେଙ୍କାନାଳ, ବଡ଼, ଗଡ଼, ଷଢ଼, ଗଢ଼, ବଢ଼ି, ଇତ୍ୟାଦି ଶବ୍ଦ ଗୁଡ଼ିକର ଧ୍ୱନିକୁ ଅନୁଧ୍ୟାନ କଲେ ଓଡ଼ିଆ ବର୍ଣ୍ଣମାଳାରେ ଡ ଓ ଢ ତଳେ ବିନ୍ଦୁ ରଖିବାର ଆବଶ୍ୟକତା ଅନୁଭୂତ ହୁଏ । ହିନ୍ଦୀ ଭାଷାରେ ମଧ୍ୟ ଓଡ଼ିଆ ପରି ଉକ୍ତ ଧ୍ୱନିମାନଙ୍କର ପ୍ରଚଳନ ଅଛି । ଓଡ଼ିଆ ବର୍ଣ୍ଣମାଳାର ଯ ଏକ ଅନାବଶ୍ୟକ ବର୍ଣ୍ଣ । ସଂସ୍କୃତରେ ଏପରି କୌଣସି ଧ୍ୱନି କିମ୍ବା ବର୍ଣ୍ଣ ନାହିଁ । ସଂସ୍କୃତରେ ଯେଉଁ ଶବ୍ଦର ପ୍ରଥମରେ ୟ ଥାଏ, ଓଡ଼ିଆରେ ତାହା ଯ ହୋଇ ଯାଏ । ସଂସ୍କୃତରେ ୟୋଗ, ୟମୁନା, ୟମ, ୟତ୍ନ ଶବ୍ଦକୁ ଓଡ଼ିଆରେ ଯଥାକ୍ରମେ ଯୋଗ, ଯମୁନା, ଯମ, ଯତ୍ନ ବୋଲି କୁହାଯାଏ । ଏପରି ଶବ୍ଦର ପୂର୍ବରେ କୌଣସି ଉପସର୍ଗ ବସିଲେ (ଯଥା—ନିୟୁକ୍ତ, ପ୍ରୟତ୍ନ, ସଂୟମ, ଅଭିୟୋଗ), ୟ ଶବ୍ଦର ମଝିରେ ରହି ଗଲେ ସୁଦ୍ଧା ତଥାପି ଓଡ଼ିଆରେ ଯ ହୋଇ ରହେ । ଆଉ ମଧ୍ୟ ୟ ରେଫ୍ ଯୁକ୍ତ ହେଲେ ଓଡ଼ିଆରେ ଯ ହୋଇ ଯାଏ ଏବଂ ଅନ୍ୟ ଏକ ୟ'ର ଆଗମ ହୁଏ । ଏହି ନିୟମ ଅନୁସାରେ ସଂସ୍କୃତର କାର୍ୟ, ଅନିବାର୍ୟ, ଧାର୍ୟ ଓଡ଼ିଆରେ ଯଥାକ୍ରମେ କାର୍ଯ୍ୟ, ଅନିବାର୍ଯ୍ୟ, ଧାର୍ଯ୍ୟ ହୋଇଥାଏ । ବାସ୍ତବରେ ଓଡ଼ିଆରେ ଯ ପାଇଁ କୌଣସି ପୃଥକ ଧ୍ୱନି ନାହିଁ । ଯେଉଁ ଧ୍ୱନିର ପ୍ରତୀକ ବର୍ଣ୍ଣ ଜ, ଅବିକଳ ସେହି ଧ୍ୱନି ପାଇଁ ମଧ୍ୟ ଯ ବ୍ୟବହୃତ ହୁଏ । ହିନ୍ଦୀରେ ଯମୁନା ଓ ସୂର୍ଯ୍ୟ ଶବ୍ଦର ବିକଳ୍ପ ବ୍ୟବହାର ଜମୁନା ଓ ସୂରଜ୍ ହୋଇଥାଏ । ୟ ଜ ଭାବରେ ଉଚ୍ଚାରିତ ହେଲେ ୟ ଜ ଦ୍ୱାରା ପ୍ରତିସ୍ଥାପିତ ହୁଏ । ସୁତରାଂ ଓଡ଼ିଆରେ ଯ ଗୋଟିଏ ଫାଲ୍ତୁ ବର୍ଣ୍ଣ ଏବଂ ଏହାର କୌଣସି ଆବଶ୍ୟକତା ନାହିଁ । ବର୍ଣ୍ଣମାଳାରୁ ଏହି ଅଦରକାରୀ ବର୍ଣ୍ଣଟିକୁ ନିର୍ବିଘ୍ନରେ ବାଦ୍ ଦିଆଯାଇ ପାରେ । ଓଡ଼ିଆରେ ଳ ଏକ ପ୍ରଚଳିତ ଧ୍ୱନି । ଏହି ଧ୍ୱନି ସଂସ୍କୃତ, ବଙ୍ଗଳା, ହିନ୍ଦୀ, ଇତ୍ୟାଦି ଭାଷାରେ ନାହିଁ । ସୁତରାଂ ଳ ବର୍ଣ୍ଣକୁ ଓଡ଼ିଆରେ ରଖିବା ଅପରିହାର୍ଯ୍ୟ ହୋଇ ପଡ଼ୁଛି । ଅନ୍ତଃସ୍ଥ ବ (व) ସଂସ୍କୃତରେ, ହିନ୍ଦୀରେ ଏବଂ ଅନ୍ୟାନ୍ୟ ଅନେକ ଭାରତୀୟ ଭାଷାରେ ବହୁଳ ଭାବରେ ପ୍ରଚଳିତ ହୁଏ । କେବଳ ଓଡ଼ିଆ, ବଙ୍ଗଳା ଓ ଆସାମୀ ଭାଷାରେ ଏହାର ପ୍ରଚଳନ ନାହିଁ । ବାସ୍ତବରେ ତୁଳନାତ୍ମକ ଦୃଷ୍ଟିରୁ ସଂସ୍କୃତରେ ଅନ୍ତଃସ୍ଥ ବ (व) ର ପ୍ରଚଳନ ବହୁଳ ଏବଂ ବର୍ଗ୍ୟ ବ (ब) ର ପ୍ରଚଳନ ବିରଳ । ସଂସ୍କୃତ କିମ୍ବା ହିନ୍ଦୀର ଦେବତା (व), ବାଣୀ (वा), ବେଦ (वे), ଇତ୍ୟାଦି ଶବ୍ଦକୁ ଓଡ଼ିଆରେ ଠିକ୍ ଭାବରେ ଉଚ୍ଚାରଣ କରାଯାଇ ପାରେ ନାହିଁ । ଏହି ଶବ୍ଦମାନଙ୍କରେ ଥିବା ବ'କୁ ଓଡ଼ିଆମାନେ ଉଚ୍ଚାରଣ କଲାବେଳେ ଦୁଇ ଓଠ ଲଗେଇ ଦିଅନ୍ତି, ଯଦିଓ ଅନ୍ତଃସ୍ଥ ବ ଓଷ୍ଠଦନ୍ତ୍ୟ ବର୍ଣ୍ଣ । ବଡ଼ ବିଚିତ୍ର କଥା ଯେ, ଓଡ଼ିଆ ବର୍ଣ୍ଣମାଳାରେ ସେଇ ଏକା ବର୍ଣ୍ଣଟି ଏକା ଧ୍ୱନି ନେଇ ବର୍ଗ୍ୟ ବ ଓ ଅବର୍ଗ୍ୟ ବ ଭାବରେ ଦେଖା ଦିଏ । ଅବଶ୍ୟ ଦେବନାଗରୀକୁ ଅନୁକରଣ କରି ଏପରି କରାଯାଇଛି । କିନ୍ତୁ ଲକ୍ଷ୍ୟ ରଖିବାର କଥା ଥିଲା ଯେ, ସଂସ୍କୃତରେ ब ଓ व ଦୁଇଟି ଭିନ୍ନ ଭିନ୍ନ ଅକ୍ଷର ଏବଂ ଏମାନେ ଭିନ୍ନ ଭିନ୍ନ ଧ୍ୱନିର ପ୍ରତୀକ । ସ୍ଥୂଳତଃ ବିଷୟର ଦୃଷ୍ଟିରୁ ଅବର୍ଗ୍ୟ ବ ଅକ୍ଷରଟିକୁ ଓଡ଼ିଆ ବର୍ଣ୍ଣମାଳାରୁ କାଢ଼ି ନିଆଗଲେ କିଛି ଅସୁବିଧା ହେବ ନାହିଁ । କିନ୍ତୁ ସୂକ୍ଷ୍ମତଃ ବିଚାର କଲେ ଅବର୍ଗ୍ୟ ବ'କୁ ବାଦ୍ ଦେଇଦେଲେ ଓଡ଼ିଆ ବର୍ଣ୍ଣମାଳାରେ ଏକ ଅଭାବ ରହିଯିବ । ହିନ୍ଦୀ, ଉର୍ଦ୍ଦୁ, ଇଂରାଜୀ, ଇତ୍ୟାଦି ଭାଷାର ଅନେକ ଶବ୍ଦ ଆଜି ଓଡ଼ିଆରେ ବ୍ୟବହୃତ ହେଉଛି । ହାଓ୍ୱା, ଆଓ୍ୱାଜ, ଦେଓ୍ୱାନ୍, ଓ୍ୱାସିଙ୍ଗଟନ୍, ଇତ୍ୟାଦି ଶବ୍ଦକୁ ଓଡ଼ିଆରେ ଲେଖିଲା ବେଳେ ଅବର୍ଗ୍ୟ ବ ଜାଗାରେ ଓ ତଳେ ବ ଫଳା ଦିଆ ହେଉଛି । ଧ୍ୱନିବିଜ୍ଞାନ ଦୃଷ୍ଟିରୁ ଏପରି ଲେଖିବା ଅବୈଜ୍ଞାନିକ । ସ୍ୱରବର୍ଣ୍ଣରେ ଏକ ବ୍ୟଞ୍ଜନବର୍ଣ୍ଣ (ବଫଳା) ଯୋଗ କରିବା ନିଷିଦ୍ଧ । ପୁନଶ୍ଚ ଅବର୍ଗ୍ୟ ବ୍ ଏକ ବ୍ୟଞ୍ଜନବର୍ଣ୍ଣ, ଏଥିରେ ସ୍ୱରବର୍ଣ୍ଣ ନାହିଁ ଏବଂ ଏହା ମାତ୍ର ଗୋଟିଏ ମୌଳିକ ଧ୍ୱନିର ପ୍ରତୀକ । ଓ୍ୱ (ଓ+ବ) ଦୁଇଟି ବର୍ଣ୍ଣର ସଂଯୋଗରେ ଉତ୍ପନ୍ନ ହୋଇଥିବା ପରି ଦେଖାଯାଏ । ଈଶ୍ୱର, ବିଶ୍ୱ, ବିଲ୍ୱ, କ୍ୱଚିତ୍, ଇତ୍ୟାଦି ଶବ୍ଦମାନଙ୍କରେ ଯେଉଁ ବ ଫଳା ଲାଗିଥାଏ, ତା'ର ଉଚ୍ଚାରଣ ଓଷ୍ଠଦନ୍ତ୍ୟ ଏବଂ ଏହା

ଅବର୍ଗ୍ୟ । ଦୁଇଟି ଠ ଲାଗି ଗଲେ (ବର୍ଗ୍ୟ ବ ହୋଇ ଥିଲେ) ଶ୍ବ, ଲ୍ବ, ଳ କୁ ଉଚ୍ଚାରିତ ହୋଇ ପାରିବ ନାହିଁ । ଅତଏବ ଏହି ଭାଷାମାନଙ୍କରେ ଏପରିକି ଓଡ଼ିଆ ଭାଷାରେ ମଧ୍ୟ ଅବର୍ଗ୍ୟ ବ'ର ଠିକ୍ ଉଚ୍ଚାରଣ ହୁଏ । ଜିରେଭ, ଅଭିଳା, ଅବ, ଇତ୍ୟାଦି ଶବ୍ଦରେ ଯେଉଁ ବ ଲେଖା ଯାଉଛି, ସେଟି ବର୍ଗ୍ୟ ବ । ଦୁଇ ଠ ନ ଲଗାଇଲେ ଏହି ବ ଉଚ୍ଚାରିତ ହୋଇ ପାରିବ ନାହିଁ । ଏପରି ସ୍ଥଳେ ଅବ ଓ ବିଶ୍ୱ ଶବ୍ଦ ଦୁଇଟିରେ ଏହା ଭଳି ଦେଖା ଯାଉଥିବା ବ ଫଳାର ପ୍ରୟୋଗ ଅପମାନ୍ୟ । ଏହି ବିଶ୍ଳେଷଣରୁ ଯାହା ନିଷ୍କର୍ଷ ମିଳୁଛି, ଓଡ଼ିଆ ବର୍ଣ୍ଣମାଳାରେ ଦୁଇଟି ବ ରହିବା ଅତ୍ୟାବଶ୍ୟକ । ବର୍ଗ୍ୟ ବ'ର ତଳ ଅଂଶଟିରେ ଏକ ତେର୍ଯ୍ୟକ୍ ରେଖା ଟାଣି ଦେଲେ ସମସ୍ୟାର ସମାଧାନ ହୋଇଯିବ । ଓଡ଼ିଆ ବର୍ଣ୍ଣମାଳାରେ କ୍ଷ ଅନାବଶ୍ୟକ ବର୍ଣ୍ଣ । ଦେବନାଗରୀରେ ଏହି ବର୍ଣ୍ଣଟି ଅଛି । ବାସ୍ତବରେ ଏହା ଦୁଇଟି (କ୍+ଷ) ବ୍ୟଞ୍ଜନ ବର୍ଣ୍ଣର ସଂଯୋଗରେ ଉତ୍ପନ୍ନ ହୋଇଛି । ଇଂରାଜୀର X ବର୍ଣ୍ଣ ଯେଉଁ ଧ୍ୱନି ପାଇଁ ଉଦ୍ଦିଷ୍ଟ, ଦେବନାଗରୀର କ୍ଷ ବର୍ଣ୍ଣ ସଦୃଶ ଧ୍ୱନିର ପ୍ରତୀକ । ଓଡ଼ିଆରେ କ୍ଷ ବର୍ଣ୍ଣ ଥିଲେ ହୁଏ ଏହାର ଉଚ୍ଚାରଣ ତ୍ରୁଟିପୂର୍ଣ୍ଣ । ଓଡ଼ିଆରେ ପକ୍ଷ (ପକ୍‌ଷ) ର ଉଚ୍ଚାରଣ ପଖ୍ୟ, ପକ୍ଷୀର ଉଚ୍ଚାରଣ ପଖୀ ଏବଂ କ୍ଷୁଦ୍ରର ଉଚ୍ଚାରଣ ଖ୍ୟୁଦ୍ର ହୋଇଥାଏ । "ପାଞ୍ଚ ଲକ୍ଷ ଲୋକ" ଓ "ତୁମର ଲକ୍ଷ୍ୟ କାହିଁ", ଏହି ଦୁଇଟି ପ୍ରୟୋଗରେ ଦୁଇଟି ଭିନ୍ନ ଭିନ୍ନ ଶବ୍ଦର ଉଚ୍ଚାରଣ ଅଭିନ୍ନ । କ୍ଷ ଏକ ମୌଳିକ ଅକ୍ଷର ନ ହୋଇଥିବାରୁ ଏହାକୁ ବର୍ଣ୍ଣମାଳାରୁ କାଢ଼ି ଦିଆ ଯାଇପାରିବ ଏବଂ ଏହା ବଦଳରେ କ୍‌ଷ ଲେଖି ହେବ । ବାକ୍‌ସ, (କାର୍ଲ୍) ମାର୍କ୍‌ସ୍ ନକ୍‌ସା ଓ ସାକ୍‌ସେନା, ଇତ୍ୟାଦି ଶବ୍ଦକୁ ଓଡ଼ିଆ ଓ ହିନ୍ଦୀରେ ଯଥାକ୍ରମେ ବାକ୍ସ, ମାର୍କ୍ସ୍, ନକ୍ସା ଓ ସାକ୍ସେନା ଭାବରେ ଲେଖା ଯାଉଛି । ଏପରି ଲେଖିବା ଭୁଲ୍ । କାରଣ କ୍ଷ ଉଚ୍ଚାରିତ ହେବା ବେଳେ ତଳ ଓ ଉପର ଦାନ୍ତ ବାଜେ ନାହିଁ । ଏବଂ ଷ ମୂର୍ଦ୍ଧାରୁ ଉତ୍ପନ୍ନ ହୁଏ ।

ଅଧିକାଂଶ ବର୍ଗ୍ୟ ବ୍ୟଞ୍ଜନବର୍ଣ୍ଣର ପଞ୍ଚମ ବର୍ଣ୍ଣ (ଙ୍, ଞ୍, ଣ୍, ନ୍, ମ୍) କୁ ଉଠେଇ ଦେଇ ତା ବଦଳରେ ଅନୁସ୍ୱାର ଲେଖା ଯାଉଛି । ଏହି ପଦ୍ଧତିକୁ ହିନ୍ଦୀ ଭାଷା ଗ୍ରହଣ କରି ନେଇଛି ଏବଂ ଓଡ଼ିଆର ଅନେକ ଲେଖକ ଗ୍ରହଣ କରିଛନ୍ତି । କିନ୍ତୁ ଧ୍ୱନିତତ୍ତ୍ୱ ଦୃଷ୍ଟିରୁ ଦେଖିବାକୁ ଗଲେ ଏହା ଅବୈଜ୍ଞାନିକ । ପଞ୍ଚମ ବର୍ଣ୍ଣ ସଂଖ୍ୟାରେ ପାଞ୍ଚଟି ; ପ୍ରତ୍ୟେକ ପଞ୍ଚମ ବର୍ଣ୍ଣର ଧ୍ୱନି ଅନ୍ୟଠାରୁ ପୃଥକ୍ ଏବଂ ସେହି ଧ୍ୱନିର ଉତ୍ପତ୍ତିସ୍ଥଳ ପାଞ୍ଚଟି ଭିନ୍ନ ଭିନ୍ନ ସ୍ଥାନ ଯଦିଓ ଏମାନେ ସମସ୍ତେ ମଧ୍ୟ ଅନୁନାସିକ । ଙ୍ କଣ୍ଠ ଓ ନାସିକାରୁ, ଞ୍ ତାଳୁ ଓ ନାସିକାରୁ, ଣ୍ ମୂର୍ଦ୍ଧା ଓ ନାସିକାରୁ ନ୍ ଦନ୍ତ ଓ ନାସିକାରୁ ଏବଂ ମ୍ ଓଷ୍ଠ ଓ ନାସିକାରୁ ଉଚ୍ଚାରିତ ହୋଇ ଥାଆନ୍ତି । ମାତ୍ର ଅନୁସ୍ୱାର କେବଳ ଅନୁନାସିକ । ଏପରିସ୍ଥଳେ ପାଞ୍ଚଟି ବିଭିନ୍ନ ଧ୍ୱନିକୁ ଅନ୍ୟ ଏକ ଭିନ୍ନ ଧ୍ୱନି ଦ୍ୱାରା ପ୍ରତିସ୍ଥାପନ (Substitution) କିପରି କରିହେବ ? କେତୋଟି ଉଦାହରଣ ନିଆଯାଉ । ଏଠାରେ ଶବ୍ଦରେ ଅନୁସ୍ୱାର ଧ୍ୱନି ଯାଉ,, ଅଙ୍କ, ସଙ୍ଗ, ମଞ୍ଚ, ଧଞ୍ଜ, କଣ୍ଠ, ମୁଣ୍ଡ, ଦନ୍ତ, ଅନ୍ଧି, କମ୍ପ, ଲମ୍ବ, ଇତ୍ୟାଦି ଶବ୍ଦରେ ପଞ୍ଚମ ବର୍ଣ୍ଣର ଧ୍ୱନି ତାହା ନୁହେଁ । ଅଙ୍କ ଓ ଅଂକ, ସଂଜ୍ଞ ଓ ସଞ୍ଜ୍ଞ, କଂଠ ଓ କଣ୍ଠ, ଦଂତ ଓ ଦନ୍ତ, ଲମ୍ବ ଓ ଲମ୍ବ, ଇତ୍ୟାଦି ଶବ୍ଦ ଯୁଗଳର ଉଚ୍ଚାରଣ ଏକା ନୁହେଁ । ଆନ୍ୟ ଏକ ବିଷୟ ପ୍ରତି ଧ୍ୟାନ ଦେବା ଦରକାର । କ୍, ଖ୍, ଗ୍, ଘ୍, ଙ୍, କଣ୍ଠରୁ ଉଚ୍ଚାରିତ ହେଉଥିବାରୁ ପ୍ରଥମ ଚାରୋଟି ବର୍ଣ୍ଣ କେବଳ ଙ୍ ସହିତ ଯୁକ୍ତ ହୋଇ ପାରିବେ । ସେହିପରି ଚ୍, ଛ୍, ଜ୍, ଝ୍, ଞ୍ ତାଳୁରୁ ଉଚ୍ଚାରିତ ହେଉଥିବାରୁ ଚ ବର୍ଗର ପ୍ରଥମ ଚାରିବର୍ଣ୍ଣ ଞ୍ ସହିତ ଯୁକ୍ତ ହୋଇ ପାରିବେ । ଟ୍, ଠ୍, ଡ୍, ଢ୍, ଣ୍ ମୂର୍ଦ୍ଧାରୁ ଉଚ୍ଚାରିତ ହେଉଥିବାରୁ ଟ୍ ବର୍ଗର ପ୍ରଥମ ଚାରି ବର୍ଣ୍ଣ କେବଳ ଣ୍ ସହିତ ଯୁକ୍ତ ହୋଇ ପାରିବେ । ତ୍, ଥ୍, ଦ୍, ଧ୍, ନ୍, ଦନ୍ତରୁ ଉଚ୍ଚାରିତ ହେଉଥିବାରୁ ତ ବର୍ଗର ପ୍ରଥମ ଚାରି ବର୍ଣ୍ଣ କେବଳ ନ୍ ସହିତ ଯୁକ୍ତ ହୋଇପାରିବେ, ଏବଂ ପ୍ ଫ୍ ବ୍, ଭ୍, ମ୍ ଓଷ୍ଠରୁ ଉଚ୍ଚାରିତ ହେଉଥିବାରୁ ପ ବର୍ଗର ପ୍ରଥମ ଚାରି ବର୍ଣ୍ଣ କେବଳ ମ୍ ସହିତ ଯୁକ୍ତ ହୋଇ ପାରିବେ ।

ଆଗରୁ କୁହା ଯାଇଛି, ଧ୍ୱନିତତ୍ତ୍ୱ ଦୃଷ୍ଟିରୁ ସଂସ୍କୃତ ପୃଥିବୀର ଶ୍ରେଷ୍ଠ ଭାଷା । ଆଜି ମଧ୍ୟ ଇଂରାଜୀ, ରୁଷୀ, ଜର୍ମାନୀ, ଫ୍ରେଞ୍ଚ୍, ଇତ୍ୟାଦି, ଅନେକ ବିଦେଶୀ ଭାଷାରେ ଉଚ୍ଚାରଣ ପ୍ରତି ବିଶେଷ ଧ୍ୟାନ ଦିଆଯାଏ । ଦୁଃଖର ବିଷୟ ଏହିଯେ, ଆଧୁନିକ ଭାରତୀୟ ଭାଷାମାନଙ୍କରେ ଉଚ୍ଚାରଣ ପ୍ରତି ବେଶୀ ଧ୍ୟାନ ଦିଆଯାଏ ନାହିଁ । ଓଡ଼ିଆ ଭାଷାରେ ଉଚ୍ଚାରଣ ପ୍ରତି ବିଶେଷ ଅବହେଳା କରାଯାଏ । ଏଠାରେ ଏ ବିଷୟରେ ବିସ୍ତୃତ ଆଲୋଚନା କରା ନଯାଇ ମାତ୍ର ଅଳ୍ପ କେତୋଟି ଉଦାହରଣ ଦିଆ ଯାଉଛି ।

କେତେବେଳେ ବର୍ଣ୍ଣ ଲେଖି ବର୍ନ୍ ଏବଂ ବର୍ଣ୍ଣ ଲେଖି ବର୍ଣ୍ ଉଚ୍ଚାରଣ କରାଯାଏ । ସଂସ୍କୃତର ଣତ୍ୱ ବିଧାନ ଅନୁସାରେ ର୍ ପରେ ନ୍ ଣ୍ ହୋଇଯାଏ । ଉଭୟ ର୍ ଓ ଣ୍ ମୂର୍ଦ୍ଧାରୁ ଉଚ୍ଚାରିତ ହେଉଥିବାରୁ ଉଚ୍ଚାରଣର ସୁବିଧା ପାଇଁ ଏ ଦୁଇଟି ବର୍ଣ୍ଣ ଯୁକ୍ତ ହୋଇପାରିବେ, ମାତ୍ର ନ୍ ଦନ୍ତରୁ ଓ ର୍ ମୂର୍ଦ୍ଧାରୁ ଉଚ୍ଚାରିତ ହେଉଥିବାରୁ ଧ୍ୱନି ଦୁଇଟି ଯୁକ୍ତ ହୋଇପାରିବେ ନାହିଁ ଏହି ଦୁଇ ମୌଳିକ ଧ୍ୱନି ମଧ୍ୟରେ ନିମିଷ ବ୍ୟବଧାନ ହେବା ଅନିବାର୍ଯ୍ୟ । ଧର୍ଷଣ ଓ କୃଷ୍ଣ ଶବ୍ଦ ଦୁଇଟିରେ ଷ ଓ ଉ ପରବର୍ତ୍ତୀ ମୂର୍ଦ୍ଧନ୍ୟଷ ସହିତ ଣ ଯୁକ୍ତ ହେବାକୁ ବାଧ୍ୟ । ଉଭୟ ଷ ଓ ଣ୍ ର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା ଏବଂ ନ୍'ର ଉଚ୍ଚାରଣ ସ୍ଥାନ ଦନ୍ତ ହୋଇଥିବାରୁ ଷ୍ ସହ ନ୍ ନ ଲାଗି ଣ୍ ଲାଗିଥାଏ ।

ଶବ୍ଦର ବର୍ଣ୍ଣରେ ରେଫ୍ ଯୁକ୍ତ ହେଲେ କେତେକ ସ୍ଥାନରେ ବର୍ଣ୍ଣର ଦ୍ୱିତ୍ୱ ହୁଏ । ବର୍ଣ୍ଣ, ପୂର୍ଣ୍ଣ, ପୂର୍ଣ୍ଣିମା, କାର୍ଯ୍ୟ, ମୂର୍ତ୍ତି, କୀର୍ତ୍ତି, ପରିବର୍ତ୍ତନ, ଖର୍ଚ୍ଚ, ନର୍ଦ୍ଦମା, ଇତ୍ୟାଦି ଶବ୍ଦ ଗୁଡ଼ିକ ଏହି ନିୟମକୁ ମାନି ଚଳନ୍ତି । ସଂସ୍କୃତରେ ଓ ହିନ୍ଦିରେ ଏହି ନିୟମ କାର୍ଯ୍ୟ କରେ ନାହିଁ । ବର୍ଣ, ପୂର୍ଣ, ପୂର୍ଣିମା, କାର୍ୟ, ମୂର୍ତି, କୀର୍ତି ଇତ୍ୟାଦି, ବ୍ୟବହାର ସଂସ୍କୃତରେ ଓ ହିନ୍ଦୀରେ ଦେଖିବାକୁ ମିଳେ । ବର୍‌ଣ୍‌ଣ କିମ୍ବା ମୂର୍‌ତ୍‌ତି ଭାବରେ ଓଡ଼ିଆରେ କେହି ଉଚ୍ଚାରଣ କରନ୍ତି ନାହିଁ । 'ବର୍‌ଣ୍‌ଣ' ଶବ୍ଦରେ ଥିବା ଉଭୟ ଣ'କୁ ଉଚ୍ଚାରଣ କରିବା ଅତି କଷ୍ଟକର । ସୁତରାଂ ଉଚ୍ଚାରିତ ହୋଇ ନ ପାରିବା କିମ୍ବା ଅତି କଷ୍ଟରେ ଉଚ୍ଚାରିତ ହୋଇଥିବା ଶବ୍ଦର ବନାନକୁ ଏପରି କ୍ଲିଷ୍ଟ କରିବା ଅବାଞ୍ଛନୀୟ । ପୁନଶ୍ଚ ଣ୍ ତଳେ ଗୋଟିଏ 'ଓ' ଲେଖି ସେହି 'ଓ' କୁ ଣ୍'ର ପ୍ରତୀକ ବୋଲି ଭାବିବ, ଯୁକ୍ତିଯୁକ୍ତ ନୁହେଁ । ଏହି ନିୟମ ଅନୁସାରେ ଅର୍ଦ୍ଧ ଓ ଊର୍ଦ୍ଧ୍ୱ ଶବ୍ଦ ଦୁଇଟିରେ ରେଫ୍ ଥିବାରୁ ଧ୍ ବର୍ଣ୍ଣର ଦ୍ୱିତ୍ୱ ହୋଇଛି । କିନ୍ତୁ ଦ୍+ଧ ମିଳି ଦ୍ଧ ଯୁକ୍ତାକ୍ଷର ହୋଇ ଥିବାରୁ ଏପରି ପ୍ରୟୋଗ ଭୁଲ୍ । ସଂସ୍କୃତରେ ଓ ହିନ୍ଦୀରେ ଅର୍ଧ ଓ ଊର୍ଧ୍ୱ ଲେଖାଯାଏ ।

କେତୋଟି ଶବ୍ଦରେ ରେଫ୍ ନଥିଲେ ସୁଦ୍ଧା ଓଡ଼ିଆରେ ଲୋକେ ଲେଖିଲା ବେଳେ ଭୁଲ୍‌ରେ ରେଫ୍ ଯୋଗ କରିଦିଅନ୍ତି ଏବଂ ରେଫ୍ ଦେଇ ଲେଖିଲେ କି ନ ଲେଖିଲେ ମଧ୍ୟ ର୍ ଉଚ୍ଚାରଣ କରନ୍ତି । ବିଷଣ୍‌ଣ ଓ କ୍ଷୁଣ୍‌ଣ ଶବ୍ଦ ଦୁଇଟିକୁ ଅନେକେ ବିଷର୍ଣ୍ଣ ଓ କ୍ଷୁର୍ଣ୍ଣ ଲେଖି ଥାଆନ୍ତି, ଏବଂ ବିଷର୍‌ନ ଓ ଖ୍ୟାର୍‌ନ ଭାବରେ ଉଚ୍ଚାରଣ କରି ଥାଆନ୍ତି । ବିଷଣ୍‌ଣ ଶବ୍ଦଟିର ପ୍ରକୃତି ପ୍ରତ୍ୟୟ କଲେ ବି—ସଦ୍+ତ ହୋଇଥାଏ । ଏଠାରେ ର୍ ଆଗମ ହେବାର ପ୍ରଶ୍ନ ଉଠି ପାରେନା । ଜଗନ୍ନାଥ ଓ ଅନ୍ନ, ଇତ୍ୟାଦି, ଶବ୍ଦ ଲେଖିଲା ବେଳେ ଲୋକେ ବନାନ ଠିକ୍ କରି ଥାଆନ୍ତି, ମାତ୍ର ଉଚ୍ଚାରଣ ଭୁଲ୍ କରି ଥାଆନ୍ତି । 'ଜଗନ୍‌ନାଥ'କୁ ଜଗର୍ନାଥ ଓ 'ଅନ୍‌ନ'କୁ ଅର୍ନ୍ ଭାବରେ ଉଚ୍ଚାରଣ କରାଯାଇ ଥାଏ ।

କେତେକ ଶବ୍ଦକୁ ଓଡ଼ିଆରେ ଠିକ୍ ଭାବରେ ଲେଖାଯାଏ, କିନ୍ତୁ ଭୁଲ୍ ଭାବରେ ଉଚ୍ଚାରଣ କରାଯାଏ । କୃଷ୍ଣ (କୃଷ୍‌ଣ) କୁ କୃଷ୍‌ନ୍, କୃଷ୍ଣଂ କିମ୍ବା କୃଷ୍ଟଂ ଭାବରେ ଉଚ୍ଚାରଣ କରାଯାଏ । ସେହିପରି ଉଷ୍ଣ ଉଷ୍ଟଂ ହୋଇଯାଏ । 'ପଦ୍‌ମ' କୁ ଅନେକେ 'ପଦ୍ଦଂ' ଭାବରେ ଉଚ୍ଚାରଣ କରନ୍ତି । ଚିହ୍ନ (ଚିହ୍‌ନ) ଓ କାହ୍ନୁ (କାହ୍‌ନୁ) ଲେଖିବା ସତ୍ତ୍ୱେ ଲୋକେ ଚିନ୍‌ହ ଓ କାନ୍‌ହୁ ଉଚ୍ଚାରଣ କରନ୍ତି । ଉତ୍‌ସବ (ଉତ୍ସବ) ଚିକିତ୍‌ସା (ଚିକିତ୍ସା) ଓ ଜ୍ୟୋତ୍‌ସ୍ନା (ଜ୍ୟୋତ୍ସ୍ନା) ଲେଖା ଯାଉଥିଲା ବେଳେ ଉଚ୍ଚାରଣ ଯଥାକ୍ରମେ ଉଚ୍‌ଛବ (ଉଚ୍ଛବ), ଚିକିଚ୍‌ଛା ଓ ଜ୍ୟୋଛ୍‌ନା ହୋଇଥାଏ । ବେଳେ ବେଳେ ଉଦ୍ୟକୁ ଉଯ୍ୟ ଓ ସଦ୍ୟକୁ ସଯ୍ୟ ଭାବରେ ଉଚ୍ଚାରଣ କରାଯାଇ ଥାଏ ।

ଓଡ଼ିଆରେ ଏବଂ ଅନେକ ଆଧୁନିକ ଭାରତୀୟ ଭାଷାରେ 'ଜ୍ଞ' ଅକ୍ଷରଟିର ଆବଶ୍ୟକତା ନାହିଁ । ସଂସ୍କୃତରେ ଏହା ଗୋଟିଏ ଯୁକ୍ତାକ୍ଷର (ଜ୍ ଞ) । 'ଜ୍ଞାନ' କୁ ସଂସ୍କୃତରେ 'ଜ୍‌ଞାନ' ଭାବରେ ଉଚ୍ଚାରଣ କରାଯାଏ । ଜ୍ ଚ ବର୍ଗର ବର୍ଣ୍ଣ ହୋଇଥିବାରୁ ଏହା ଚ ବର୍ଗର ପଞ୍ଚମ ବର୍ଣ୍ଣ ଞ୍ ସହ ଯୁକ୍ତ ହୋଇ ପାରେ । ମନେ ରଖିବାକୁ ହେବ ଯେ, ଜ୍' ର ଯୋଗ ନ୍ ସହିତ ହୋଇ ପାରିବ ନାହିଁ । ସୁତରାଂ 'ଜ୍ଞାନ' କୁ 'ଜ୍ନାନ' ଭାବରେ ଉଚ୍ଚାରଣ କରାଯାଇ ପାରିବ ନାହିଁ । ଓଡ଼ିଆ, ବଙ୍ଗଳା, ହିନ୍ଦୀ, ଇତ୍ୟାଦି ଭାଷାରେ 'ଜ୍ଞାନ' କୁ 'ଗ୍ୟାନ' ଭାବରେ ଉଚ୍ଚାରଣ କରାଯାଏ । 'ଅଜ୍ଞ' ଓ 'ପ୍ରାଜ୍ଞ' ଯଥାକ୍ରମେ 'ଅଗ୍ୟଂ' ଓ 'ପ୍ରାଗ୍ୟଂ' ଭାବରେ ଉଚ୍ଚାରିତ ହୁଏ ।

ଗୋଟିଏ ମୌଳିକ ଧ୍ୱନିର ଦ୍ୱିତ୍ୱକୁ ଓଡ଼ିଆ ଉଚ୍ଚାରଣରେ ଗୁରୁତ୍ୱ ଦିଆ ଯାଏ ନାହିଁ । ପିତ୍ତ, ଉତ୍ତମ, ଉଚ୍ଚ, ବୃକ୍କ, ପକ୍କା, ଲଜ୍ଜା, ଉଜ୍ଜ୍ୱଳ, ସାନ୍ନିଧ୍ୟ, ସମ୍ମେଳନ, ଉଡ୍ଡୀୟମାନ, ପ୍ରଫୁଲ୍ଲ, ପଲ୍ଲବ'ର ଉଚ୍ଚାରଣ ଯଥାକ୍ରମେ ପିତ୍‌ତ, ଉତ୍‌ତମ, ଉଚ୍‌ଚ, ବୃକ୍‌କ, ପକ୍‌କା, ଲଜ୍‌ଜା, ଉଜ୍‌ଜ୍ୱଳ, ସାନ୍‌ନିଧ୍ୟ, ସମ୍‌ମେଳନ, ଉଡ୍‌ଡୀୟମାନ, ପ୍ରଫୁଲ୍‌ଲ, ପଲ୍‌ଲବ ନ ହୋଇ ପିତ, ଉତମ,

ଭବ, ବୃଦ୍ଧ, ଯଜ୍ଞ, ଲଜ୍ଜା ଓ (ଲଜ୍ୟା), ଉଜ୍ଜ୍ୱଳ, ସାନ୍ନିଧ୍ୟ, ସମ୍ମେଳନ, ଲଜ୍ଜାୟମାନ, ପ୍ରଜ୍ଜ୍ୱଳ, ଫଳତ ହୋଇଥାଏ । ଜ୍ଞା ଶବ୍ଦରେ ଜ୍+ଞ+ଆ ମିଶି ଜ୍ଞା ହୋଇଛି । ସେହିପରି ବୁଦ୍ଧି ଶବ୍ଦରେ ଦ୍+ଧ୍+ଇ ମିଶି ଦ୍ଧି ହୋଇଛି । ଅଧିକାଂଶ ଲୋକେ 'ଜ୍ଞା' କୁ ଜ୍ଞା ଏବଂ 'ବୁଦ୍ଧି' କୁ ବୁଦ୍ଧି ସ୍ୱରରେ ଉଚ୍ଚାରଣ କରନ୍ତି । କେହି କେହି ଶୁଦ୍ଧ ଉଚ୍ଚାରଣ କରିବାକୁ ଚେଷ୍ଟା କରି 'ଜ୍ଞା' କୁ ଜ୍‌ଞା ଓ 'ବୁଦ୍ଧି' କୁ 'ବୁଦ୍‌ଧି' ସ୍ୱରରେ ଉଚ୍ଚାରଣ କରନ୍ତି । କିନ୍ତୁ ମନେ ରଖିବାକୁ ହେବ ଯେ, ଜ୍ଞ' ରେ ଦୁଇଟି ଜ୍ଞ ଶବ୍ଦରେ ଜ୍+ଞ ଥାଏ ଏବଂ ଦ୍ଧ' ରେ ଦୁଇଟି ଧ ଶବ୍ଦରେ ଦ୍+ଧ ଥାଏ ।

ଶବ୍ଦରେ ପର ବର୍ଣ୍ଣରେ ରେଫ୍ ଥିଲେ ପୂର୍ବ ସ୍ୱର ହ୍ରସ୍ୱ ନ ହୋଇ ଦୀର୍ଘ ହୁଏ । ଦୀର୍ଘ, ଜୀର୍ଣ୍ଣ, ବିସ୍ତୀର୍ଣ୍ଣ, କୀର୍ତ୍ତି, ପୂର୍ଣ୍ଣ, ଚୂର୍ଣ୍ଣ, ମୁହୂର୍ତ୍ତ, ଇତ୍ୟାଦି, ଶବ୍ଦରେ ରେଫ୍ ପୂର୍ବର ସ୍ୱର ଦୀର୍ଘ ହୋଇଛି । ଏହି ଅବସ୍ଥାରେ ସ୍ୱର ଦୀର୍ଘ ହେଲେ ଶବ୍ଦଟିର ଉଚ୍ଚାରଣ ଅଧିକ ସ୍ପଷ୍ଟ ହୁଏ । ଓଡ଼ିଆରେ ଏହି ଶବ୍ଦ ଗୁଡ଼ିକର ବନାନ ଠିକ୍ ଲେଖା ହେଉଥିଲେ ସୁଦ୍ଧା ଉଚ୍ଚାରଣ ଠିକ୍ କରଯାଏ ନାହିଁ । 'ଦୀର୍ଘ' କୁ 'ଦିର୍ଘ' ଓ 'କୀର୍ତ୍ତି' କୁ 'କିର୍ତି' ସ୍ୱରରେ ଉଚ୍ଚାରଣ କରଯାଏ ।

ନୀରସ, ନୀରବ, ଇତ୍ୟାଦି, ଶବ୍ଦରେ ନ'ରେ ଦୀର୍ଘ ଈ କାର ଲାଗେ 'ରସ' ଓ 'ରବ' ପ୍ରଭୃତି ଶବ୍ଦର ପ୍ରଥମ ବର୍ଣ୍ଣ ର ହୋଇ ଥିବାରୁ 'ନିଃ' ଉପସର୍ଗର ବିସର୍ଗ ଲୋପ ହୁଏ ଏବଂ ହ୍ରସ୍ୱ ସ୍ୱର ଦୀର୍ଘ ହୁଏ । ନୀର, ଶୀର, ଧୀର, ବୀର, କୀର, ହୀରକ, ଦୂର, ଶୂର, କ୍ରୂର, ଇତ୍ୟାଦି, ଶବ୍ଦରେ ର ପୂର୍ବବର୍ତ୍ତୀ ସ୍ୱର ଦୀର୍ଘ । କିନ୍ତୁ ଏହାକୁ ଏକ ସାଧାରଣ ନିୟମ ବୋଲି କହିହେବ କାରଣ ଶର, ଶିର, ଚିର, ପୁର, ସୁର, ବିଧୁର, ଇତ୍ୟାଦି ଶବ୍ଦରେ ର ପୂର୍ବବର୍ତ୍ତୀ ହ୍ରସ୍ୱ ମଧ୍ୟ ହୋଇଥାଏ ।

'ଦୁଃଖ' ଶବ୍ଦକୁ ଓଡ଼ିଆରେ ଲେଖିଲା ବେଳେ 'ଦୁ' ରେ ବିସର୍ଗ ଦିଆଯାଏ, ମାତ୍ର ଉଚ୍ଚାରଣ କଲା ବେଳେ ବିସର୍ଗକୁ ବାଦ୍ ଦିଆଯାଏ । ସୁଖ ପରି ଦୁଖ ଲେଖାଯାଇ ପାରିବ । କିନ୍ତୁ ଶବ୍ଦର ବ୍ୟୁତ୍ପତ୍ତି ବିଷୟ ବିଚାରକୁ ନେଲାବେଳେ ତ୍ରୁଟି ପରିଲକ୍ଷିତ ହେବ । 'ସୁଖ' ଶବ୍ଦରେ ସୁ ଉପସର୍ଗ ଏବଂ 'ଦୁଃଖ' ଶବ୍ଦରେ ଦୁଃ ଉପସର୍ଗ ଲାଗିଛି । ଏହି ଉପସର୍ଗ ମାନଙ୍କର ନିର୍ଦ୍ଦିଷ୍ଟ ଅର୍ଥ ଅଛି । 'ଦୁଷ୍କର' (ଦୁଃ+କର) ଓ 'ଦୁର୍ଗମ' (ଦୁଃ+ଗମ) ଶବ୍ଦମାନଙ୍କରେ ଦୁଃ ଉପସର୍ଗର ବିସର୍ଗ ସନ୍ଧିସୂତ୍ର ଅନୁସାରେ ଷ୍ କା ର୍ ହୋଇ ଯାଇଛି । ମାତ୍ର 'ଦୁଃଖ' ଶବ୍ଦରେ ଦୁଃ ଉପସର୍ଗର ବିସର୍ଗ ଷ୍ କା ର୍ ହୋଇ ପାରି ନାହିଁ । ଶବ୍ଦ ବ୍ୟୁତ୍ପତ୍ତି ବିଷୟ ଆଲୋଚନା କଲେ 'ଦୁଃଖ' କୁ 'ଦୁଖ' ଲେଖିଦେଲେ 'ଦୁଷ୍କର' କୁ 'ଦୁକର' ଓ 'ଦୁର୍ଗମ' କୁ 'ଦୁଗମ' ଲେଖିବାକୁ ପଡ଼ିବ । ଅତଏବ 'ଦୁଃଖ' ଶବ୍ଦର ବନାନ ନ ବଦଳେଇ ତା'ର ଉଚ୍ଚାରଣ ଶୁଦ୍ଧ କରିବା ଉଚିତ୍ ।

ସାଧାରଣତଃ କହିବାକୁ ଗଲେ ଓଡ଼ିଆରେ ଦୀର୍ଘ ଈ କାର ଓ ଦୀର୍ଘ ଊ କାର ଉଚ୍ଚାରିତ ହୁଏ ନାହିଁ ଯଦିଓ ଲେଖିଲାବେଳେ ହ୍ରସ୍ୱ ଓ ଦୀର୍ଘ ସ୍ୱର ବ୍ୟବହୃତ ହୁଏ ତଥାପି କହିଲାବେଳେ କେବଳ ହ୍ରସ୍ୱ ସ୍ୱର ଉଚ୍ଚାରିତ ହୁଏ । 'ନଦୀ, 'ନୀତି' ଓ କୂଳ ଶବ୍ଦକୁ କହିଲା ବେଳେ ଯଥାକ୍ରମେ ନଦି, ନିତି ଓ କୁଳ ସ୍ୱରରେ ଉଚ୍ଚାରଣ କରଯାଏ । ଏହି କାରଣରୁ ଅନେକେ ଦୀର୍ଘ ଈ ଓ ଦୀର୍ଘ ଊ ବର୍ଣ୍ଣ ଦୁଇଟିକୁ ଓଡ଼ିଆ ବର୍ଣ୍ଣମାଳାରୁ ବାଦ୍ ଦେବାକୁ ପ୍ରସ୍ତାବ ଦିଅନ୍ତି । ଏପରି ପ୍ରସ୍ତାବ ଭ୍ରମ ଉପରେ ପର୍ଯ୍ୟବେସିତ । ଯେଉଁ ବର୍ଣ୍ଣମାଳାରେ ଯେତେ ଅଧିକ ବିଭିନ୍ନ ସମ୍ଭାବ୍ୟ ମୌଳିକ ଧ୍ୱନିର ସଙ୍କେତ ଥାଏ, ତା ସେତେ ଅଧିକ ବୈଜ୍ଞାନିକ । ଓଡ଼ିଆ ବର୍ଣ୍ଣମାଳାରୁ ଈ ଓ ଊ କୁ ଅନ୍ତର କରି ଦେଲେ 'ନ୍‌ଇଉଦ୍ଇ' ଓ 'କ୍‌ଉଉଳ୍‌ଅ' ଧ୍ୱନି ଦୁଇଟିକୁ ଲେଖି ହେବ ନାହିଁ । ଦ୍ୱିତୀୟତଃ ନଦି ଓ ନଦୀ, ନିତି ଓ ନୀତି ଏବଂ କୁଳ ଓ କୂଳ ଶବ୍ଦଯୁଗଳମାନଙ୍କର ଅର୍ଥ ଭିନ୍ନ ଭିନ୍ନ । 'ପୀତ' ମାନେ ହଳଦିଆ ଓ 'ପିତ୍ତ' ମା'ନେ ଯକୃତରୁ ସ୍ରାବଣରୁ ନିଃସୃତ ରସ । ଉଭୟକୁ 'ପିତ' କହି ସମାନ କରି ଦେଲେ କାମ ଚଳିବ ନାହିଁ । ପୁନଶ୍ଚ 'ଅତୀତ' (ଅତି+ଇତ) ଓ 'ପରୀକ୍ଷା' (ପରି+ଈକ୍ଷା) ପ୍ରଭୃତି ସନ୍ଧିଜାତ ଶବ୍ଦରେ ଦୁଇଟି ହ୍ରସ୍ୱ ଇ, ଦୁଇଟି ଦୀର୍ଘ ଈ କିମ୍ବା ଗୋଟିଏ ହ୍ରସ୍ୱ ଇ ଓ ଅନ୍ୟ ଗୋଟିଏ ଦୀର୍ଘ ଈ ମିଶି ଦୀର୍ଘ ଈ ହେବାକୁ ବାଧ୍ୟ । ଏପରି ସ୍ଥଳେ 'ଅତିତ' କିମ୍ବା 'ପରିକ୍ଷା' ଲେଖିବା ଓ ଉଚ୍ଚାରଣ କରିବା ପ୍ରୟୁକ୍ତି ଭୁଲ୍ । ହ୍ରସ୍ୱ ସ୍ୱର ବ୍ୟବହାର କରି ବନାନ ଏକା କରି ଦେଲେ ଅର୍ଥରେ ବିଭ୍ରାଟ ଉପୁଜିବ । ସୁତରାଂ ବନାନକୁ ବଦଳେଇ ଭାଷାରେ ବିଭ୍ରାଟ ସୃଷ୍ଟି କରିବା ପରିବର୍ତ୍ତେ ଶୁଦ୍ଧ ଉଚ୍ଚାରଣ କରିବାକୁ ଚେଷ୍ଟା କରିବା ଉଚିତ ।

ଅନେକେ ତିନୋଟି ସ'କୁ ହଟେଇ ଦେଇ ଗୋଟିଏ ରଖିବାକୁ ପ୍ରସ୍ତାବ ଦିଅନ୍ତି । ଏହି ଲୋକମାନେ ଧ୍ୱନିତତ୍ତ୍ୱ ସମ୍ବନ୍ଧରେ ଅଜ୍ଞ । 'ବର୍ଷା', 'କୃଷି', 'ହର୍ଷ', ଇତ୍ୟାଦି, କେ କହିଲା ବେଳେ ମୂର୍ଦ୍ଧନ୍ୟ ଷ ଆସିବାକୁ ବାଧ୍ୟ । ସେଠି ଲେଖିଲେ ଦନ୍ତ୍ୟ ସ ଉଚ୍ଚାରିତ ହୋଇ ପାରିବ ନାହିଁ । 'ବର୍ଷା' ଶବ୍ଦ ଉଚ୍ଚାରଣ କଲାବେଳେ ତଳ ଓ ଉପର

ଦାନ୍ତ ଲାଗୁ ନାହିଁ ଏବଂ ଧ୍ୱନି ତାଳୁରୁ ନ ବାହାରି ମୂର୍ଦ୍ଧାରୁ ବାହାରୁଛି । ଅତଏବ ସ ବା ଶ ଲେଖା ହୋଇ ପାରିବ କିପରି ? ଅବଶ୍ୟ ରେଫ୍ ଲାଗି ତାଳବ୍ୟ ଶ ଉଚ୍ଚାରିତ ହୋଇ ପାରିବ । 'ଦର୍ଶନ', 'ସ୍ପର୍ଶ', ପରାମର୍ଶ, ଇତ୍ୟାଦି, ଶବ୍ଦରେ ରେଫ୍ ଲାଗିଥିଲେ ସୁଦ୍ଧା ତାଳବ୍ୟ ଶ ଅଛି । ମାତ୍ର ଗୋଟିଏ କଥା ଲକ୍ଷ୍ୟ କରିବାର ଅଛି ! 'ଦର୍ଶନ' ଧ୍ୱନିରେ ଶ କୋମଳ ଏବଂ ତାଳୁରୁ ଉତ୍ପନ୍ନ ହେଉ-ଥିବାବେଳେ 'ବର୍ଷା' ଧ୍ୱନିରେ ଷ କର୍କଶ ଏବଂ ମୂର୍ଦ୍ଧାରୁ ଉତ୍ପନ୍ନ ହେଉଛି । 'ବସନ୍ତ', 'ହଂସ', 'ରସ', ଇତ୍ୟାଦି, ଧ୍ୱନିରେ ସ ଉଚ୍ଚାରିତ ହେଲାବେଳେ ତଳ ଓ ଉପର ଦାନ୍ତ ଲାଗୁଛି । ଅତଏବ ଏହି ଶବ୍ଦମାନଙ୍କରେ ଦନ୍ତ୍ୟ ସ ଆସିବାକୁ ବାଧ୍ୟ । ସ ଦନ୍ତ୍ୟ ବର୍ଣ୍ଣ ଏବଂ ର ମୂର୍ଦ୍ଧନ୍ୟ ବର୍ଣ୍ଣ ହେଲେ ସୁଦ୍ଧା 'ସୃଷ୍ଟି'ର ପ୍ରଥମ ସ ଉଚ୍ଚାରଣ କଲାବେଳେ ତଳ ଓ ଉପର ଦାନ୍ତ ଲାଗୁଛି । ସୁତରାଂ 'ସୃଷ୍ଟି' ଶବ୍ଦର ପ୍ରଥମ ସ'ଟି ଦନ୍ତ୍ୟ ସ ହେବାକୁ ବାଧ୍ୟ । ଚ ବା ଛ ତାଳବ୍ୟ ବର୍ଣ୍ଣ । ଚ ବା ଛ ଯୁକ୍ତ ହେଉଥିଲେ ତାଳବ୍ୟ ଶ ବ୍ୟତୀତ ଅନ୍ୟ କୌଣସି ଶ ଉଚ୍ଚାରିତ ହୋଇ ପାରିବ ନାହିଁ । 'ନିଶ୍ଚୟ', 'ପଶ୍ଚିମ', 'ଶିରଶ୍ଛେଦନ', ଇତ୍ୟାଦି, ଶବ୍ଦରେ କେବଳ ତାଳବ୍ୟ ଶ ଉଚ୍ଚାରିତ ହୋଇ ପାରିବ । ତ ବା ଥ ଦନ୍ତ୍ୟ ବର୍ଣ୍ଣ । 'ହସ୍ତ', 'ପ୍ରସ୍ଥ', 'ସ୍ଥାନ', ଇତ୍ୟାଦି, ଶବ୍ଦ ଉଚ୍ଚାରଣ କଲାବେଳେ ଦନ୍ତ୍ୟ ସ ଆସିବାକୁ ବାଧ୍ୟ । ତଳ ଓ ଉପର ଦାନ୍ତ ନ ବଜେଇ 'ହସ୍ତ'ର ସ୍ତ ଧ୍ୱନି ଉଚ୍ଚାରିତ ହୋଇ ପାରିବ ନାହିଁ । 'ସ୍ନେହ', 'ସ୍ନାନ', ଇତ୍ୟାଦି, ଶବ୍ଦରେ ନ୍ କେବଳ ଦନ୍ତ୍ୟ ସ୍‌ରେ ଯୁକ୍ତ ହୋଇ ପାରିବ । କାରଣ ଉଭୟ ସ୍ ଓ ନ୍ ଦନ୍ତ୍ୟ ବର୍ଣ୍ଣ । ଏବଂ ଏହି ଶବ୍ଦଗୁଡ଼ିକୁ ଉଚ୍ଚାରଣ କଲାବେଳେ ତଳ ଓ ଉପର ଦାନ୍ତ ବାଜେ । 'ପ୍ରଶ୍ନ' ଶବ୍ଦ ଉଚ୍ଚାରଣ କଲାବେଳେ ଶ ଧ୍ୱନି ତାଳୁରୁ ଆସେ ଏବଂ ସେହି କାରଣରୁ ତାଳବ୍ୟ ଶ ହୁଏ । 'ମନସ୍କାମନା' ଓ 'ସ୍ଖଳିତ' ଇତ୍ୟାଦି ଶବ୍ଦରେ କ୍ ବା ଖ୍ ଦନ୍ତ୍ୟ ସ୍‌ରେ ଯୁକ୍ତ ହେଲେ ଉଚ୍ଚାରଣ ସୁଗମ ହୋଇ ପାରୁଛି । କଣ୍ଠ୍ୟ ବର୍ଣ୍ଣ ( କ୍ ବା ଖ୍ ) ତାଳବ୍ୟ କିମ୍ବା ମୂର୍ଦ୍ଧନ୍ୟ ବର୍ଣ୍ଣ ଅପେକ୍ଷା ଦନ୍ତ୍ୟ ବର୍ଣ୍ଣ (ସ୍)ରେ ଯୁକ୍ତ ହେବା ଅଧିକ ସହଜ । ଶୁଷ୍କ ଶବ୍ଦର ଶୁଷ୍ ଧାତୁରେ ଷ୍ ଥିବା ଯୋଗୁ କ୍ ଷ'ରେ ଯୁକ୍ତ ହେବା ଉଚ୍ଚାରଣ ଦୃଷ୍ଟିରୁ ଅଧିକ ସୁବିଧାଜନକ । ଟ ବା ଠ ମୂର୍ଦ୍ଧନ୍ୟ ବର୍ଣ୍ଣ । 'ଚେଷ୍ଟା', 'ନଷ୍ଟ', 'କାଷ୍ଠ', ଇତ୍ୟାଦି ଶବ୍ଦ ଉଚ୍ଚାରଣ କଲାବେଳେ ମୂର୍ଦ୍ଧନ୍ୟ ଷ ଆସିବାକୁ ବାଧ୍ୟ । 'ନଷ୍ଟ' ଶବ୍ଦର ଷ ଉଚ୍ଚାରିତ ହେଲାବେଳେ ଦାନ୍ତକୁ ଦାନ୍ତ ବାଜି ପାରିବ ନାହିଁ ଏବଂ ତାଳୁରୁ ଧ୍ୱନି ଉତ୍ପନ୍ନ ହେବ ନାହିଁ । 'ସ୍ପୃହା' ଓ 'ସ୍ଫଟିକ', ଇତ୍ୟାଦି, ଶବ୍ଦରେ ଦନ୍ତ୍ୟ ସ'ରେ ପ ବା ଫ ଯୁକ୍ତ ହେଉଛି । ଦନ୍ତ୍ୟ ସ ଦନ୍ତ୍ୟ ବର୍ଣ୍ଣ ଏବଂ ପ ବା ଫ ଓଷ୍ଠ୍ୟ ବର୍ଣ୍ଣ ହୋଇଥିବାରୁ ଧ୍ୱନି-ଲହର ସମାପ୍ୟ ଦୃଷ୍ଟିରୁ ଦନ୍ତ୍ୟ ସ ଉଚ୍ଚାରିତ ହେବା ସୁବିଧାଜନକ । ମାତ୍ର 'ନିଷ୍ପାପ' ଶବ୍ଦରେ ଷତ୍ୱ ବିଧାନ ଅନୁସାରେ ଦନ୍ତ୍ୟ ସ ବଦଳରେ ଷ ହୋଇଥାଏ ।

ଷତ୍ୱ ବିଧାନ ଅନୁସାରେ, ଅ, ଆ ଭିନ୍ନ ସ୍ୱରବର୍ଣ୍ଣ, କ୍, ଙ୍ ଓ ର୍ ପରିସ୍ଥିତ ସନ୍ଧିଜାତ, ଉପସର୍ଗ ପରବର୍ତ୍ତୀ ଏବଂ ବିଭକ୍ତି ଓ ପ୍ରତ୍ୟୟସମ୍ବନ୍ଧୀ ପଦରେ ମଧ୍ୟବର୍ତ୍ତୀ ସ୍ ଷ୍ ହୁଏ । ସ୍ ପୂର୍ବରେ ଅନୁସ୍ୱାର, ବିସର୍ଗ କିମ୍ବା ଷ୍ ଥିଲେ ସୁଦ୍ଧା ଏହି ନିୟମ କାର୍ଯ୍ୟ କରେ । 'ସମ' 'ବିଷମ', ପ୍ରସାଦ', 'ବିଷାଦ', 'ପୁରସ୍କାର', 'ପରିଷ୍କାର', ଇତ୍ୟାଦି, ଶବ୍ଦରେ ଦନ୍ତ୍ୟ ସ ଓ ମୂର୍ଦ୍ଧନ୍ୟ ଷ ଷତ୍ୱ ବିଧାନ ନିୟମ ଦ୍ୱାରା ନିୟନ୍ତ୍ରିତ ହୋଇ ଥାଆନ୍ତି । ବୈୟାକରଣମାନେ ମନଇଚ୍ଛା ଏପରି ଯେ ଗୋଟିଏ ନିୟମ ପ୍ରଣୟନ କରିଛନ୍ତି, ତା ନୁହେଁ । 'ସମ' କହିଲେ ତଳ ଓ ଉପର ଦାନ୍ତ ଲାଗୁଛି । କିନ୍ତୁ 'ବିଷମ' କହିଲେ ଦାନ୍ତ ଲାଗୁନାହିଁ । ଏବଂ ଷ ମୂର୍ଦ୍ଧାରୁ ଉଚ୍ଚାରିତ ହେଉଛି । 'ଭଷା', 'ଔଷଧ', ନୈଷଧ, ଉପନିଷଦ୍, ଇତ୍ୟାଦି ଶବ୍ଦ ଉଚ୍ଚାରଣ କଲାବେଳେ ଷ ଧ୍ୱନି ମୂର୍ଦ୍ଧାରୁ ଉତ୍ପନ୍ନ ହେଉଛି । ଏପରି ସ୍ଥଳେ ମୂର୍ଦ୍ଧନ୍ୟ ଷ ଛଡ଼ା ଅନ୍ୟ କିଛି ହୋଇ ପାରିବ ନାହିଁ । ଅବଶ୍ୟ ସାତ୍ ପ୍ରତ୍ୟୟର ସ ଏକ ବ୍ୟତିକ୍ରମ । ଅ, ଆ ଭିନ୍ନ ଅନ୍ୟ ସ୍ୱରବର୍ଣ୍ଣ ପରେ ମଧ୍ୟ ସାତ୍ ପ୍ରତ୍ୟୟର ସ୍ ଷ୍ ହୁଏ ନାହିଁ । ଧୂଳିସାତ୍ ଶବ୍ଦ ଏପରି ଏକ ଉଦାହରଣ ।

ଅ ବା ଆ ପରେ ଶବ୍ଦରେ ମୂର୍ଦ୍ଧନ୍ୟ ଷ ରହେ ନାହିଁ ଭାବିବା ଭୁଲ୍ । 'ଭାଷଣ' ଶବ୍ଦରେ ଆ ପରେ ଷ ରହୁଛି । ଏହି ଉଦାହରଣଟି ଷତ୍ୱ ବିଧାନ ନିୟମରେ ଆସୁ ନାହିଁ । କାରଣ 'ଭାଷଣ' ଶବ୍ଦରେ ଷ୍ ବର୍ଣ୍ଣ ଏକ ମୌଳିକ ଉପାଦାନ । ଅନ୍ୟ ପକ୍ଷରେ 'ବିସ୍ମୃତ', 'ବିସ୍ଫୁରଣ', 'ବିସ୍ଫୋଟନ', 'ବିସ୍ମୟ', ଇତ୍ୟାଦି ଶବ୍ଦରେ ଇ ପରେ ସ୍ ଷ୍ ହୋଇନାହିଁ । ସ୍ମ, ସ୍ଫ ଓ ସ୍ମୃ ଧ୍ୱନିରେ ମୂର୍ଦ୍ଧନ୍ୟ ଷ ପରିବର୍ତ୍ତେ ସ୍ ଉଚ୍ଚାରିତ ହେଲେ ସହଜ ହୋଇଥାଏ ।

ବନାନ କରିବା ବେଳେ ନିକଟବର୍ତ୍ତୀ ବର୍ଣ୍ଣପ୍ରତି ଦୃଷ୍ଟି ରଖିବାକୁ ପଡ଼ିବ । ଶୋଚନା, ଷଟ୍, ଷଣ୍ଢ, ପୁରୁଷ, ସତ୍ୟ, ସନ୍ଧାନ, ଶବ୍ଦ, ଲବ୍ଧ, ଇତ୍ୟାଦି, ଶବ୍ଦଗୁଡ଼ିକ ପ୍ରତି ଧ୍ୟାନ ଦିଆଯାଉ । ଶ୍ ଓ ଚ୍ ତାଳବ୍ୟ ବର୍ଣ୍ଣ, ଷ୍, ଟ୍, ଣ୍, ଡ୍ ଓ ର୍ ମୂର୍ଦ୍ଧନ୍ୟ ବର୍ଣ୍ଣ, ସ୍, ତ୍ ଓ ନ୍ ଦନ୍ତ୍ୟ ବର୍ଣ୍ଣ ଏବଂ ଦ୍, ଧ୍ ଦନ୍ତ୍ୟ ବର୍ଣ୍ଣ ହୋଇଥିଲା ବେଳେ ବର୍ଗ୍ୟ ବ ଦନ୍ତର ନିକଟବର୍ତ୍ତୀ ଓଷ୍ଠ୍ୟ ବର୍ଣ୍ଣ । ନିକଟବର୍ତ୍ତୀ ଧ୍ୱନିମାନଙ୍କର ଉତ୍ପତ୍ତିସ୍ଥଳ ଏକ ବା ସମୀପବର୍ତ୍ତୀ ହେବା ସ୍ୱାଭାବିକ, କିନ୍ତୁ ଏହା ନିଶ୍ଚୟ ହେବ, ଏପରି କୌଣସି ସାର୍ବଜନୀନ

ନିୟମ ନାହିଁ । ତଥାପି ଅନେକ କ୍ଷେତ୍ରରେ ଏହା ଦେଖାଯାଇଥାଏ । ଉଚ୍ଚାରଣ ପ୍ରତି ଦୃଷ୍ଟି ଦେଲେ ନିୟମ ନ ଥିଲେ ମଧ୍ୟ ଉପଯୁକ୍ତ ବର୍ଣ୍ଣ ଜାଣି ହୋଇଯାଏ । ଈଶ୍ୱର, ନଶ୍ୱର, ଅଶ୍ୱ, ଶୈବାଳ, ବିନାଶ, ଶଲ୍ୟ, ନିଶା, ଇତ୍ୟାଦି, ଶବ୍ଦକୁ ଉଚ୍ଚାରଣ କଲେ ତାଲବ୍ୟ ଶ ସମ୍ବନ୍ଧରେ ଅନୁମେୟ ହୁଏ । ସେହିପରି ଈପ୍ସିତ, ନାସା, କଂସ, ଇତ୍ୟାଦି, ଶବ୍ଦ ଉଚ୍ଚାରଣରେ ଦନ୍ତ୍ୟ ସ ସମ୍ବନ୍ଧରେ ଅନୁମିତ ହୁଏ ।

ସଂସ୍କୃତ ଭାଷାରୁ ଓଡ଼ିଆ ଭାଷା ଅନେକ କୃଦନ୍ତ ଓ ତଦ୍ଧିତ ପ୍ରତ୍ୟୟ ଧାର ଆଣିଛି । କେତେ ଗୁଡ଼ିଏ ପ୍ରତ୍ୟୟର ବନାନ ଓ ଉଚ୍ଚାରଣ ପ୍ରତି ସାଧାରଣତଃ ଓଡ଼ିଆରେ ଧ୍ୟାନ ଦିଆଯାଏ ନାହିଁ । ସ୍ତ୍ରୀ ଲିଙ୍ଗରେ ଶବ୍ଦର ଅନ୍ତରେ ଥିବା ଇକାର ଦୀର୍ଘ ହୁଏ । ନାରୀ, ଯବନୀ, ନଦୀ, ଦେବୀ, ଦାତ୍ରୀ, ନେତ୍ରୀ ଆଦି, ଇତ୍ୟାଦି, ଶବ୍ଦଗୁଡ଼ିକ ସ୍ତ୍ରୀ ଲିଙ୍ଗ ହୋଇ ଥିବାରୁ ଅନ୍ତସ୍ୱର ଦୀର୍ଘ ହୋଇଥାଏ । ମାତ୍ର 'କାଳୀ' ଶବ୍ଦ ସ୍ତ୍ରୀ ଲିଙ୍ଗ ହୋଇଥିଲେ ସୁଦ୍ଧା ସମାସ ହେଲେ 'କାଳିଦାସ' ଶବ୍ଦରେ ଳ'ରେ ହ୍ରସ୍ୱ ଇକାର ରହେ । ଧାତୁରେ ଅନୀୟ ପ୍ରତ୍ୟୟ ହେଲେ ନ'ରେ ଦୀର୍ଘ ଈ ଯୁକ୍ତ ହୁଏ । ପଠନୀୟ, ଦର୍ଶନୀୟ, ଦଣ୍ଡନୀୟ, ଖେଳନୀୟ, କରଣୀୟ, ଇତ୍ୟାଦି, ଶବ୍ଦରେ ନୀ ହୋଇଥାଏ । ଧାତୁରେ ତି ପ୍ରତ୍ୟୟ ଲାଗି ଥିଲେ ଅନ୍ତିମ ସ୍ୱର ହ୍ରସ୍ୱ ହୋଇଥାଏ । ମତି, ଗତି, ବୁଦ୍ଧି, ଇତ୍ୟାଦି, ଶବ୍ଦର ଅନ୍ତରେ ହ୍ରସ୍ୱ ଇକାର ଲାଗିଥାଏ । ସେହି ପରି ଇଷ୍ଣୁ ପ୍ରତ୍ୟୟ, ଇତ୍ର ପ୍ରତ୍ୟୟ, ଉକ ପ୍ରତ୍ୟୟ ଓ ଉର ପ୍ରତ୍ୟୟର ଇ ଓ ଉ ହ୍ରସ୍ୱ । ସହିଷ୍ଣୁ, ବର୍ଦ୍ଧିଷ୍ଣୁ, ଚରିତ୍ର, ଖନିତ୍ର, ନିନ୍ଦୁକ, ଭାବୁକ, ଭଙ୍ଗୁର, ମେଦୁର, ଇତ୍ୟାଦି, ଶବ୍ଦଗୁଡ଼ିକ ଉକ୍ତ ପ୍ରତ୍ୟୟାନ୍ତ ଶବ୍ଦର ଉଦାହରଣ ।

ତଦ୍ଧିତରେ ଇକ ପ୍ରତ୍ୟୟରେ ହ୍ରସ୍ୱ ଇକାର ଥାଏ, କିନ୍ତୁ ଈୟ ପ୍ରତ୍ୟୟରେ ଦୀର୍ଘ ଈକାର ଥାଏ । ଦୈନିକ, ଯାନ୍ତ୍ରିକ, ସାପ୍ତାହିକ, ନୈତିକ, ଲୌକିକ, ଇତ୍ୟାଦି, ଶବ୍ଦଗୁଡ଼ିକ ଇକ ପ୍ରତ୍ୟୟାନ୍ତ ଏବଂ ଭାରତୀୟ, ନାଟକୀୟ, ଦେଶୀୟ, ରାଷ୍ଟ୍ରୀୟ, ଇତ୍ୟାଦି, ଶବ୍ଦଗୁଡ଼ିକ ଈୟ ପ୍ରତ୍ୟୟାନ୍ତ ଶବ୍ଦ । କଣ୍ଟକିତ, ତାରକିତ ପ୍ରଭୃତି ଇତ ପ୍ରତ୍ୟୟାନ୍ତ ଶବ୍ଦର ତ ପୂର୍ବରେ ହ୍ରସ୍ୱ ଇ କାର ଥାଏ । ଗରିମା, ଲଘିମା ପ୍ରଭୃତି ଶବ୍ଦର ଇମନ୍ ପ୍ରତ୍ୟୟର ଇ, ଅନ୍ତିମ, ଅଗ୍ରିମ, ଇତ୍ୟାଦି, ଶବ୍ଦର ଇମ ପ୍ରତ୍ୟୟର ଇ ଏବଂ ଜଟିଳ, ଫେନିଳ ଓ ପଙ୍କିଳ ପ୍ରଭୃତି ଶବ୍ଦର ଇଳ ପ୍ରତ୍ୟୟର ଇ ହ୍ରସ୍ୱ ହୋଇଥାଏ । ଗୁଣୀ, ଧନୀ, ମାନୀ, ଇତ୍ୟାଦି, ଇନ୍ (ଈ) ପ୍ରତ୍ୟୟାନ୍ତ ଶବ୍ଦ ଏବଂ ମାୟାବୀ, ମେଧାବୀ, ଯଶସ୍ୱୀ, ମନସ୍ୱୀ, ଇତ୍ୟାଦି, ବିନ୍ (ବୀ) ପ୍ରତ୍ୟୟାନ୍ତ ଶବ୍ଦର ଅନ୍ତରେ ଦୀର୍ଘ ଈ ରହେ । କିନ୍ତୁ ସ୍ତ୍ରୀ ଲିଙ୍ଗରେ ଗୁଣିନୀ, ମାନିନୀ, ତଟିନୀ, ତରଙ୍ଗିଣୀ, ପୁଷ୍କରିଣୀ, ମାୟାବିନୀ ଓ ମନସ୍ୱିନୀ, ଇତ୍ୟାଦି, ଶବ୍ଦରେ କେବଳ ଅନ୍ତରେ ଦୀର୍ଘ ଈକାର ରହେ । ଗରୀୟାନ୍, ଲଘୀୟାନ ସଦୃଶ ଈୟସ୍ ପ୍ରତ୍ୟୟର ଈ ଦୀର୍ଘ ହୋଇଥାଏ, ମାତ୍ର ଗରିଷ୍ଠ, ଲଘିଷ୍ଠ ସଦୃଶ ଇଷ୍ଠ ପ୍ରତ୍ୟୟର ଇ ହ୍ରସ୍ୱ ହୋଇଥାଏ । ପ୍ରାଚୀନ, ଅର୍ବାଚୀନ, ସମୀଚୀନ, ଇତ୍ୟାଦି, ଶବ୍ଦରେ ଚ'ରେ ଦୀର୍ଘ ଈ କାର ଯୁକ୍ତ ହୋଇଥାଏ । ଈନ ପ୍ରତ୍ୟୟାନ୍ତ ସାର୍ବଜନୀନ ଶବ୍ଦରେ ଜନ'ର ଈ ଦୀର୍ଘ ହୋଇଥାଏ । ଧନଶାଳୀ ପ୍ରଭୃତି ଶାଲିନ୍ ପ୍ରତ୍ୟୟାନ୍ତ ଶବ୍ଦର ଅନ୍ତରେ ଥିବା ଳ୍'ରେ ଦୀର୍ଘ ଈ ଯୁକ୍ତ ହୋଇଥାଏ । ସ୍ୱକୀୟ, ପରକୀୟ ପ୍ରଭୃତି କୀୟ ପ୍ରତ୍ୟୟର କ୍'ରେ ଦୀର୍ଘ ଈ ଲାଗେ । ଦୃଢ଼ୀକରଣ, ନବୀକରଣ, ପବିତ୍ରୀକୃତ, ସ୍ତୂପୀକୃତ, ବାଷ୍ପୀଭବନ, ଦଗ୍ଧୀଭୂତ, ଭସ୍ମୀଭୂତ, ଚୂର୍ଣ୍ଣୀଭୂତ, ଇତ୍ୟାଦି, ଶବ୍ଦରେ କରଣ, କୃତ, ଭବନ ବା ଭୂତ ପୂର୍ବର ସ୍ୱର ଦୀର୍ଘ ହୁଏ । ନେପାଳୀ, କଟକୀ, ଦେଶୀ, ବଙ୍ଗାଳୀ, ଇତ୍ୟାଦି ଶବ୍ଦର ଅନ୍ତରେ ଦୀର୍ଘ ଈ କାର ଲାଗେ । କାର୍ଯ୍ୟକାରୀ, ସତ୍ୟବାଦୀ, ସ୍ୱେଚ୍ଛାଚାରୀ, ଗୁଣଗ୍ରାହୀ, ଇତ୍ୟାଦି, ଶବ୍ଦର ଅନ୍ତ ସ୍ୱର ଦୀର୍ଘ ଈ । କିନ୍ତୁ ଏହି ବିଶେଷଣଗୁଡ଼ିକରେ ତା ପ୍ରତ୍ୟୟ ଲଗାଇ ବିଶେଷ୍ୟ କରିବାକୁ ହେଲେ ଦୀର୍ଘ ଈ ହ୍ରସ୍ୱ ହୋଇ ଯିବାରୁ କାର୍ଯ୍ୟକାରିତା, ସତ୍ୟବାଦିତା, ସ୍ୱେଚ୍ଛାଚାରିତା, ଗୁଣଗ୍ରାହିତା, ଇତ୍ୟାଦି, ହୋଇଥାଏ ।

ଏ ପର୍ଯ୍ୟନ୍ତ ଏହି ପ୍ରବନ୍ଧରେ ଧ୍ୱନି ଓ ଲିପି ସମ୍ପର୍କରେ ଓଡ଼ିଆ ଭାଷାର କେତେ ଗୁଡ଼ିଏ ନିୟମ ବିଷୟରେ ଆଲୋଚନା କରାଯାଇଛି । କିନ୍ତୁ ମନେ ରଖିବାକୁ ହେବ ଯେ, ଏପରି କୌଣସି ଭାଷା ନାହିଁ, ଯାହାର ପ୍ରତ୍ୟେକ ଶବ୍ଦର ଧ୍ୱନି କେତୋଟି ସୂତ୍ର ମାନି ଚଳିବ । ପୁଷ୍ପ, କୂପ, ରୂପ, ନୀର, କୀଟ, ଭୀତି' ପ୍ରୀତି, ଷାଣ୍ଢ, ଶୀଳ, ନୀଡ଼, ଇତ୍ୟାଦି, ଶବ୍ଦରେ କିମ୍ବା ଶବ୍ଦର ମୂଳ ଧାତୁରେ ଦୀର୍ଘ ସ୍ୱର କାହିଁକି ଲାଗିଛି, ଏହାର କାରଣ କୌଣସି ସୂତ୍ରରେ ମିଳିବ ନାହିଁ । ଇଂରାଜୀରେ assର ଅର୍ଥ ଗଧ ଓ ashର ଅର୍ଥ ପାଉଁଶ କାହିଁକି ହେଲା ପଚାରିଲେ କିଏ କି ଉତ୍ତର ଦେବ । 'ଦେଶ' ଓ 'ଦେଷ' ଶବ୍ଦ ଦୁଇଟିର ଭିନ୍ନ ଭିନ୍ନ ଧ୍ୱନି ସହ ଭିନ୍ନ ଭିନ୍ନ ଅର୍ଥ କାହିଁକି ହେଲା, ଏହାର ଉତ୍ତର କୌଣସି ସୂତ୍ରରେ ନ ମିଳି ଭାଷା ଗଠନର ବିଶିଷ୍ଟତାରେ ମିଳିବ ।

...ମାନ ପ୍ରଶ୍ନ ଉଠେ, "ଓଡ଼ିଆ ଭାଷାର ଧ୍ୱନି ବିଜ୍ଞାନକୁ ଅକ୍ଷୁର୍ଣ୍ଣ ରଖି ଆମେ ଆମର ଉଚ୍ଚାରଣକୁ ପରିମାର୍ଜିତ କରିବା ଏବଂ ତଦନୁସାରେ ବନାନରେ ଯତ୍ନଶୀଳ ହେବା କିମ୍ବା ନିଜ ନିଜ ଇଚ୍ଛା ଅନୁସାରେ ଉଚ୍ଚାରଣ ଓ ବନାନ କରି ଭାଷାକୁ ବିକଳାଙ୍ଗ କରି ଦେବା ?" ଭାଷା ବ୍ୟକ୍ତିଗତ ନୁହେଁ, ଏହା ସାର୍ବଜନିକ । ଉଚ୍ଚାରଣରେ ସ୍ୱେଚ୍ଛାଚାରିତାକୁ ପ୍ରୋତ୍ସାହିତ ନକରି ଯତ୍ନଶୀଳତା ଅବଲମ୍ବନ କଲେ ଭାଷା ସଂରକ୍ଷିତ ହୁଏ । ଅବଶ୍ୟ କୌଣସି ଶବ୍ଦ, ତାର ଉଚ୍ଚାରଣ ଓ ବନାନ ଯେ ସବୁକାଳ ପାଇଁ ଅପରିବର୍ତ୍ତନୀୟ ହୋଇ ରହିବ, ତା ନୁହେଁ । ପୃଥିବୀର କୌଣସି ଭାଷାରେ ଏହା ହୋଇ ନାହିଁ ଏବଂ ହୋଇ ପାରିବ ନାହିଁ । କୌଣସି ଶବ୍ଦର ଉଚ୍ଚାରଣରେ ବ୍ୟତିକ୍ରମ ଯଦି ସାର୍ବଜନୀନ ଓ ବହୁକାଳସ୍ଥାୟୀ ହୋଇଗଲାଣି ଏବଂ ସେହି ପରିବର୍ତ୍ତନ ଯଦି ଭାଷାକୁ ବିକଳାଙ୍ଗ ଓ ତ୍ରୁଟିପୂର୍ଣ୍ଣ କରି ଦେଉ ନାହିଁ, ତେବେ ତା ଅବଶ୍ୟ ଗ୍ରହଣୀୟ । 'ଜ୍ଞାନ୍', 'ଅକ୍ଷି', ପକ୍ଷୀ', 'ଯାନ' ଓଡ଼ିଆରେ ଯଥାକ୍ରମେ 'ଗ୍ୟାନ', ଆଖି, ପଖୀ, ଯାନ (ଜାନ) ହୋଇଯାଇଛି । 'ଉତ୍ସବ' ଶବ୍ଦର ଅପଭ୍ରଂଶ 'ଉଛବ' ହୋଇଯାଇଛି । କେହି ଯୁକ୍ତି କରୁନାହିଁ ଯେ, ଗ୍ୟାନ, ଆଖି, ଯାନ, ଉଛବ, ଇତ୍ୟାଦି, ଶବ୍ଦଗୁଡ଼ିକ ଭୁଲ୍ । କିନ୍ତୁ ଗ୍ୟାନ ଓ ଆଖି ନ ଲେଖି ଜ୍ଞାନ ଓ ଅକ୍ଷି ଲେଖିବାର କୌଣସି ଆବଶ୍ୟକତା ନାହିଁ ଏବଂ 'ଉତ୍ସବ' ଲେଖି 'ଉଚ୍ଛବ' ଉଚ୍ଚାରଣ କରିବା ଏବଂ 'ଜ୍ୟୋତ୍ସ୍ନା' ଲେଖି 'ଜ୍ୟୋଛ୍ନା' ଉଚ୍ଚାରଣ କରିବାର କୌଣସି ଯଥାର୍ଥତା ନାହିଁ । ଲିପିସଂସ୍କାର ବିଷୟରେ ଯୁକ୍ତି କଢ଼ା ଯାଇପାରେ । ବାସ୍ତବରେ ଲିପିସଂସ୍କାର ଆଶୁ ଅନିବାର୍ଯ୍ୟ ହୋଇ ଗଲାଣି । କିନ୍ତୁ ଯେଉଁମାନେ ଓଡ଼ିଆ ଭାଷାକୁ ବିକଳାଙ୍ଗ କରି ଦେଉଛନ୍ତି, ସେମାନେ ପ୍ରକୃତରେ କ'ଣ ଲିପିସଂସ୍କାର କରି ପାରିଛନ୍ତି ? ଲେଖକର ମତରେ ଭାରତୀୟ ଭାଷାମାନଙ୍କର ଗୋଟିଏ ମାତ୍ର ଲିପି ରହିବା ଉଚିତ ଏବଂ ସେହି ଲିପିର ବିଜ୍ଞାନସମ୍ମତ ଆଧୁନିକୀକରଣ ଓ ସଂସ୍କାର ହେବା ଉଚିତ । ଲିପିସଂସ୍କାର ବିଷୟରେ ଅନ୍ୟ ଏକ ପ୍ରବନ୍ଧରେ ଆଲୋଚନା କରଯିବ । ଓଡ଼ିଆ ଭାଷାପ୍ରେମୀମାନଙ୍କୁ ଅନୁରୋଧ, ସେମାନେ ଭାଷାର ଉଚ୍ଚାରଣକୁ ଶୁଦ୍ଧ, ପରିମାର୍ଜିତ ଓ ଧ୍ୱନିବିଜ୍ଞାନସମ୍ମତ କରିବାରେ ଯତ୍ନଶୀଳ ହୁଅନ୍ତୁ ।

୭୧୨ ଶହୀଦନଗର
ଭୁବନେଶ୍ୱର—୭୫୧୦୦୭

## ଲଳିତଗିରିରେ ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟ

ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ସହାୟତାରେ ଲଳିତଗିରିଠାରେ ହେଉଥିବା ଖନନ କାର୍ଯ୍ୟ ରାଜସ୍ୱ, ଶିକ୍ଷା ଓ ଯୁବମଙ୍ଗଳ, ପର୍ଯ୍ୟଟନ ଓ ସାଂସ୍କୃତିକ ବ୍ୟାପାର ରାଷ୍ଟ୍ରମନ୍ତ୍ରୀ ଶେଖ୍ ମତଲୁବ ଅଲ୍ଲି ଗତ ୧ ତାରିଖ ଦିନ ପରିଦର୍ଶନ କରିଥିଲେ । ଏହି ଖନନ କାର୍ଯ୍ୟ ଫଳରେ ଗୁପ୍ତ ଓ କୁଶାଣ ଯୁଗର ମୁଦ୍ରା, ଅନେକ ସ୍ତୂପ, ବୁଦ୍ଧ ମୂର୍ତ୍ତି, ଇଟାର ସନ୍ଧାନ ମିଳିଛି । ଯାଭା, ସୁମାତ୍ରା ଅଞ୍ଚଳରେ ଥିବା କଳା ଓ ଭାସ୍କର୍ଯ୍ୟର ସାମଞ୍ଜସ୍ୟ ଏ ସବୁରେ ପରିଲକ୍ଷିତ ହେଉଛି । ଐତିହାସିକମାନଙ୍କର ମତ ଲଳିତଗିରି ବୌଦ୍ଧ ବିହାର ରତ୍ନଗିରିଠାରୁ ପ୍ରାଚୀନତମ । ଏହାର ଖନନ ପୂର୍ଣ୍ଣାଙ୍ଗ ହେଲେ ବହୁ ଐତିହାସିକ ତଥ୍ୟ ପ୍ରକାଶିତ ହେବ ।

ସମାଜ ସମ୍ପାଦକ ଶ୍ରୀ ରାଧାନାଥ ରଥ, ହିନ୍ଦୁସ୍ଥାନ ଟାଇମ୍ସର ସାମ୍ବାଦିକ ଶ୍ରୀ ଡି.ଆର୍. ଆହୁଜା ଓ ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ ଶ୍ରୀ ଅଲ୍ଲିଙ୍କ ସହିତ ଖନନ କାର୍ଯ୍ୟ ପରିଦର୍ଶନରେ ଯାଇଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗ ଅଧ୍ୟକ୍ଷ ଡକ୍ଟର କରୁଣାସାଗର ବେହେରା ଓ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଅଧ୍ୟକ୍ଷ ଶ୍ରୀ ପ୍ରଶାନ୍ତ କୁମାର ରାୟ ସେମାନଙ୍କୁ ଜାନୁୟାରୀ ୨୮-୧-୧୯୭୭ରୁ ଆରମ୍ଭ ହୋଇଥିବା ସମସ୍ତ ଖନନ କାର୍ଯ୍ୟ ଦେଖାଇଥିଲେ ।

# ଆମେ କେବେ ଓଡ଼ିଆ କହିବା ?

ଶ୍ରୀ ବିଶ୍ୱକଲ୍ୟାଣ ଦାସ,

ମାତୃଭାଷା ମଣିଷର ଜନ୍ମମା'ଙ୍କର ଭାଷା, ମରମର ଭାଷା କହିଲେ ଅତ୍ୟୁକ୍ତି ହେବ ନାହିଁ । ମାତୃଭୂମି ପରି ମଧୁମୟ, ସହଜ ଓ ଉଚ୍ଛଳିତା ହେଉଛି ମାତୃଭାଷା, ଲୋକମାନଙ୍କର ପ୍ରାଣକୁ ଛୁଇଁଥାଏ ଏହାହିଁ ହେଉଛି ଅଭିନ୍ନ ଅଙ୍ଗ । ମାତୃଭାଷା ମନୁଷ୍ୟ ଭାବର ପରିପ୍ରକାଶର ଅଦ୍ୱିତୀୟ ମାଧ୍ୟମ, ଏଥିରେ ମନୁଷ୍ୟର ଯେଉଁ ସ୍ଫୂର୍ତ୍ତି ବୋଧହୁଏ ଅନ୍ୟ କୌଣସି ବିଦେଶୀ ଭାଷାରେ ତାହା ସମ୍ଭବ ନୁହେଁ । ଅନ୍ୟଭାଷା ତାଡ଼ାଉଠୋଇ ଔଷଧ ହେଲେ ମାତୃଭାଷା ଇଞ୍ଜେକ୍ସନ୍ ସଦୃଶ ଅବ୍ୟର୍ଥ ।

ମାତୃଭାଷାର ପ୍ରାଧାନ୍ୟ ଯୁଗେ ଯୁଗେ ସ୍ୱୀକୃତ ହୋଇ ଆସିଅଛି । ବୁଦ୍ଧ, ଅଶୋକ, ମହାବୀର ପ୍ରଭୃତି ମନୀଷିମାନେ ଲୋକମାନଙ୍କର ଭାଷା ବା ମାତୃ-ଭାଷାରେହିଁ ସେମାନଙ୍କର ବାଣୀ ପ୍ରଚାର କରିଥିଲେ । ଜନତା'ର ଭାଷା ଯେ କେବଳ ଜନତା'ର ଆଦର ପାଏ ତା' ନୁହେଁ—ଭଗବାନଙ୍କର ଆଶୀର୍ବାଦ ମଧ୍ୟ ତହିଁରେ ସନ୍ନିବେଶିତ ହୋଇଥାଏ । ଅତିବଡ଼ି ଜଗନ୍ନାଥ ଦାସ ଓଡ଼ିଆରେ ଭାଗବତ ରଚନା କଲେ । ଏହି ଓଡ଼ିଆ ଭାଗବତକୁ ତତ୍‌କାଳୀନ ସଂସ୍କୃତରେ ମହା ପଣ୍ଡିତ ହୋଇଥିବା ବ୍ୟକ୍ତିମାନେ 'ତେଲିଭାଗବତ' କହି ହୁଆ-ଉଡ଼ାଉଥିଲେ । କିନ୍ତୁ ଜଳରେ ଫେଙ୍ଗିଦିଅ ବହୁଦିନକୁ ମାଡ଼ିବାକୁ ପରି କାଳର ଜଳସ୍ରୋତ ମଧ୍ୟରେ ସେହି ତେଲିଭାଗବତ ଓଡ଼ିଆର ପ୍ରତି ଘରେ ଘରେ ଭାଗବତ ଗାଦି ହୋଇ ପୂଜା ପାଇଲା । ଏ ପ୍ରସଙ୍ଗରେ ଅନ୍ୟ ଏକ ଉଦାହରଣ ନିଆଯାଇ ପାରେ । ଶୁଣାଯାଇଥାଏ ଯେ ଗୋସ୍ୱାମୀ ତୁଳସୀ ଦାସ ସଂସ୍କୃତରେ 'ରାମ ଚରିତ ମାନସ' ରଚନା ପ୍ରଥମେ ଆରମ୍ଭ କରିଥିଲେ । କିନ୍ତୁ ପରେ ସେ ଲୋକମାନଙ୍କ କଥିତ ଭାଷାରେହିଁ ତାଙ୍କର ମହାନ୍ ପୁସ୍ତକ ରଚନା ଶେଷ କରିଥିଲେ । ଏହା ଫଳରେ ସଂସ୍କୃତ ପଣ୍ଡିତମାନେ ବିଗିଡ଼ି ଥରେ ଏହି ହିନ୍ଦି ଭାଷାର 'ରାମଚରିତ ମାନସ'କୁ କାଶୀ ବିଶ୍ୱନାଥଙ୍କ ପାଖରେ ପରୀକ୍ଷା କରିଥିଲେ । ରାତିରେ ଦେବତାଙ୍କ ନିକଟରେ ସଂସ୍କୃତ ଓ ହିନ୍ଦି ରାମାୟଣକୁ ଯଥାକ୍ରମେ ଉପର ଓ ତଳ କରି ରଖି ଦିଆଗଲା, କିନ୍ତୁ ସକାଳୁ ଦେଖାଗଲା ତଳେ ରଖା ଯାଇଥିବା ହିନ୍ଦି ଗ୍ରନ୍ଥ ଉପରେ ସ୍ଥାନ ପାଇଛି 'ତେ' ତହିଁ ଉପରେ ''ସତ୍ୟଂ ଶିବଂ ସୁନ୍ଦରଂ'' ଲେଖାହୋଇ ଦେବତାଙ୍କ ସ୍ୱୀକୃତି ପ୍ରାପ୍ତ ହୋଇଛି । ଏ କଥା ମନଗଢ଼ା କାହାଣୀ ହୋଇପାରେ—କିନ୍ତୁ ଲୋକମାନଙ୍କ ମନକୁ ଯେ ସଂସ୍କୃତ ଅପେକ୍ଷା ସେମାନଙ୍କ ନିଜଭାଷା ଅଧିକ ଭଲ ଲାଗିଲା ସେଥିରେ ସନ୍ଦେହ ନାହିଁ ।

ଇଂଲଣ୍ଡର ବିଶ୍ୱବିଖ୍ୟାତ କବି ମିଲଟନ୍‌ ତାଙ୍କର ''ପାରାଡାଇଜ୍ ଲଷ୍ଟ'' କବିତାଟିକୁ ଇଂରେଜୀରେ ଲେଖି-ଥିଲେ ଯଦିଓ ସେ ସମୟକୁ ଇଂଲଣ୍ଡରେ ଲାଟିନ୍ ଭାଷାର ପ୍ରଭାବ ଖୁବ୍ ବେଶୀ ଥିଲା । ଏଥିରେ କବି 'ମିଲଟନ୍'ଙ୍କର ଯାହାହେଲା ବା ନ ହେଲା, କିନ୍ତୁ ଇଂରେଜୀ ଭାଷାର ଯେ ସମ୍ମାନ ଓ ଶ୍ରୀବୃଦ୍ଧି ଅଧିକ ହେଲା ତାହା ନିଃସନ୍ଦେହ । ପୁରାତନ କଥା ଛାଡ଼ି ଦେଲେ ଆଧୁନିକ ଯୁଗରେ ବିଜ୍ଞାନ ପ୍ରଧାନ ରୁଷ୍ ଦେଶରେ ରୁଷ୍ ଭାଷା ଓ ଜାପାନ୍‌ରେ ସେଇ ଜାପାନୀ, ପୁଣି ଯୁକ୍ତରାଷ୍ଟ୍ର ଆମେରିକାର ଇଂରେଜୀ ଭାଷା ଇଂଲଣ୍ଡର ଇଂରେଜୀ ଠାରୁ ଅନେକ ପୃଥକ୍ ।

ପଣ୍ଡିତ ନେହେରୁ ଥରେ ଗୋଟିଏ କମ୍ୟୁନିଟି ପ୍ରୋଜେକ୍ଟ ଦେଖିବାକୁ ଯାଇଥିଲେ । ସେଠି ସେ ଦେଖିଲେ ଯେ ପ୍ରକଳ୍ପର ପତ୍ରସବୁ ଇଂରେଜୀରେ ଛପା ହୋଇଛି । ଏଥିରେ କ୍ଷୁବ୍ଧ ହୋଇ ସେ କହିଥିଲେ ଯେ ପ୍ରୋଜେକ୍ଟ ଡିରେକ୍ଟରମାନେ କେବଳ ଆଦେଶ ନ ଦେଇ ନିଜେ କୋଡି କୋଦାଳ ଧରି କ୍ଷେତଖମାରକୁ ଓହ୍ଲେଇ ପଡ଼ିବା ଉଚିତ୍ । ଦ୍ୱିତୀୟତଃ ପ୍ରଚାର ପତ୍ର ସବୁ ଆମ ଦେଶୀ ଭାଷାରେ ନ ଲେଖିଲେ ଯୋଜନାର ସମସ୍ତ ଅଭିମୁଖୀ ଲୋକମାନଙ୍କର ବୋଧଗମ୍ୟ ନ ହୋଇ ଏକ ଚିତ୍ରଡ଼ିମାକାର ରୂପ ଗ୍ରହଣ କରିବ ଏବଂ ସମସ୍ତ କାର୍ଯ୍ୟକ୍ରମ ନିଷ୍ଫଳ ହେବ । ସାଧାରଣରେ କୌଣସି ବିଷୟ ବୁଝାଇବାପାଇଁ ସେଇ ଲୋକ ସାଧାରଣଙ୍କ ଭାଷାହିଁ ବ୍ୟବହାର ପାଇଁ ପ୍ରକୃଷ୍ଟ ଏଥିରେ ଯୁକ୍ତି କରିବାର ନାହିଁ ।

ଆମ ଦେଶରେ ଅନେକ ଶିକ୍ଷିତ ଲୋକ ଯୁକ୍ତି କରନ୍ତି ଯେ ଜ୍ଞାନ ଆହରଣ ପାଇଁ ଇଂରେଜୀ ଗୋଟାଏ ଅସଲ ପାଇପ୍‌ଲାଇନ୍ । ସେଇ ଲାଇନ୍‌ଟାକୁ ବନ୍ଦ୍ କରିଦେଲେ ଜ୍ଞାନର ଧାରଟା ଏକ୍‌ବାର୍‌କେ ଶୁଖିଲା ପଡିଯିବ । ଦ୍ୱିତୀୟତଃ ଇଂରେଜୀ ଭାଷା ଜରିଆରେ ଆକୁମାରୀ ହିମାଳୟ ସମଗ୍ର ଭାରତ ବର୍ଷରେ ରାଜନୈତିକ ଏକତା ଆସିଛି, ଇଂରେଜୀ ହଟିଗଲେ ଆମ ଏକତାରେ ଆଞ୍ଚ ଆସିବ ।—ପ୍ରଥମ କଥା ହେଉଛି—ଇଂରେଜୀ ପାଇପ୍‌ଲାଇନ୍ ହେଇପାରେ କିନ୍ତୁ ଲାଇଫ୍ ଲାଇନ୍ ତ ନୁହେଁ ? ଏଥିରେ ନିର୍ଦ୍ଦିଷ୍ଟ କେତେଜଣ ବ୍ୟକ୍ତିହିଁ ଜ୍ଞାନ ଆହାରଣ କରନ୍ତି ଏବଂ କରିବେ ସତ କିନ୍ତୁ ସମଗ୍ର ଜାତିର ପ୍ରାଣ-ସ୍ଫୂର୍ତ୍ତି ଘଟିନାହିଁ କିମ୍ବା ବିସ୍ତୃତ ହୋଇନାହିଁ । ଏଇ ଲାଇନ୍‌ରେ ଯେତେ ଜଳ ଆସିଛି ସେଥିରେ ଶତକଡ଼ା ମାତ୍ର ଚାରିରୁ ପାଞ୍ଚ ଭାଗ ଜମି ଓଠିଆ ହୋଇଛି—ତାହା ପୁଣି ଦୀର୍ଘ ଦୁଇଶହ ବର୍ଷରେ, ଅର୍ଥାତ୍ ଇଂରେଜୀ ଶିକ୍ଷା ଏ ଦେଶରେ ଆରମ୍ଭ ହେଲାଦିନୁ ମୋଟେ ଶହେରେ ଚାରିରୁ ପାଞ୍ଚ ଜଣ ଇଂରେଜୀ ଶିଖି ପାରିଛନ୍ତି । ସେହି ଭିତରେ ଇଂରେଜୀରେ ଦସ୍ତଖତ୍ କରି ଶିଖିବା ଲୋକ-ଠାରୁ ଆରମ୍ଭ କରି ମହା ପଣ୍ଡିତ ବୋଲାଉଥିବା ବ୍ୟକ୍ତି ମଧ୍ୟ ଅନ୍ତର୍ଭୁକ୍ତ । ଏ ଦେଶରେ ଇଂରେଜ୍‌ମାନେ ତାଙ୍କ ଦେଶ ଅନୁକରଣରେ ଯେଉଁସବୁ ବିଶ୍ୱବିଦ୍ୟାଳୟ ଓ ବିଦ୍ୟାଳୟମାନ ବସାଇଲେ, ଏ ଦେଶର ସାଧାରଣ ଜନତାକୁ ତାହା କୌଣସି ପ୍ରକାରେ ପ୍ରଭାବିତ କରିପାରିଲା ନାହିଁ । ଆମ ଦେଶରେ ବିଶ୍ୱବିଦ୍ୟାଳୟର ଭାଷାଠାରୁ ସାଧାରଣ ଲୋକର ଭାଷା ଭିନ୍ନ, କିନ୍ତୁ ଇଂଲଣ୍ଡରେ ଲୋକଙ୍କର ଭାଷା ଯାହା—ବିଶ୍ୱବିଦ୍ୟାଳୟର ଅଧ୍ୟୟନ ମାଧ୍ୟମହିଁ ସେଇଆ । ତେଣୁ ବିଶ୍ୱବିଦ୍ୟାଳୟରେ ନିତ୍ୟ ନୂତନଜ୍ଞାନ ଗ୍ରହଣ କରିବାରେ ଯେଠି ସାଧାରଣରେ ଯାହା ସମ୍ଭବ ଏଠି ତା କିପରି ହେବ ? ଏଠି ଲୋକେ ଆମର କେବଳ ବିଶ୍ୱବିଦ୍ୟାଳୟର କୋଠାବାଡ଼ି ଦେଖନ୍ତି । ହେଲେ ଯେ ଗଛର ଫଳ ସେମାନେ ଖାଇ ପାରନ୍ତି ନାହିଁ । ଆଉ ଦ୍ୱିତୀୟରେ 'ଏକତା' ପ୍ରସଙ୍ଗ । ଇଂରେଜୀ ଭାଷା, ଏ ଦେଶରେ ଇଂରେଜି ପଢ଼ା 'ବାବୁ ଜାତି' ଭିତରେ ଏକତା ଆଣି ପାରିଥାଏ, କିନ୍ତୁ ଏହି ବାବୁ ଜାତି ଓ ସାଧାରଣ ଇଂରେଜୀ ଅନଭିଜ୍ଞ ଜନତା ମଧ୍ୟରେ ଇଂରେଜୀଭାଷା ଓ ସଂସ୍କୃତିହିଁ ମେଘନାଦ ପାଚେରୀ ପରି ଛିଡ଼ା ହେଇଛି । ଏଇ ମେଘନାଦ ପାଚେରୀ ସୃଷ୍ଟି କରି ଇଂରେଜୀବଣିକ ଆମ ଉପରେ ଦୁଇ ଶତାବ୍ଦୀର ସ୍ୱଚ୍ଛନ୍ଦ୍ ଶାସନ କରିଗଲେ । କିନ୍ତୁ ଏବେ ଆମେ ଏକତା ପାଇଁ ଆଗ ସେଇ ପାଚେରୀକୁ ଭାଙ୍ଗିବା କଥା ।

ଇଂରେଜୀମାନଙ୍କୁ ପ୍ରଶଂସା କରିବାର ଅନେକ ଉପାଦାନ ରହିଛି । ଇଂରେଜ୍ ଗୋଟାଏ ବିରାଟ ଜାତି, ଇଂରେଜୀଭାଷା ମଧ୍ୟ ତତୋଽଧିକ । ଆଉ ଇଂଲଣ୍ଡର ଜଳବାୟୁ ସ୍ୱାସ୍ଥ୍ୟକର । ପୁଣି ଦୃଶ୍ୟ ମନୋରମ, ଯାବୋଲି ସବୁ ଭାରତୀୟ ସେଠି ଯାଇ ରହି ପାରିବେ ନାହିଁ । ଆମକୁ ଆମରି ଦେଶରେ, ଆମରି ପାଣି ପବନରେ ଓ ଆମରି ଭାଷା ସାହିତ୍ୟ ଜରିଆରେ ସମୃଦ୍ଧ ହେବାକୁ ପଡ଼ିବ । ବିଦେଶୀ ଭାଷାରେ ବିଜ୍ଞାନ ଓ ବାଣିଜ୍ୟ ପରିପୁଷ୍ଟ ହୋଇପାରେ କିନ୍ତୁ ଜାତୀୟ ଆତ୍ମାର ପରିପୁଷ୍ଟି ହେଇ ପାରେନା । ଇଂରେଜୀ ଭାଷା ଛାଡ଼ିଦେଲେ ଦେଶର ଲୋକେ ବିଜ୍ଞାନଠାରୁ ସମ୍ପର୍କ ତୁଟାଇ ବସିବେ ବୋଲି କେତେକଙ୍କର ମତ । କିନ୍ତୁ ସତକଥା କହିବାକୁ ଗଲେ ପରଘର ତିଅଣ ଯଦି ସୁଆଦ ଲାଗେ ତେବେ ଆମେ କ'ଣ ଘରେ ତିଅଣ ରାନ୍ଧିବାନି ? ବିଜ୍ଞାନ, ଜ୍ଞାନ ଯାହା ହେଉନା କାହିଁକି ସବୁକୁ ଅନୁବାଦ ଜରିଆରେ ଆମ ନିଜ ଭାଷାକୁ ଆଣି ପାରିଲେ ଯାଇ ଦେଶର ସବୁଲୋକେ ଜ୍ଞାନର ସ୍ୱାଦ ଅନୁଭବ କରିପାରିବେ ।

ଆମ ଦେଶରେ ଭାଷା ସମସ୍ୟା କହିଲେ ଆମେ କେବଳ ହିନ୍ଦି ଓ ଇଂରେଜୀ ଭାଷା କଥା ବୁଝୁ । ଆଞ୍ଚଳିକ ଭାଷା ପ୍ରସଙ୍ଗ ବିଶେଷକରି କାହାରି ମନକୁ ଆସି ନଥାଏ । କିନ୍ତୁ ପ୍ରକୃତ ପକ୍ଷେ ଆଞ୍ଚଳିକ ଭାଷା ଜନତା ପାଇଁ ଯଥାର୍ଥ ପ୍ରୟୋଜନ । ଅନ୍ନବସ୍ତ୍ର ପରି ତା'ର ଆବଶ୍ୟକ ନିତାନ୍ତ । ସେଥିପାଇଁ ଅର୍ଥନୀତି କ୍ଷେତ୍ରରେ ଗାନ୍ଧିଜୀ ବିଦେଶୀ ବର୍ଜନ କରି ସ୍ୱଦେଶୀ ବ୍ୟବହାର କରିବାକୁ ଯେମିତି କହିଲେ—ବିଦେଶୀ ଭାଷା ଇଂରେଜୀ ବର୍ଜନ କରି ସେହିପରି ନିଜ ନିଜ ଭାଷାକୁ ସମୃଦ୍ଧ କରିବାକୁ ଆହ୍ୱାନ

ଦେଇଥିଲେ । ତାଙ୍କ ମତରେ ମାତୃଭାଷା ପ୍ରତି ମମତା ନ ଥିବା ଲୋକଙ୍କୁ ଦେଶଭକ୍ତ କୁହାଯାଇ ନ ପାରେ । ଓଡ଼ିଆ କବିଙ୍କ ଭାଷାରେ—

"ମାତୃଭୂମି ମାତୃଭାଷାରେ ମମତା
ଯା'ହୃଦେ ଜନମି ନାହିଁ
ତା'କୁ ଯଦି ଜ୍ଞାନୀ ଗଣରେ ଗଣିବା
ଅଜ୍ଞାନୀ ରହିବେ କାହିଁ ?"

ଗଣତନ୍ତ୍ରର ମୂଳମନ୍ତ୍ର ହେଲା ଶିକ୍ଷା, ପ୍ରତ୍ୟେକ ନାଗରୀକ ଉପଯୁକ୍ତ ଶିକ୍ଷା ନ ପାଇବା ପର୍ଯ୍ୟନ୍ତ ଗଣତନ୍ତ୍ରର ସୁଫଳ ମିଳି ପାରିବ ନାହିଁ । ଯାହା ଆଜି ଆମ ଦେଶରେ ହେଉଛି । ସମସ୍ତ ଜନତାଙ୍କୁ ଅଳ୍ପ ସମୟ ମଧ୍ୟରେ ଶିକ୍ଷିତ କରିବାକୁ ହେଲେ ମାତୃଭାଷାହିଁ ସର୍ବୋତ୍କୃଷ୍ଟ ମାଧ୍ୟମ । ବିଦେଶୀ ଭାଷାରେ ଗଣଶିକ୍ଷା କୌଣସିଠାରେ କେଉଁକାଳେ ସମ୍ଭବ ହୋଇ ନାହିଁ । ସେହି ହେତୁହିଁ ଇଂରେଜୀ ଶିକ୍ଷା ଦୀର୍ଘ ଦୁଇଶହ ବର୍ଷ ହେବ ଆମ ଦେଶରେ ଚାଲିଥିଲେ ମଧ୍ୟ ଶହେରେ ଦଶଜଣ ଲୋକ ବି. ଏ. ପର୍ଯ୍ୟନ୍ତ ଇଂରେଜୀ ଶିଖି ପାରିଲେ ନାହିଁ ।

ମାତୃଭାଷାରେ ମନୁଷ୍ୟର ଯେଉଁ ସ୍ଫୂର୍ତ୍ତି ହୁଏ ଅନ୍ୟ କୌଣସି ଦ୍ୱିତୀୟ ଭାଷାରେ ତାହା ସମ୍ଭବ ନୁହେଁ । ଭାରତର ଜଣେ ପ୍ରସିଦ୍ଧ ଲେଖକ ଶ୍ରୀ ଅନ୍ନଦାଶଙ୍କର ରାୟଙ୍କ ମତରେ "ନିଜକୁ ପ୍ରକାଶ କରିବା ପାଇଁ ମାତୃଭାଷା ସବୁଠାରୁ ସହଜ ଓ ସ୍ୱାଭାବିକ୍ ମାଧ୍ୟମ ଏଥିରେ କହିବାର କିଛି ନାହିଁ ।"

ବିଦେଶୀ ଭାଷାରେ ଶିକ୍ଷା ଦେବାରେ ଗୋଟାଏ ପ୍ରଧାନ ଅସୁବିଧା ହେଲା—ଶିକ୍ଷାଟା ସହଜରେ ଲୋକଙ୍କ ଭିତରେ ପ୍ରସାରିତ ହୋଇ ପାରେନାହିଁ । ଓଡ଼ିଶାରେ ଯେତେବେଳେ କୃଷି ମହାବିଦ୍ୟାଳୟ ସ୍ଥାପିତ ହେଲା—କେତେକ ମତ ଦେଲେ ଏଠାରେ ଶିକ୍ଷାର ମାଧ୍ୟମକୁ ଓଡ଼ିଆ ରଖିବା ପାଇଁ କିନ୍ତୁ ଆମ ବଡ଼ବଡ଼ିଆ କର୍ତ୍ତାମାନଙ୍କ ଉପଯୁକ୍ତ ଜ୍ଞାନର ଓ ସତ୍ସାହସର ଅଭାବରୁ ଗତାନୁଗତିକ ଭାବେ ଇଂରେଜୀ ଭାଷାରେ ଶିକ୍ଷା ଦିଆହେଲା । ଫଳତଃ ସେଠା ଛାତ୍ରମାନେ କେବଳ ସେଠି ବହି କାଗଜରେ ଯୁଦ୍ଧ କଲେ । ଏଣେ କୃଷିର ଉନ୍ନତିରେ ଦର୍ଶନଇ ନାହିଁ । ଓଡ଼ିଆରେ ଶିକ୍ଷା ଦିଆଯାଇଥିଲେ ବହୁ ଅର୍ଦ୍ଧଶିକ୍ଷିତ ଓ ଅଶିକ୍ଷିତ କୃଷକ ସେ ଜ୍ଞାନ ଆହରଣ କରିପାରିଥା'ନ୍ତେ ଏବଂ କୃଷିର ନିଶ୍ଚୟ ଅଧିକ ଉନ୍ନତି ହୋଇ ପାରିଥା'ନ୍ତା ।

ଜାପାନୀମାନେ ଯେତେବେଳେ ଜାଣିଲେ—ସେମାନଙ୍କର ଇଂରେଜୀ ଶିଖିବା ଦରକାର—ସେମାନେ ଇଂଲଣ୍ଡକୁ ଲୋକ ପଠାଇ ଇଂରେଜୀ ତାଲିମ ଦେଲେ ଓ ନିଜ ଦେଶରେ ଇଂରେଜୀ ଶିକ୍ଷାର ପ୍ରଚଳନ କଲେ । ୧୮୬୭ ରୁ ସେ ଦେଶରେ ଇଂରେଜୀ ଶିକ୍ଷା ଉପରେ ନଜର ଦିଆଯାଇଥିଲେ ବି ଇଂରେଜୀ ସେଠି କାହିଁକି ଶିକ୍ଷା କିମ୍ବା ଶାସନର ମାଧ୍ୟମରୂପେ ଗୃହୀତ ହେଲା ନାହିଁ ? ଜାପାନ୍‌ରେ ଆଗ ଜାପାନୀ, ପରେ ଇଂରେଜୀ । ଆଗ ମା' ପରେ ମାଉସୀ', ନିଜ ମାତୃଭାଷା ଜରିଆରେ ଜାପାନୀମାନେ ଜ୍ଞାନ ଉତ୍ତମରୂପେ ଜୀର୍ଣ୍ଣ କରି, ରକ୍ତରେ ମିଶାଇ ଦେଇଥିବା ସ୍ଥଳେ ବିଦେଶୀ ମାଧ୍ୟମରେ ତାହା ଆମ୍ଭମାନଙ୍କର ଅଜୀର୍ଣ୍ଣର କାରଣ ହୋଇଛି । ଇଂରେଜୀ ମାଧ୍ୟମ ଆମକୁ ଉଚ୍ଚଶିକ୍ଷା ଦେଇ ପାରିଥାଏ କିନ୍ତୁ ଉଚ୍ଚ ଚିନ୍ତା କରିବାକୁ କେବେହେଲେ ଶିକ୍ଷା ଦେଉ ନାହିଁ । ବିଶ୍ୱବିଦ୍ୟାଳୟର ଉପାଧି ଗ୍ରହଣ କଲାବେଳେ ଉପାଧିଧାରୀ ଯେଉଁ ଖୋଳ ପିନ୍ଧିଥାନ୍ତି—ଉପାଧି ନେଇ ସାରିଲା ପରେ ତା'କୁ କାନ୍ଥରେ ଟାଙ୍ଗି ଦିଅନ୍ତି—ସେପରି କଲେଜ୍‌ରୁ ଫେରି ପିଲାମାନେ ଇଂରେଜୀ ଭାଷାକୁ ତାଙ୍କ ପକେଟରେ ରଖିଦିଅନ୍ତି । ଯେଉଁ ଖାଦ୍ୟକୁ ଚୋବାଇ ନପାରି ଗିଳି ଦିଆଯାଏ ତାହା ଦ୍ୱାରା ଉଦର ଭାରକ୍ରାନ୍ତ ହୁଏ ସିନା, ଶରୀରରେ ରକ୍ତ ସୃଷ୍ଟି ହୁଏନାହିଁ ।

ଦୀର୍ଘ ଦୁଇଶତାବ୍ଦୀର ବିଦେଶୀ ଶାସନରୁ ଆମ୍ଭେମାନେ ଇଂରେଜମାନଙ୍କ ଠାରୁ ତାଙ୍କର ଅନେକ ଗୁଡ଼ିଏ କେବଳ ବଦ୍‌ଗୁଣ ଅନୁକରଣ ନୁହଁ—ଯଥାର୍ଥରେ ଅନୁକରଣ କରିଛୁ । ସେମାନଙ୍କର ଜାତି—ପ୍ରୀତି, ସ୍ୱାଧୀନତା ବୋଧ ଇତ୍ୟାଦି କୌଣସି ସଦ୍‌ଗୁଣ ଆମ୍ଭମାନଙ୍କର ଆଦର୍ଶ ହେଲାନାହିଁ ।

ଯତ୍‌କିଞ୍ଚିତ୍ ଇଂରେଜୀ ଶିକ୍ଷା ଲାଭ କରି ଆମେ ନିଜକୁ ସାଧାରଣଠାରୁ ଖୁବ୍ ଉଚ୍ଚତର ଦେଖୁଛୁ । ଆମ୍ଭମାନଙ୍କର ଅଯଥା ଇଂରେଜୀ ପ୍ରୀତିର ଗୋଟିଏ ଉଦାହରଣ ହେଲା କୌଣସି ସମ୍ବୋଧନ ନିମନ୍ତେ ଇଂରେଜୀ ଭାଷା ବ୍ୟବହାର କରିବା । କାହିଁକି ଆମ ନିଜ ଭାଷା କ'ଣ ଏତେ ଅନାଦରର ?

ଥରେ କେତେଜଣ ଭାରତୀୟ ରୁଷ୍‌କୁ ଏକ ପ୍ରତିନିଧି ଦଳରେ ଯାଇଥିଲେ । ସେମାନେ କେହି ରୁଷ୍ ଭାଷା ଜାଣିନଥିବାରୁ ସେମାନଙ୍କ ସାଙ୍ଗରେ ଜଣେ ରୁଷ୍ ଭାଷା ଜାଣିଥିବା ଜଣେ ଇଣ୍ଟରପ୍ରିଟର ମଧ୍ୟ ଗଲେ । ଏହି ଭାରତୀୟମାନଙ୍କ ମଧ୍ୟରୁ ଥରେ ଦୁଇ ତିନିଜଣ ବସି ମଜା ଗପ କରୁଥିଲେ । ଆଉ ସେମାନେ ଗପୁଥିଲେ ଇଂରେଜୀରେ । ଏହା ଶୁଣି ରୁଷୀୟ ଭଦ୍ରବ୍ୟକ୍ତି ଜଣେ କହିଲେ: ଆପଣମାନଙ୍କର ନିଜର କ'ଣ କୌଣସି ଭାଷା ନାହିଁ ? ଆପଣମାନେ ମଉଜରେ ଗପିଲା ବେଳେ ମଧ୍ୟ ଇଂରେଜୀରେ କଥା ହୁଅନ୍ତି ?" ସେମାନେ କିଛି ଜବାବ୍

...ବେଳେ ଲୁଚି ରହିବାକୁ ବାଧ୍ୟ ହେଲେ ଏବଂ ମନେ ମନେ କ୍ଷୁବ୍ଧ ହେଲେ ମଧ୍ୟ, ଭାରତୀୟମାନଙ୍କ ଇଂରେଜୀ ପ୍ରୀତିକୁ ପରିହାସ କରି ( ଭାରତୀୟ ) ଉଚ୍ଚତମ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧୀଶ ମରିସ୍‌ଗୟର୍ ଥରେ କହିଥିଲେ । ଆଶ୍ଚର୍ଯ୍ୟ କଥା । ଭାରତୀୟମାନେ ତାଙ୍କ ପ୍ରେମପତ୍ର ପର୍ଯ୍ୟନ୍ତ ଇଂରେଜୀରେ ଲେଖନ୍ତି ।" ବାସ୍ତବିକ୍ ଯେଉଁ ଜାତି ସ୍ୱାଧୀନ ସେ ଅନ୍ୟର ପରାଧୀନ ମନୋବୃତ୍ତିକୁ କେବେ ପସନ୍ଦ କରି ପାରେନା ।

ଆମ ଇଂରେଜୀ ପ୍ରୀତିର ଅନେକ ଉଦାହରଣ ମଧ୍ୟରୁ ଗୋଟିଏ ହେଲା : କେତେକ କହନ୍ତି ପିଲାମାନଙ୍କୁ କନ୍‌ଭେଣ୍ଟ ସ୍କୁଲ୍‌ରେ ପଢ଼ାଇଲେ ସେମାନେ ଅଧିକ ସ୍ମାର୍ଟ ଓ ଆଗୁଆ (ଫରୱାର୍ଡ) ହୋଇଯାʼନ୍ତି । ଅନ୍ୟ ପକ୍ଷରେ ଦେଖିଲେ ଇଂରେଜୀ ବିଦ୍ୟାଳୟରେ ନପଢ଼ି ନିଜ ଭାଷାର ବିଦ୍ୟାଳୟମାନଙ୍କରେ ଯେଉଁମାନେ ଶିକ୍ଷା ଗ୍ରହଣ କରିଛନ୍ତି, ସେମାନେ କʼଣ ସମସ୍ତେ ମୂଲ୍ୟହୀନ ହୋଇ ଯାଉଛନ୍ତି ? କଥାଟା କିନ୍ତୁ ହେଲା ଇଂରେଜୀ ଭାଷା ପ୍ରତି ଆମେ ଏତେଦୂର ଆନୁଗତ୍ୟ ପ୍ରକାଶ କରୁ ଯେ ଆମେ ବାପାଙ୍କୁ 'ଡାଡ଼ୀ' ଓ ବୋଉ ବା 'ମାʼଙ୍କୁ 'ମାମୀ' ଡାକି ନିଜକୁ ଉନ୍ନତରମ ନେଉଛୁ । ଆମର ମନେ ରଖିବାର କଥା ଯେ କୁଣିଆ ଯେତେ ଆଦରର ହେଲେବି ଆଉ ଯେତେ ମହାନ୍ ହେଲେବି ତାଙ୍କର ସ୍ଥାନ ବାହାର ଘରେ ଡ୍ରଇଂ ରୁମ୍‌ରେ କିନ୍ତୁ ଭିତର ଶୋଇବା ଘରେ ନୁହେଁ ।

ସ୍ୱର୍ଗତ ଅଧ୍ୟାପକ ଗୋଲକ ବିହାରୀ ଧଳଙ୍କ ମତରେ "ଇଂରେଜୀକୁ ଭାରତରୁ ବିଦାୟ ଦେବାକୁ କେହି କହିନାହିଁ—ଇଂରେଜୀ ରହିବ କିନ୍ତୁ ଜାତୀୟ ଭାଷା ଭାବରେ ନୁହେଁ । ଶାସନ କିମ୍ବା ଶିକ୍ଷାର ମାଧ୍ୟମ ଭାବରେ ନୁହେଁ, ରହିବ ବାଣିଜ୍ୟ ବ୍ୟବସାୟରେ, ରହିବ ବୈଦେଶିକ ସମ୍ପର୍କରେ । ଇଂରେଜୀ ଭାଷା ବିରୁଦ୍ଧରେ ବିଦ୍ୱେଷ ଆମର ନୁହେଁ, ବିଦ୍ୱେଷ କେବଳ ତାʼର ଅଯଥା ଆଧିପତ୍ୟ ବିରୁଦ୍ଧରେ । ଇଷ୍ଟଇଣ୍ଡିଆ କମ୍ପାନୀ ବଣିକ ମାନଙ୍କ ବିରୁଦ୍ଧରେ ଆମର କିଛି କହିବାର ନଥିଲା, କିନ୍ତୁ ବଣିକ ଯେତେବେଳେ ବାଦ୍‌ସାହା ସାଜିଲେ, ସେତେବେଳେ ଭାରତରୁ ତାଙ୍କୁ ଘଉଡ଼ିବା ହେଲା ଆମର ପ୍ରଧାନ ସମସ୍ୟା" ।

ଗାନ୍ଧିଜୀ ଓ ରବୀନ୍ଦ୍ରନାଥ ମାତୃଭାଷା ସମ୍ପର୍କରେ ଯାହା କହୁଥିଲେ, ସେମାନେ ଯେ କେବଳ ଜାତୀୟତା ଦୃଷ୍ଟିକୋଣରେ ବସିଯାଇ କହୁଥିଲେ ତାʼ ନୁହେଁ । ସେମାନଙ୍କ ଦୃଷ୍ଟିକୋଣ ଥିଲା ଯଥେଷ୍ଟ ବାସ୍ତବତା ମୂଳକ । ଶିକ୍ଷା ବିଷୟ ନେଇ ସ୍ୱାଧୀନତା ପରେ ଯେତେ ଯେତେ କମିଟି କମିସନ୍ ବସୁ ବସିଥିଲେ ସମସ୍ତେ ସେଇ ଏକ ସ୍ୱରରେ କହିଲେ ମାତୃଭାଷା ଶିକ୍ଷା ସବୁ ଶିକ୍ଷାର ମୂଳମନ୍ତ୍ର । କିନ୍ତୁ ଲକ୍ଷ କରିବାର କଥା— ଇଂରେଜୀ ଭାଷା ଏ ଜାତି ଉପରେ କି ଇନ୍ଦ୍ରଜାଲ ସୃଷ୍ଟି କରିଛି, ଏ ପର୍ଯ୍ୟନ୍ତ ଏତେ ଝଡ଼ ଝଞ୍ଜା ଭିତରେ ମଧ୍ୟ ମାତୃଭାଷା ପ୍ରତି ଆମର ଉପଯୁକ୍ତ ସମ୍ମାନ ଜ୍ଞାନ ଆସିନାହିଁ । ଆମ ବିବାହ ବ୍ରତ ନିମନ୍ତ୍ରଣ ପତ୍ର ଲେଖା ହେଉଛି ଇଂରେଜୀରେ । ଆମ ଦୋକାନ ବୋର୍ଡ ହେଉଛି ଇଂରେଜୀରେ, ଆମ ପୁଅ ଝିଅଙ୍କ ନାଁ ମଧ୍ୟ ଇଂରେଜୀରେ ଦିଆଯାଉଛି । ଅଥଚ ଆମ ନିଜ ଭାଷା ପ୍ରତି ଯିଏ ଯେଉଁ ପ୍ରକାରର ବ୍ୟବହାର କଲେ ବି ଆମେ ବେଶି ବ୍ୟଗ୍ର କିମ୍ବା ଚିନ୍ତିତ ନୋହୁଁ ।

ଭାରତରେ ସବୁ ପ୍ରକାର ଶିକ୍ଷା ଇଂରେଜୀରେ ହେଉଥିଲା, ଏବେ ଆଞ୍ଚଳିକ ଭାଷାମାନଙ୍କରେ ହୋଇ ପାରିବ କି ନାହିଁ, ଏ ପ୍ରସଙ୍ଗରେ ରୁଷ୍ ଓ ଜାପାନ୍ ଦୁଇ ବିଜ୍ଞାନ ସମୃଦ୍ଧ ଦେଶଙ୍କ ଉଦାହରଣ ଆମ୍ଭମାନଙ୍କର ଗ୍ରହଣୀୟ । ପ୍ରଥମେ ଲାଟିନ୍‌ରେ ଯେଉଁ ବିଜ୍ଞାନ ଲେଖା ଆରମ୍ଭ ହୋଇଥିଲା ସେ ସବୁ ଇଂରେଜୀ ଓ ରୁଷ୍ ଭାଷାରେ ବେଶି ପ୍ରଚଳିତ । ଆଞ୍ଚଳିକ ଭାଷାରେ ବିଜ୍ଞାନ ଶିକ୍ଷା ଦେବାର ଦୁଇଟି ଉଦ୍ଦେଶ୍ୟ ରହେ—ଗୋଟିଏ ହେଲା ଲୋକମାନଙ୍କ ମଧ୍ୟରେ ବିଜ୍ଞାନର ପ୍ରସାର ତଥା ମାତୃଭାଷାର ଉନ୍ନତି । ବିଜ୍ଞାନର ପ୍ରସାର ପାଇଁ ମାତୃଭାଷାହିଁ ସର୍ବୋତ୍କୃଷ୍ଟ । ଓଡ଼ିଆ ଲୋକମାନଙ୍କ ମଧ୍ୟରେ ବିଜ୍ଞାନର ଆଲୋକ ବିକୀରଣ କରିବା ପାଇଁ ତଥା ଓଡ଼ିଆ ଭାଷାକୁ ସମୃଦ୍ଧ କରିବାପାଇଁ, ଓଡ଼ିଆ ଭାଷାରେ ବିଜ୍ଞାନ ଶିକ୍ଷା ଦେବାର ବ୍ୟବସ୍ଥା ସର୍ବାଦୌ ବିଧେୟ ।

ଏଥର ଆମ ଓଡ଼ିଆ ଭାଷା ସାହିତ୍ୟ ସମ୍ପର୍କରେ ଦୁଇ ପଦ ଅବତାରଣା କରାଯାଇପାରେ । ଏଠାରେ ଲୋକଚେତନା ଟିକିଏ କମ୍ ଓ ତଦୁପରି ଆମ୍ଭମାନଙ୍କର ଇଂରେଜୀ ପ୍ରେମ ଟିକିଏ ବେଶୀ । ଏ କ୍ଷେତ୍ରରେ ଭାରତର ଅନ୍ୟାନ୍ୟ ପ୍ରଦେଶମାନଙ୍କରେ ଅନେକ ସ୍ଥଳେ ଆଞ୍ଚଳିକ ଭାଷା ଉଭୟ ବିଦ୍ୟାଳୟ ତଥା ବିଶ୍ୱବିଦ୍ୟାଳୟ ସ୍ତରରେ ଆଧିପତ୍ୟ ବିସ୍ତାର କରିସାରିଲାଣି । ସେଠା ଗାଡ଼ି, ମଟର, କୋଠାବାଡ଼ି ଓ ଦୋକାନ ବଜାରରେ ନାମଫଳକ ସବୁ ଆଞ୍ଚଳିକ ଭାଷାରେ ଲେଖା ହୋଇ ଅନେକ ଦିନ ହେଲା ଖୁଲିଲାଣି । ସେଠାକାର କୋର୍ଟ କଚେରୀରେ ମଧ୍ୟ ସେଇ ଆଞ୍ଚଳିକ ଭାଷା । ପରନ୍ତୁ ଏଠି ( ଆମ ଘରେ ) ଦେଖିଲାବେଳକୁ କେବଳ ମାଧ୍ୟମିକ ସ୍ତରରେ ଓଡ଼ିଆରେ ଶିକ୍ଷା ଦିଆଯାଉଛି— ବିଶ୍ୱବିଦ୍ୟାଳୟ ସ୍ତରରେ ଏଇ କେଇବର୍ଷ ହେଲା ଓଡ଼ିଆ ବଡ଼ ଅନାଦର ଅବସ୍ଥାରେ ପ୍ରବେଶ କରି ପୁଣି ବହିଷ୍କାର ହେବାକୁ ପ୍ରସ୍ତୁତ ହେଲାଣି । ଓଡ଼ିଆ ଭାଷା ପ୍ରତି ଆମର ନାକଟେକା ଗୁଣ ଏ ପର୍ଯ୍ୟନ୍ତ

ଭରିନାହିଁ । ଆମ ସବୁ କମିଟିରେ ଏବେ ବି ଇଂରେଜୀରେ ଭାଷଣ ଦିଆଯାଉଛି । ଆମ ବିଦ୍ୟାନଗରୀ ଖୋଦ୍ କଟକ ସହରରେ ଦୋକାନ ବଜାରରେ ସାଇନ୍‌ବୋର୍ଡ଼ ଏବେବି ଇଂରେଜୀରେ—ଏପରି ଅନୁରୂପ ଆମ ସ୍ୱଭଧାନାରେ ମଧ୍ୟ, ଓଡ଼ିଆ ଭାଷାଟାକୁ ଆମର ସବୁଠି ଯେମିତି ଗୋଟାଏ ବଡ଼ା ନିଷେଧ ନିର୍ଦ୍ଦେଶନାମା ଜାରୀ ରହିଛି । ସେ ନିର୍ଦ୍ଦେଶନାମା ନ ଉଠିଲା ପର୍ଯ୍ୟନ୍ତ ଆମେ ପଛରେ ରହିଯିବା ।

ଅନ୍ୟାନ୍ୟ ପ୍ରଦେଶ ଗୁଡ଼ିକରେ ବର୍ତ୍ତମାନ ଏ ଦିଗରେ ତୀକ୍ଷ୍ଣ ଦୃଷ୍ଟି ଦିଆଯାଉଛି । ସେ ପ୍ରଦେଶ ଗୁଡ଼ିକରେ କେନ୍ଦ୍ର ସରକାରୀ ପରିଷ୍କୃତ ପ୍ରତିଯୋଗିତା ମୂଳକ ଚାକିରୀର ପରୀକ୍ଷାରେ ଆଞ୍ଚଳିକ ଭାଷାରେ ପ୍ରଶ୍ନର ଉତ୍ତର ଦିଆଯାଉଛି । କିନ୍ତୁ ଆମ ଭିତରେ ଏତେଦୂର ଭାଷାପ୍ରୀତି ଉଦ୍ଧାର ଅଦ୍ୟାଏ ଆସିନାହିଁ । ଏପରିକି ଆମେ ଏବେ ଇଂରେଜୀକୁ ଆମର ଦୈନନ୍ଦିନ ଜୀବନ ସହିତ ଘନରେ ଜଡ଼ିତ କରି ରଖିଛୁ ।

ଓଡ଼ିଶା ସ୍ୱତନ୍ତ୍ର ଆନ୍ଦୋଳନର ପ୍ରଧାନ ରଥୀ ମଧୁ ବାବୁ ଓ ଉତ୍କଳମଣୀଙ୍କର ଭାଷା ପ୍ରୀତି ଆମକୁ ଆଜି ଏ ପବିତ୍ର ଦିବସରେ ପୁଣି ଥରେ ମନେ ପକାଇବା ହେବ । ଓଡ଼ିଆ ଭାଷାର ଉନ୍ନତି ନହେଲା ପର୍ଯ୍ୟନ୍ତ ଓଡ଼ିଶା ପୂର୍ଣ୍ଣ ସ୍ୱତନ୍ତ୍ରତା କାହିଁ ? ସ୍ୱାଧୀନତା ପରେ ଆଞ୍ଚଳିକ ଭା କ୍ଷେତ୍ରରେ ଓଡ଼ିଆ ଯେ କିଛିଦୂର ଆଗେଇ ପାରିଛି ସ୍ୱୀକାର୍ଯ୍ୟ, ତଥାପି ଅନେକ ପଥ ଆମକୁ ଆଗେଇ ଯିବା ପଡ଼ିବ, ବିଶେଷତଃ ଆମ ନିଜ ଘରେ । ଆସାମରେ ଆସାମୀ, ଆନ୍ଧ୍ରରେ ତେଲୁଗୁ, ବଙ୍ଗରେ ବଙ୍ଗଳା, ତାମିଲ୍ ନାଡୁରେ ତାମିଲ୍, ଗୁଜୁରାଟରେ ଗୁଜୁରାଟୀ ଭେଳେ ଆ ଘରେ ଆମେ ଓଡ଼ିଆ କେବେ କହିବା ?



ଖଦ୍ଦର, ଅବକାରୀ, ଶିକ୍ଷା ଏବଂ ଯୁବ-କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ମନ୍ଦଲୁର ଅଲ୍ଲି ସ୍ୱଲ୍ପ ପଞ୍ଚାୟ କ୍ଷେତ୍ରରେ ଶ୍ରେଷ୍ଠ ବିବେଚିତ କେନ୍ଦୁଝର ଜିଲ୍ଲା ବାଳିକା ହାଇସ୍କୁଲର ପ୍ରଧାନଶିକ୍ଷୟିତ୍ରୀ ଶିକ୍ଷୟିତ୍ରୀଙ୍କୁ ୧୯୭୫-୭୬ ମସିହା ରନିଂଶିଲ୍ଡ ପ୍ରଦାନ କରୁଛନ୍ତି ।

# ଓଡ଼ିଆ ଆଦିବାସୀଙ୍କର ପର୍ବ ପର୍ବାଣୀ

ଶ୍ରୀ ହାଡ଼ିବନ୍ଧୁ ମିର୍ଦ୍ଧା

ପଶ୍ଚିମ ଓଡ଼ିଶାର ଆଦିବାସୀମାନଙ୍କର ନବାନ୍ନ, ପୌଷ ଉତ୍ସବ ବା ପୁଷ୍ପୁନି (ଛେର୍ଛେରା), ଗୁଣ୍ଡିଖାଇ ଜନ୍ତିଙ୍ଗ, ଫାଲ୍‌ଗୁନ ଆଦି ସର୍ବସାଧାରଣଙ୍କଦ୍ୱାରା ପ୍ରାୟ ହୋଇ ଜଗନ୍ନାଥଙ୍କ ପରି ସାର୍ବଜନୀନ ହୋଇଛି । ବର୍ତ୍ତମାନ ଯୁଗର କୌଣସି ବ୍ୟକ୍ତି, କେଉଁଟା ତା'ର ଓ କେଉଁଟା ଅନ୍ୟର ବୋଲି ଦାବୀ କରିବା ସହଜ ହୋଇପାରୁନାହିଁ ; କିନ୍ତୁ ଐତିହ୍ୟର ସମୁଦ୍ର ମନ୍ଥନରୁ ଜଣାଯାଏ ଯେ ପ୍ରତ୍ୟେକ ପର୍ବ ପର୍ବାଣୀ, ତିହାର ସମୃଦ୍ଧ

ଭାବରେ ଆଦିବାସୀର ସଂସ୍କୃତି, ବନାନୀ ନିବିଡ଼ ଭାବେ ଜଡ଼ିତ ରହିବା ସ୍ୱାଭାବିକ ମଧ୍ୟ । ଦୁଇଶହ ବର୍ଷର ଇତିହାସ ଜାତି ଓ ସଂସ୍କୃତି ସେତେବେଳେ ଆମକୁ ଅନୁପ୍ରାଣିତ କରିଛି—ଏପରି ଏକ ପ୍ରାଚୀନ ପରମ୍ପରା ବିଭିନ୍ନଭାବେ ଯଥାବିଧି ପ୍ରଭାବିତ କରିଛି । ଓଡ଼ିଶାରେ ୬୨ ପ୍ରକାର ଆଦିବାସୀ ଶ୍ରେଣୀ ରହୁଛନ୍ତି । ବିଶେଷତଃ ପଶ୍ଚିମ ଓଡ଼ିଶାର ସଂଖ୍ୟାଗରିଷ୍ଠ ଆଦିବାସୀ ହେଉଛନ୍ତି କିସାନ (କୋରା), ଓରାମ, ମୁଣ୍ଡା, କନ୍ଧ, ଗଣ୍ଡ, ସଉରା, ଭୋକ୍ତା, ଭୂୟାଁ ପ୍ରମୁଖ । ପ୍ରତ୍ୟେକ ଗୋଷ୍ଠୀର ଜୀବନ ଶୈଳୀ ଏକ ପରିପନ୍ଥୀ ହେଲେ ମଧ୍ୟ ପରମ୍ପରା ତଥା ଭାଷାରେ ପାର୍ଥକ୍ୟ ରହିଛି । ସେପରି ଭାଷାରେ ମଧ୍ୟ ଶବ୍ଦ ତଥା ଉଚ୍ଚାରଣ ପାର୍ଥକ୍ୟ ରହିଛି । ଅଣଆଦିବାସୀ କଥା ଛାଡ଼ନ୍ତୁ—ଏପରିକି ପଡ଼ୋଶୀଭାବେ ରହୁଥିଲେ ମଧ୍ୟ ଜଣେ ଆଦିବାସୀ ଆଉ ଜଣେ ଆଦିବାସୀର ଭାଷା ବୁଝିବା ସମ୍ଭବ ନୁହେଁ । ସତେ ଯେପରି ଭାରତର ଭାଷା ବୈଷମ୍ୟ ଏକ ବିରାଟ ସମସ୍ୟା ଏବଂ ଜାତୀୟ ସଂହତିର ପ୍ରତିବନ୍ଧକ ଅବଶ୍ୟ ଭିନ୍ନ ଭାଷା ଗୋଷ୍ଠୀ ଥିଲେ ମଧ୍ୟ ପରସ୍ପରକୁ ସ୍ୱାଗତ କରି ଛୁଟିରେ ଚଳନ୍ତି । ମଧୁର ସମ୍ବୋଧନ କରି କରି ଅଭିନନ୍ଦନ ଜଣାନ୍ତି । ଆଦିବାସୀର ବିକାର ନାହିଁ କି କାହା ପ୍ରତି ଧିକ୍‌କାର ନାହିଁ । ଯଦି ଅନ୍ୟଦ୍ୱାରା ଅପମାନିତ ବା ଘୃଣିତ ନ ହୋଇଛି ସେ ତାକୁ ଅନ୍ତର ସହ ଭଲପାଏ ଏବଂ କୃତଜ୍ଞତା ଜ୍ଞାପନ କରେ । ଯଦି ଅଯଥା ତାଚ୍ଛଲ୍ୟର ପାତ୍ର ହୁଏ, ସେ ପଥରପରି କଠୋର ହୁଏ । ଏ ଅଞ୍ଚଳର ଆଦିବାସୀମାନେ ଜଗନ୍ନାଥ ଓ ଶିବ ଶକ୍ତିଙ୍କୁ ଭକ୍ତି ତାନ୍ତ୍ରିକ ଭାବେ ପୂଜନ ଅର୍ଚ୍ଚନ କରନ୍ତି । କାରଣ ପ୍ରତ୍ୟେକ ପର୍ବପର୍ବାଣୀ ଯାତ୍ରା ଆଦି କୃଷି ତଥା ଶ୍ରମଭିତ୍ତିକ । ମାତ୍ର ଆଦିବାସୀମାନେ ବଣ ଜଙ୍ଗଲରୁ ଫଳମୂଳ ସଂଗ୍ରହପୂର୍ବକ ଶାକାହାର କରି ଜୀବିକା ନିର୍ବାହ କରନ୍ତି । ବିଶେଷତଃ ସେମାନେ କୃଷିଜୀବୀ । ନଦୀର ଅବବାହିକା, ପର୍ବତର ଉପକଣ୍ଠ ଓ ବନ ପାହାଡ଼ ପ୍ରାନ୍ତ ଦେଶରେ ରହି କୃଷି ସହିତ ଶ୍ରମକଷ୍ଟରେ ଜୀବନ ଅତିବାହିତ କରନ୍ତି । ଫଳରେ ନିଜ ସଂସ୍କୃତି-ଭାଷା-ସାଲିସର ପରିସର ବ୍ୟତୀତ ବାହ୍ୟ ଶିକ୍ଷା-ଭାଷା-ସଭ୍ୟତାର ବହୁ ଦୂରରେ ରହିଯାନ୍ତି । ଅବଶ୍ୟ ସଂପ୍ରତି ସଭ୍ୟତା ଶିଳ୍ପ କାରଖାନାରେ କାର୍ଯ୍ୟ କରି ସହରୀ ଜୀବନଯାପନ କଲେ ମଧ୍ୟ ଅନୁକୂଳ ପରିସ୍ଥିତିରେ 'ସ୍ୱଜାତି ଭଉଣୀ ପ୍ରୀତି' ନୀତିରେ ପରସ୍ପର ହାତ ମିଳାଇ ଜାତୀୟ ପର୍ବକୁ ସମୃଦ୍ଧ ଭାବରେ ଉପଭୋଗ କରନ୍ତି ।

ଜ୍ୟେଷ୍ଠମାସରେ ପାହାଡ଼ି କନ୍ୟା ପାର୍ବତୀଙ୍କର ବିବାହ ହୁଏ ମଙ୍ଗଳମୟ ଶିବଙ୍କ ସହିତ । ପାର୍ବତୀ ହେଉଛନ୍ତି ବନବାସିନୀ । ତେଣୁ ଅଗଣିତ ଆଦିବାସୀ ଶିବଙ୍କର ଉପାସକ । ଶିବଙ୍କୁ ବୁଢ଼ାରଜା, ବୁଢ଼ାବାରେଁ, ବୁଢ଼ାଦେଓ ଆଦି ନାମରେ ବିଭିନ୍ନ ଦେବ ଓ ଦେବୀ ଭାବେ ପୂଜା କରନ୍ତି । ଶୀତଳଷଷ୍ଠୀ ଏ ଅଞ୍ଚଳର ଏକ ବିଶିଷ୍ଟ ଯାତ୍ରା । ଶିବ-ପାର୍ବତୀଙ୍କର ବିବାହ ପାଳନପୂର୍ବକ ଧରିତ୍ରୀର ଶୀତଳତା ପାଇଁ କାମନା କରନ୍ତି ଏବଂ ଲଙ୍ଗଳ ହଳ ସଜାଡ଼ି ବସନ୍ତି । ଦେଖୁ ଦେଖୁ ପହଞ୍ଚି

ଆସେ 'ଅଖାଢ଼ସୀ ପ୍ରଥମ ଦିବସ' । ତା'ର ଅନନ୍ତର ସୀମା ଟପି କୁଆର ଖେଳେ ନୂତନ ପର୍ବ ଅବଲୋକନ ଆସେ । କରି । ପୁଣି ଶୁକ୍ଳପକ୍ଷ ଆଷାଢ଼ର ଦ୍ୱିତୀୟା ଆସେ । ସୃଷ୍ଟିର ସ୍ରଷ୍ଟା ଜଗନ୍ନାଥ ଯିଏ ହେଉଛନ୍ତି ଆଦିବାସୀଙ୍କର ଯୁଗ ଯୁଗର ଆରାଧ୍ୟ ଦେବତା—ଜଙ୍ଗଲର 'ଜନା'ଙ୍ଗୋ' ଆଉ ଦାରୁ ଦେବତା ସେଇ ଦେବତା ତା'ର ନୀରବ ସ୍ରଷ୍ଟା । ନିଶ୍ଚିତ ପୁରୁଷୋତ୍ତମ । ତଥାପି ପ୍ରାଣୀର ଆର୍ତ୍ତନାଦରେ ହୁଏ ଚିନ୍ତିତ ଏବଂ ନୀଳକନ୍ଦରୁ ତାହାରି ନୀଳସାଗର ପରି ଉଚ୍ଛ୍ୱସିତ ଜନ ତରଙ୍ଗ ଦେଖି ଅପୂର୍ବ ପୁଲକ ଅନୁଭବ କରେ । ଜନତା ଜନାର୍ଦ୍ଦନଙ୍କର ଅଗଣିତ ଭକ୍ତଙ୍କର ଅଗଣିତ ଦଇତାପତି ଆଦିବାସୀ ଅପେକ୍ଷିତ କୃତକୃତ୍ୟ ହୋଇ ଜନ୍ମ ଜୀବନ ସଫଳ କରନ୍ତି । ଆଦିବାସୀ ଭିନ୍ନି ମାରେ ନାହିଁ—ଭକ୍ତିରେ ଗଦ୍ ଗଦ୍ ହୁଏ ମାତ୍ର । କେବଳ ପୁରୀରେ ନୁହେ ଅଧିକନ୍ତୁ ପଶ୍ଚିମଓଡ଼ିଶାର ପ୍ରତି ଗ୍ରାମ, ପୁରପଲ୍ଲୀରେ ଜଗନ୍ନାଥ ମନ୍ଦିର ରହିଛି । ପୁଣି ରଥଯାତ୍ରା ମହାସମାରୋହରେ ପାଳିତ ହୁଏ । ଏପରିକି ଆଦିବାସୀ ଜନବହୁଳ ଅଞ୍ଚଳ ବିହାର ପ୍ରଦେଶ ଅନ୍ତର୍ଗତ 'ରାଞ୍ଚି'ର ଜଗନ୍ନାଥପୁର ଓ ପଶ୍ଚିମବଙ୍ଗର ପୁରୁଲିଆଠାରୁ ମଧ୍ୟଭାରତ ପର୍ଯ୍ୟନ୍ତ ଯେଉଁ ସୀମାରେଖା ଆଦିବାସୀ ବହୁଳ ଭୂଖଣ୍ଡ ବୋଲି ଗ୍ରହଣ କରାଯାଏ, ସର୍ବତ୍ର ଜଗନ୍ନାଥଙ୍କର ଅଭୂତପୂର୍ବ ପୂଜନ ଅର୍ଚ୍ଚନ ହୋଇଥାଏ । ଆଦିବାସୀ ଯୁବତୀ-ମହିଳା, ବୃଦ୍ଧ-ଯୁବକ ନବ ବେଶଭୂଷା ପରିଧାନପୂର୍ବକ ଆରାଧ୍ୟ ଦେବତାଙ୍କୁ ଆତ୍ମନିବେଦନ କରନ୍ତି । ଆଉ ବିଶ୍ୱ ପରିବାରର ଶାନ୍ତି ସମୃଦ୍ଧି କାମନା କରନ୍ତି । ଏହାହିଁ ସେମାନଙ୍କର ସର୍ବଜନୀନ ପ୍ରେମ ଓ ତା'ର ଆତ୍ମସମର୍ପଣ ।

ଆଦିବାସୀ ମାଟି-ମାତା, ସାଗର ଭୂଧର, ଇନ୍ଦ୍ର-ଚନ୍ଦ୍ର, ଲତା ବୃକ୍ଷ ସମସ୍ତଙ୍କର ପୂଜା କରେ । ଯାହାଠାରୁ ଉପକାର ପାଏ ତା'ର ଥାଏ ତା' ପ୍ରତି କୃତଜ୍ଞତା । ଆଉ ଆଶିଷ ଭିକ୍ଷା କରି କର୍ମତତ୍ପର ହୋଇଉଠେ । ମାଟିମାତା ପ୍ରତି ଅନୁରକ୍ତି ପ୍ରକାଶକରି ସବୁଜ କରେ ଶସ୍ୟକେଦାର । ଭୂମି ତା'ର ଜହ୍ନର ଶୀତଳ ପ୍ରଲେପରେ ସତେ ଯେପରି ଭରିଯାଏ ଏବଂ ଭାଦ୍ରବର ଶୁକ୍ଳ ପକ୍ଷରେ ପ୍ରଥମ ଶସ୍ୟ ଅମଳ କରି 'ନୂଆଖାଇ' ପର୍ବ ବା ନବାନ୍ନ ଉତ୍ସବ ପାଳନ କରେ । ପାଚିଲା ଧାନ-କେଣ୍ଡା ଆଣି ପୂଜାକରି ପୂଜା କରେ । ଦେବାଦେବୀ ଓ ପୂର୍ବପୁରୁଷଙ୍କୁ ଅର୍ପଣ କରେ—ତାପରେ 'ନିର୍ମାଲ୍ୟ' ପରି ଗ୍ରହଣ କରେ ବନ୍ଧୁବାନ୍ଧବଙ୍କ ଗହଣରେ । ସେଦିନ ନୂଆବସ୍ତ୍ର, ନୂଆହାଣ୍ଡି, ଆତାପତ୍ର ଆଦି ସବୁକିଛି ନୂଆ କରେ ଏବଂ ପୁରୁଣାକୁ ଧୋଇ ମାଜିଘଷି ପରିଷ୍କାର କରେ । ତା'ପରେ ସେ କରିଥାଏ ନାଚଗୀତ, ଖାଇବା ଶେଷରେ ମାଦଳର ବାଦ୍ୟ ଉପର ନିକଶ ନୃତ୍ୟର ସ୍ୱାଭାବିକ ଭଙ୍ଗୀରେ ମଜଗୁଲ ହୁଏ । ତା'ର କର୍ମକ୍ଳାନ୍ତ ଜୀବନ ହୁଏ ସରସ ସୁନ୍ଦର । ଆଗାମୀ ଭବିଷ୍ୟତ ପାଇଁ ନବପ୍ରେରଣା । ଏହା ସର୍ବତ୍ର ବିଭିନ୍ନ ସମୟରେ ପାଳିତ ହେଉଥିଲେ ମଧ୍ୟ ତିଥି ଭେଦରେ ଏକ ଶୁକ୍ଳପକ୍ଷ ମଧ୍ୟରେ ସୁନ୍ଦରଗଡ଼, ସମ୍ବଲପୁର, ବଲାଙ୍ଗିର ଓ କଳାହାଣ୍ଡିରେ ଯଥାରୀତି ପାଳିତ ହୋଇଥାଏ । କେବଳ ଆଦିବାସୀ ଜନସାଧାରଣ ନୁହନ୍ତି, ରଜା ପ୍ରଜା ତଥା ସାଧାରଣ ବ୍ୟକ୍ତି ଓ ବୃଦ୍ଧ ମଧ୍ୟ ଏହି ପର୍ବ ପାଳନ କରି ଏକ ଜାତୀୟ ପର୍ବରେ ପରିଣତ କରିଛନ୍ତି । ସମସ୍ତଙ୍କର ପ୍ରିୟ ପର୍ବରେ ଗୁରୁତ୍ୱ ଉପଲବ୍ଧି କରନ୍ତି । ମାତ୍ର କହିବା ଯେ ଏହି ପର୍ବ ହେଉଛି ଆଦିବାସୀଙ୍କର । ସାଧାରଣ ଗରିବ-ପୁତ୍ରହୀନ-ପତିବିହୀନା ବିଧବା ପୋଖରୀ କୂଳରେ ହୋଇଥିବା 'ବରାଧାନ' ନେଇ ତିହାରି ମାନେ । ବାସ୍ତବିକ ଏକଥା ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀରେ ଚିନ୍ତାକଲେ ହେବାକୁ ପଡ଼େ । ଯେହେତୁ ସେଦିନ ଦାନ ମଧ୍ୟ ଖାଇ, ବନ୍ଧୁ ଆତ୍ମୀୟଙ୍କୁ ସ୍ୱାଗତ କରି ପ୍ରତିନମସ୍କାର ଜଣାଏ । ନୂତନ ଶସ୍ୟର ଖାଇ କରି ସେ ନୂତନ ଜୀବନ ଲାଭ କରେ । ପ୍ରକୃତ ବିଶ୍ୱାସ—ଶ୍ରଦ୍ଧାହିଁ ମଣିଷକୁ ଆଶାୟୀ କରିଥାଏ ଓ ଜୀବନର ଜ୍ୱଳନକୁ ପ୍ରଶମିତ କରେ ।

ପୁଣି ଋତୁର ଚକ ଚକ୍ରପରି ଘୂରିଯାଏ । ଦେଖା ହୁଏ ସୁନିର୍ମଳ ଦଶହରା । କାଇଁଶର ଚୋପା ହସ ଜହ୍ନର ରଜତ ଜ୍ୟୋତ୍ସ୍ନା ଝରଣାର କୁଳୁ କୁଳୁ ପ୍ରକୃତିର ଶାନ୍ତ ସବୁଜ ତଥା ସୁନେଲି ପରିବେଶ ଆଦିବାସୀର ଜୀବନକୁ ପୁଲକିତ କରେ ଏବଂ ନବୀନ ଧାଙ୍ଗଡ଼ି କନ୍ୟା ଅବିବାହିତ ଧାଙ୍ଗଡ଼ା ମନରେ ଆଶାର ଅଲୋକ ଝଲସି ଉଠେ । ଅଗତ୍ୟା ତା'ର ମନରେ ରୋମାଞ୍ଚ ଜାଗେ । ସେ ସାଜିବ ପ୍ରିୟା । ସେ ମନଲାଖି ପ୍ରିୟ । ତେଣୁ ମନେ ମନେ ଖୋଜି ବୁଲେ ଦେଖେ କିଏ ତା'ର ଯୋଗ୍ୟ କର୍ମଠ ଯୁବକ ।

ପୁଣି ଏଇ ଦଶହରାର ଛବି ପରିବେଶ ମଧ୍ୟରେ ଆସେ 'ଡାଲଖାଇ' । ଡାଲଖାଇ ନୃତ୍ୟ ନେଇ ଓଡ଼ିଶା ଏ ଏକ ଲୋକ ଖ୍ୟାତ । କିସାନ ସମାଜର ଏ ଏକ ପ୍ରମୁଖ ନୃତ୍ୟ । ସେଥିପାଇଁ ସମ୍ବଲପୁର ଅଞ୍ଚଳର ନୃତ୍ୟଶିଳ୍ପୀ ନିର୍ଣ୍ଣୀ ଦିଲ୍ଲୀ ଦରବାରରେ ମଧ୍ୟ ଖ୍ୟାତି ନେଇଛନ୍ତି । ସେପରି କର୍ମା ନାଚରେ ବରପାଲି ଅଞ୍ଚଳର ନିର୍ଣ୍ଣୀମାନେ

ସୁପରିଚିତ । ଏହାର ନେତୃତ୍ୱ ନିଅନ୍ତି ଶ୍ରୀ ବିକେସନ ମାଁଝୀ । ସେ ଅଞ୍ଚଳରେ ସୁଗାୟକ ଭାବେ ସୁପରିଚିତ । ଆଜି ଯୁବକମାନେ ଢୁ ଢୁ ଖେଳନ୍ତି ମୁକ୍ତ ପଲ୍ଲୀ ପ୍ରାଙ୍ଗଣରେ । ଯୁବତୀ ଖେଳେ ବୋହୁଚ୍ଛୋରୀ ଏବଂ ହୁମୋ ନ ନ..... । ନାଚ ଗୀତର ଆସରରେ ସମସ୍ତେ ଆନନ୍ଦ ଉପଭୋଗ କରନ୍ତି । କେବଳ ସେତିକି ନୁହେଁ, ଭାଇର ଶୁଭ କାମନାକରି ଭଉଣୀ କରେ ନିର୍ଜଳା ଉପବାସ 'ଭାଇ ଜୁଉଁଅ' ଏବଂ ମା' କରେ ପୁତ୍ରର ଶୁଭ କାମନା ତଥା ଦୀର୍ଘାୟୁ କାମନା କରି 'ପୁଅ ଜିଉଁଆ' । ଆଉ ଗଣ୍ଠନ୍ତି ସୂତାର ତିଆରି ସବୁ ଡୋରି । ଯାହା ଅନାବିଳ ପ୍ରେମ ସ୍ନେହର ସଙ୍କେତ । ଏସବୁ ଚିନ୍ତା କଲେ ଏମାନଙ୍କର ସଂସ୍କୃତିର ମହାନତା, ମା' ଝିଅ ଭଗିନୀର ଉଦାରତା ବାସ୍ତବିକ ପ୍ରଣିଧାନର ଯୋଗ୍ୟ । ଯାହା ଏବେ ସର୍ବସାଧାରଣଦ୍ୱାରା ଗୃହୀତ ଓ ପାଳିତ । ଯେଉଁ ଯୁଗରେ ସାବିତ୍ରୀ ସତ୍ୟବାନ ନିମିତ୍ତ କଠୋର ବ୍ରତ ପାଳନ କରି ମୃତ୍ୟୁ ଦେହରେ କଲେ ପ୍ରାଣସଞ୍ଚାର ମାତ୍ର ଆଦିବାସୀ ନାରୀ ତାର ସ୍ୱାମୀ ପ୍ରତି ଏକାନ୍ତ ଭାବେ ଅନୁରକ୍ତ । ମନ ମାନିଥିଲେ ଦେବତା ପରି ଜ୍ଞାନ କରେ ସ୍ୱାମୀ ତାର ଆରାଧ୍ୟ ଦେବତା । ସୁଖ-ଶୋକ-ଅଶ୍ରୁବ-ଅନାଟନରେ ବି ସେ ହୁଏ ସାଥି । ପ୍ରବଞ୍ଚନା ଦେଇ ସେ ଜାଣେନାହିଁ । ପଡୋ ଉହାଡରେ ପ୍ରତାରିତ କରେ ନାହିଁ । ହେଲେ ସେ ଯଦି ଧକ୍କା ଖାଏ, ପଥର ପରି ସହେ, ଶେଷରେ ତାର ସ୍ୱାମୀର ଅଯୋଗ୍ୟତା ପ୍ରମାଣିତ ହେଲେ ସେ ହୁଏ କଠୋର । ମୁକ୍ତି ଖୋଜେ ତାହୁ ବନ୍ଧନରୁ । 'ପଞ୍ଚ'ର ପଞ୍ଚାୟତିସଙ୍କର ରାୟରେ ସେ ହୁଏ ସ୍ୱାଧୀନ ।

କର୍ମାନାଚ ଏକ ବିଶିଷ୍ଟ ନାଚ । ସମ୍ବଲପୁର ଜିଲ୍ଲାର ସର୍ବତ୍ର ପାଳିତ ହୁଏ । ସ୍ୱଭାବତଃ 'କର୍ମାଗଛ'କୁ ନେଇ କର୍ମାନାଚ ହୁଏ । ଏହାବି ଦାରୁଦେବତାର ଏକ ପ୍ରମାଣ । ଗଛର ଡାଳ ନେଇ ଦାରୁଦେବତା ଜଗନ୍ନାଥଙ୍କ ପରି ଦାରୁପୂଜା କରନ୍ତି । ସେ ହୁଏ 'କରମ୍‌ସାନୀ' । ବିଶ୍ୱକର୍ମା ପୂଜାପରି ଆଡମ୍ବର ସହିତ ପୂଜା କରାଯାଏ । ପତି-ପତ୍ନୀ ଧନ-ଯଶ-ସନ୍ତାନ ପାଇଁ ପୂଜା କରନ୍ତି । ଦାରୁ ହେଉ କି ପଥର ହେଉ ବିଶ୍ୱାସ ହେଉଛି ମୂଳ । ମୋର ମଧ୍ୟ ବ୍ୟକ୍ତିଗତ ଅନୁଭୂତି ଯେ ମଣିଷ ଯାହା କାମନା କରିଛି ସେ ପାଇଛି । ସରଳ ନିଷ୍ପାପ ଆଦିବାସୀର ଗୁହାରୀ ପ୍ରକୃତି ଦେବତା ଶୁଣିଛି ଏବଂ କାମନା ପୂର୍ଣ୍ଣ କରିଛି । ପ୍ରତିବର୍ଷ ଭାଦ୍ରବ ଏକାଦଶୀ ଦିନ ଏହି ଉତ୍ସବ ପାଳିତ ହୁଏ । ମାଦଳ ବାଦ୍ୟ, ନୂପୁର ନିକ୍ୱଣ ଏବଂ ତ୍ରିପଟ ଭଙ୍ଗୀରେ ଯେଉଁ ନାଚ ହୁଏ, ପଲ୍ଲୀ ପ୍ରକୃତିର ବୁକୁ ନାଚିଉଠେ । ସବୁ ଶ୍ରେଣୀ ଲୋକଙ୍କର ଏହା ଏକ ଉପଭୋଗ୍ୟ ଉତ୍ସବ । ଅଣଆଦିବାସୀ ମଧ୍ୟ ତାଳଦେଇ ନାଚିଉଠେ ।

ସେପରି କଳାହାଣ୍ଡି ଜିଲ୍ଲାର କନ୍ଧ, ଆଦିବାସୀମାନଙ୍କର ଶାରଦୀୟ ପର୍ବପର୍ବାଣୀର ମଧ୍ୟ ବୈଶିଷ୍ଟ୍ୟ ପରିଲକ୍ଷିତ । ବିଶେଷତଃ ପୋଡମସ୍ (ମହିଷି ମାରିବା ରୀତି), ଝାଙ୍କିମତା (ନିଆଁ ଉପରେ ଚାଲିବା), ଚଇତି ମାସରେ ଚୈତ୍ରପର୍ବ ଆଦି ପ୍ରଧାନ । ବିଶ୍ୱାସ ମୂଳେ ଭଗବାନ । ବିଶ୍ୱାସରେ ଗଡିଆ ବି ଗଙ୍ଗା ହୁଏ । ତେବେ ଧରିତ୍ରୀର ସାନ୍ତ୍ୱନା ତଥା ସୁନେଲି ଶସ୍ୟ ଉତ୍ପାଦନ ପାଇଁ ମହିଷି ରକ୍ତ ଦିଆଯିବାର ବିଶ୍ୱାସ ଚିରଚରିତ । ଅନେକ ଅନ୍ଧ ବିଶ୍ୱାସ କହିପାରନ୍ତି, ଜୀବ ହିଂସା ବୋଲି ଅଭିଯୋଗ କରାଯାଇପାରେ; ମାତ୍ର ବିଶ୍ୱାସରେ ବିଷ ବି ଅମୃତ ହୁଏ । ସେପରି ଝାଙ୍କିମତା ଦାଉ ଦାଉ ଦେଖାଯାଉଥିବା, ଦପ୍ ଦପ୍ ଜଳୁଥିବା ଏବଂ ଲେଲିହାନ ଅଗ୍ନି ଶିଖାରେ ଆଦିବାସୀ ଝାଙ୍କର ବା ଦିଶାରି ସର୍ବସାଧାରଣଙ୍କ ସମ୍ମୁଖରେ ତା ଉପରେ ଚାଲିଯିବା କ'ଣ ସହଜ କଥା । ତେବେ ନିଶ୍ଚିତ ଭାବେ ମନ୍ତ୍ରର ମହିମା ଓ ଦେବତାର ଶକ୍ତି ନିହିତ । ତନ୍ତ୍ର ମନ୍ତ୍ରର ଶକ୍ତି ନେଇ ଆଦିବାସୀର ଶକ୍ତି ପରିକ୍ଷିତ ଓ ପ୍ରମାଣିତ । ବିଛାର ଡ଼ଙ୍କ ଓ ସାପ କାମୁଡା ଶୁଣି ସେ ବିଷ ଝାଡିଦେଇପାରେ । ବାଘକୁ କରେ ମଣିଷ । ଭୂତ-ପ୍ରେତ ସହିତ କରେ ବାକ୍ୟାଳାପ । ଏପରି ଅଦ୍ଭୁତପୂର୍ବ ଘଟଣା ଘଟାଏ । ସେ ତାନ୍ତ୍ରିକ ମହିମା ଯୁଗପତ୍ ରହିଛି । ଚୈତ୍ର ମାସରେ ହୁଏ 'ଚୈତ୍ରପର୍ବ' । ଆଦିବାସୀ ନାନା ବାଦ୍ୟ ବଜାଇ ବନଦେବୀଙ୍କର ପୂଜାକରେ । ମହୁଲ, କାନ୍ଦୁଲ ଭାଜି ଦେବୀଙ୍କ ପୂଜାକରେ । ପ୍ରଥମ ଶସ୍ୟ ଆରାଧ୍ୟ ଦେବାଦେବୀଙ୍କୁ ଅର୍ପଣ କରେ । ତାପରେ ବର୍ଷସାରା ସଂଚିତ ଧାନକୁ ନେଇ ଖାଏ । ପ୍ରଥମେ ସ୍ରଷ୍ଟାକୁ ଅର୍ପଣକରି ସେଇ ସଷ୍ଟ ବସ୍ତୁ ନିଜର ଭୋଗ୍ୟ, ବିଚାର କରେ । ସତେ ଯେପରି ତାହାହିଁ ତା' ଜୀବନର ନିର୍ମାଲ୍ୟ ବା ପୂଜାର ଅବଡା । ତାତ୍ତ୍ୱିକ ଦୃଷ୍ଟିରୁ ଯଦି ବିଚାର କରାଯାଏ, ଆଦିବାସୀମାନେ ବି କୃତଜ୍ଞ ଜାତି । ଦେବତା ହେଉ ବା ପଶୁ ହେଉ, ମଣିଷ ହେଉ ବା ମାଟି ହେଉ, ଯାହାଠାରୁ ଯାହା ଉପକାର ପାଏ ତାକୁ କୃତଜ୍ଞତା ଜ୍ଞାପନ କରିବା ସତେ ଯେପରି ତାର ଏକ ପରମ ଧର୍ମ । ଯିଏ ତାକୁ ଘୃଣାକରେ ସେ ତା'ଠାରୁ ଦୂରେଇ ରହେ । ଯିଏ ତାକୁ ସ୍ନେହ କରେ ତାକୁ ଜୀବନ ଦେଇ ଭଲପାଏ । ତେଣୁ ସୁସ୍ୱର ସୁରେଇ ଫଟାଇ ଛନ୍ଦକୁ ଚର୍ଚ୍ଚା କରେ ।

ଶସ୍ୟରେ ଦେଇ ଗନ୍ଧ ଭରେ । ସୁରଭି ଭରା ପାନବତି ରଙ୍ଗର ଫୁଲର ଗନ୍ଧରେ ଆମୋଦିତ ହୁଏ । ଅରଣି ଝାର ପାନବତି ଅର୍ଥନୈତିକ ଦୁର୍ଗତିର ଶିକାର ହେଉଥିଲେ ମଧ୍ୟ, ତାହା ଏପରି ପରମ୍ପରାରେ ସ୍ୱଭାବରେ ପରିଣତ ହୋଇଛି ଯେ ତାହା ତ୍ୟାଗକରି ପାରୁନାହିଁ ।

ଠିକ୍ ଅନ୍ୟାନ୍ୟ ପର୍ବ ଉତ୍ସବ ପରି ପୌଷ ହେଉଛି ବା ପୁଷପୁନୀ ତଥା ଛେର୍‌ଛେରା । ଏହା ପଶ୍ଚିମ ଓଡ଼ିଶାର ଏକ ସାର୍ବଜନୀନ ଆଦିବାସୀ ପର୍ବ ବା ତିହାର । ଏଥିରେ ଖେଳିଖେଳ ହେଉ ହୁଏ । ପିଠାମଣ୍ଡା କରି ମଉଜରେ କାଟନ୍ତି । ଶରତ ଯାଇ ହେମନ୍ତ ଆସେ । ଶୀତ ତା'ର ପ୍ରବଳ ଶୀତଳତାର ପ୍ରକୋପ ନେଇ ଆସେ । ତଥା ଓ ଆଦିବାସୀ ଉତ୍ସବ ନେଇ ତାପ ଲାଭ କରେ । ଆଉ ଅମଳ କରେ ଫସଲ । ବହୁ ଖମାର ଭରେ ତ ଆଉ ବହୁ କୋଠାର ଅଛି କିଛି ଧାନ ସଂଚୟ କରେ । ଅନେକ ଗୋଟି କୁଟିଆ ରହି କିଛି ପୁଷପୁନୀ ଖେଳି ପାଆନ୍ତି । ଧନୀର ଧାନ ଧନରେ ଖମାର ଭରିଯାଏ ସେଇ ଆଦିବାସୀର ଝାଳବୁହା ପରିଶ୍ରମରେ । ଅଥଚ ସେ ପାଏ ସାମାନ୍ୟ କିଛି । ତଥାପି ତାର ଆନନ୍ଦର ସୀମା ରହିଲେ ନ ସରେ । ସେ ବିପୁଳ ଆନନ୍ଦରେ ଉଦ୍‌ବେଳିତ ହୋଇ ଧରି ଧରିତ୍ରୀ ମାଣବସା ଲକ୍ଷ୍ମୀଙ୍କର ପୂଜା କରେ । ଲକ୍ଷ୍ମୀଙ୍କୁ ପୂଜନ ପୂର୍ବକ ତିହାର ପାଳନ କରେ ଓ କେଇଟି ମାସ ପାଇଁ ଆଦିବାସୀ ହଳିଆ, ଗୋତି ଧନ୍ଦାରୁ ମୁକ୍ତି ନିଏ ଏବଂ ସ୍ୱାଧୀନ ଭାବେ ଜିବନଯାପନ କରେ । ସେ ଯାହା ହେଉ ସେଦିନ ଧନୀ ପ୍ରଜା, ଗରିବ ଦୁଃଖୀ ସମସ୍ତେ ପିଠାକରି ଲୁଚି-ଖାଇରେ ଉପଭୋଗ କରନ୍ତି । ଝାଙ୍କର, ଗାଁ ଚୌକିଦାର ମଧ୍ୟ ଦ୍ୱାର ଦ୍ୱାର ବୁଲି ପୌଷ ଉପହାର ନିଅନ୍ତି । ଧନୀମାନେ ଉଚିତରେ କିଛି କିଛି ଦାନ କରନ୍ତି । 'କାହାର ପୌଷମାସ ତ କାହାର ସର୍ବନାଶ' ତାତ୍ପର୍ଯ୍ୟ ଅନ୍ତର୍ନିହିତ । ହେଲେ 'ଖଣ୍ଡର ହାଣ୍ଡିରେ ବି ଚୋରଣୀ' ଥାଏ । ତାପରେ ଆସେ ବସନ୍ତ । ବିବାହ ଆଦିର ଶୁଭ ଲଗ୍ନରେ ମଗ୍ନ ରହନ୍ତି । ଏଇ ସମୟ ହେଉଛି ଆଦିବାସୀ ବିଶ୍ରାମ ଉତ୍ସବର ଶୁଭ ଅବସର । ଗୁଡ଼, ମହୁଲ, ଆମ୍ବ ବଉଳ ଦେଖେ । କୁହୁ କୁହୁରେ ମୋଟ ହୁଏ ।

ଫାଲ୍‌ଗୁନ ଆସେ । ହୁଏ ଫଗୁଖେଳ—ଚିତ୍ରବାଲ୍ମିକ ପକ୍ଷରେ ତାହା ସମ୍ଭବ । ମାତ୍ର ପ୍ରକୃତି ସନ୍ତାନ ପ୍ରକୃତିର ଫଗୁ ରଂଜିତ ରୂପ ବୈଭବ ଦେଖି ପ୍ରୀତି ସାଗରରେ ନିମଜ୍ଜିତ ରହେ । ରସରାଜ କୃଷ୍ଣ ପରି ପ୍ରେମରସ ଅବଗୁଣ୍ଠନ ବାଢେ । ଆଉ ଆମ୍ବଫଳ ନେଇ 'ଗୁଣ୍ଡିଖାଏ' ଏବଂ ରସାଳ ଫଳ ଖାଇ ରସଯୁକ୍ତ ହୁଏ ।

---

(୧୯୭୨ ସମ୍ବଲପୁର ଜିଲ୍ଲା ଲେଖକ ସମ୍ମିଳନୀ ଉପଲକ୍ଷେ ପ୍ରକାଶ ପାଇଥିବା ସ୍ମରଣିକାରୁ କୃତଜ୍ଞତାର ସହିତ ଉଦ୍ଧୃତ)



ଚଲୋ, ଛୋଡ଼ୋ. ଭୁଲୋ, ଯୋ କୁଛ ମୈନେ କିୟା,
ହମ୍ ମଗାତା ଦୋର୍ଦିନ୍ ମିଜିଁକା ଏକ୍‌ଦିୟା,—
ମଗ୍ଗଁଗୀ, ମଗ୍ଗଁଗୀ ଲେକିନ୍ ଛୋଡ୍ ଯାଉଗୀ
କିସି ଦିଲ୍ ପର ନିଶାନ୍ ୟାଦ୍ ଦିଲାନେ କୋ ।

(କୁନ୍ତଳା କୁମାରୀ)

ପ୍ରତିଭାର ବିକାଶ ଯେତେବେଳେ ହୁଏ—ସେତେବେଳେ ତା'ର ପଥ ରୋଧ କରିବାର ଶକ୍ତି କାହାରି ନଥାଏ । ଐଶ୍ୱରୀୟ ପ୍ରତିଭା ପ୍ରବୁଦ୍ଧ ଡ଼ା: କୁନ୍ତଳା କୁମାରୀ ସାବତଙ୍କ ମୃତ୍ୟୁର ୩୯ ବର୍ଷ ପରେ ଆଜି ଆମେ ଯେତେବେଳେ ସେହି ଅଲୌକିକ ବୃନ୍ତ ଚ୍ୟୁତ ପ୍ରତିଭାର ସ୍ମରଣ କରୁ—ହୁଏତ ମନେ ହୁଏ ନିଜର ୩୭ ବର୍ଷ ଜୀବନକାଳ ଏକ ନିଛକ ବିଭ୍ରାନ୍ତି, ଅଥବା ଏକ ଇନ୍ଦ୍ରଜାଲ, କୁହୁକ ପରି ତାଙ୍କର ଅତିବାହିତ ହୋଇଗଲା ସମସ୍ତଙ୍କ ଅଗୋଚରରେ, ଯାହା ଆମର ଅନୁଭବ, ଉପଲବ୍ଧିର ବହୁ ଦୂରରେ, ରହସ୍ୟ ମୟ, ତାଙ୍କର କବିତାର ପଂକ୍ତି ପରି ଭାସ୍ୱର ।

କରିଛୁ ପଛ ପୃଷ୍ଠାକୁ ଖୋଜି କାଢ଼ିବା ପାଇଁ "ଶେଫାଳୀ ପ୍ରତି" ?

୧୯୦୧, ଫେବୃୟାରୀ ରେ ଡ଼ା: କୁନ୍ତଳା କୁମାରୀ ସାବତଙ୍କର ଜନ୍ମ । ପିତା ଡ଼ା: ଡ଼ାନିଏଲ ସାବତ ଖ୍ରୀଷ୍ଟାନ ପାଦ୍ରୀମାନଙ୍କ ଆଶିର୍ବାଦରେ ଲାଳିତ ପାଳିତ ହୋଇଥିଲେ । ଓଡ଼ିଶାରେ ଡାକ୍ତରୀ ବ୍ୟବସାୟ ଚଳିଲା ନାହିଁ । ତେଣୁ ସ୍ତ୍ରୀ ମୋନିକା ଓ ପୁତ୍ରୀ କୁନ୍ତଳାଙ୍କୁ ସଙ୍ଗରେ ନେଇ ବର୍ମା ଚାଲି ଯାଇଥିଲେ । ଶୈଶବରୁ କୁନ୍ତଳା କୁମାରୀ ଓଡ଼ିଆ, ଇଂରାଜୀ, ହିନ୍ଦି, ବଙ୍ଗଳା ଚାରୋଟି ଭାଷା ବ୍ୟତିତ ବର୍ମିଜ

# ଉତ୍କଳ ଭାରତୀ

## ତଥା ଭାରତ କବିନେତ୍ରୀ କୁନ୍ତଳା କୁମାରୀ

ଶ୍ରୀ ପୂର୍ଣ୍ଣ ମହାପାତ୍ର

ଜୀବନର ବହୁ ଝଡ଼ ଝଂଜା, ଖାଦ୍ୟାଭାବ, ଅନାଟନ, ଦୁର୍ଯୋଗ ମଧ୍ୟରେ ଏକ ପ୍ରତିଭା ପୁଷ୍ପ ଯେପରି ଅକାଳରେ ଝଡ଼ିଗଲା, ସେଥିପାଇଁ ଆଜି ପ୍ରତ୍ୟେକ ମନରେ ସନ୍ଦେହ ଜାଗେ । ମୃତ୍ୟୁ ପାଇଁକି ପରୋକ୍ଷରେ ଆମେ, ଆମ ସମାଜ, ଆମ ଛଳନା ଭରା ହୃଦୟର ସେଚ୍ଛାଚାରୀତା ଏକ ଅକଳଙ୍କ ଚରିତ୍ରର ସଂହାର, ଏକ ସ୍ୱର୍ଗୀୟ ଆଲୋକର ନିର୍ବାଣ ପାଇଁ ଦାୟୀ ନୁହେଁ ?

ଅଥଚ କେତେ ଘନିଷ୍ଠ ଭାବେ ଆଜି—
"କେଉଁ ବର ତରୁବରେ ଫୁଟି ଅଛୁ ଗୋପନେ
କୁଛ କୁଛ ଗନ୍ଧ ତୋ'ର ଭାସି ଆସେ ପବନେ ।"

ଆମେ ଭୁଲି ଯାଉଛୁ । ଆଉ କବିତା ସଂଗ୍ରହର ପୃଷ୍ଠା ଅଜାଣତରେ ଓଲଟି ଚାଲି ଗଲେବି ଆମେ କି କେବେ ଚେଷ୍ଟା

ଭାଷାରେ ମଧ୍ୟ ପାରଦର୍ଶିତା ଲାଭ କରିଥିଲେ । ତନ୍ୱୀ ଶ୍ୟାମା, ସକେଶୀ, ମିଷ୍ଟ ଭାଷଣୀ କୁନ୍ତଳା ନିଜର ଜନ୍ମଜାତ ଚରିତ୍ର ପରି ସମସ୍ତଙ୍କର ଆଦରଣୀୟା ହୋଇଥିଲେ । ଆଉ ଯେତେବେଳେ ଯୌବନର ପଥମ ପାହାଚରେ ପାଦ ଦେଲେ, ବର୍ମାରେ ଅର୍ଥନୈତିକ ସଙ୍କଟରେ ଶୀକାର ହୋଇ ଫେରି ଆସିଥିଲେ ଓଡ଼ିଶା ପୁନଶ୍ଚ ୧୫ ବର୍ଷ ପରେ ।

ବାପାଙ୍କ ବ୍ୟବସାୟ ଭଲ ଚାଲ ନଥିବାରୁ ପୁଣି ବାପାଙ୍କୁ ସାହାଯ୍ୟ କରିବାକୁ କେହି ନଥିବାରୁ କୁନ୍ତଳା ନିଜ ପରିବାରର ସହାୟତା ପାଇଁ ନିଜେ ଜଣେ ଡ଼ାକ୍ତର ହେବା ପାଇଁ ମନସ୍ଥ କରି ୧୯୧୮ ରେ କଟକ ମେଡ଼ିକାଲ ସ୍କୁଲରେ ଯୋଗ ଦେଇଥିଲେ । ଚାରି ବର୍ଷିଆ ପାଠ୍ୟକ୍ରମକୁ ସଫଳତା ସହ ସମାପ୍ତ କରିବା ସଙ୍ଗେ ସଙ୍ଗେ ଶ୍ରେଣୀରେ ପଥମ ସ୍ଥାନ

ଅଧିକାର କରି ୧୬ଟି ସ୍ୱର୍ଣ୍ଣ ଓ ରୌପ୍ୟ ପଦକ ବିଜେତା ହୋଇ ଏଲ୍. ଏମ୍. ପି. ଡିଗ୍ରୀ ହାସଲ କରିଥିଲେ ।

ମେଡ଼ିକାଲ ଶ୍ରେଣୀରେ ପଢୁଥିଲାବେଳେ ପୌଢ଼ ବିବାହିତ ଅଧ୍ୟାପକ ଡ଼: କୈଳାସ ଚନ୍ଦ୍ର ରାଓଙ୍କ ସହିତ ଘନିଷ୍ଠତା ବଢି ଉଠି ଥିଲା ଏବଂ କୁନ୍ତଳାଙ୍କର ଜୀବନ ଦର୍ଶନ ସେତେବେଳେ ହିନ୍ଦୁ ଧର୍ମ ପ୍ରତି ଆକୃଷ୍ଟ ହୋଇଥିବାର ପରିଲକ୍ଷିତ ହୁଏ । ସେ ଖୁବ୍ ଥିଲେ–ଜଣେ ହିନ୍ଦୁ ଗୃହିଣୀ ଭାବେ ନିଜକୁ ସମର୍ପି ଦେବାକୁ । କିନ୍ତୁ ସେମାନଙ୍କର ପ୍ରେମରେ ଜାତି ଧର୍ମ ନିର୍ବିଶେଷ ହୋଇ ପାରିଲା ନାହିଁ ।

କୁନ୍ତଳାଙ୍କ ପ୍ରଥମ କବିତା ସଙ୍କଳନ ତାଙ୍କ ବିରହୀ ପ୍ରାଣର ଅବ୍ୟକ୍ତ ଆକୁଳତା ବିଫଳତାର ସଙ୍ଗୀତ । ହୁଏତ ସେହି କବିତାର ଭାବନାକୁ ଶ୍ରେୟକରି ଓଡ଼ିଆ ସମାଲୋଚକ ଏଇ ନାରୀକବିଙ୍କୁ ପ୍ରଥମ କରି ରହସ୍ୟ ବାଦୀର ଆଖ୍ୟା ଦେଇଥିଲେ । କବିତାର ଅନ୍ତର୍ନିହିତ ଧ୍ୱନୀ ଏକ ନିରାକାର ପ୍ରତି ଅଭିପ୍ରେତ ହେଲେବି ସେମିତି କୌଣସି ପାର୍ଥିବ ବ୍ୟକ୍ତିତ୍ୱ ପ୍ରତି ତାହାର ନିରାଜନ ।

୧୯୨୫ ମସିହାରେ ମହିଳା ବନ୍ଧୁ ସମିତି କୁନ୍ତଳାଙ୍କୁ ଉତ୍କଳ ଭାରତୀ ଉପାଧିରେ ଭୂଷିତ କରିଥିଲେ । କଲିକତା ବିଶ୍ୱବିଦ୍ୟାଳୟରୁ ପ୍ରକାଶିତ "ଓଡ଼ିଆ ସାହିତ୍ୟର ପରିଚୟ" ର ତୃତୀୟ ଖଣ୍ଡରେ ତାଙ୍କର ପ୍ରଥମ କବିତା "ତାରା ପ୍ରତି" କୁ ସ୍ଥାନ ଦିଆ ଯାଇଥିଲା । ଜଗନ୍ନାଥ ପୁରୀ ପଣ୍ଡିତଙ୍କର ମୁକ୍ତି ମଣ୍ଡପ ସଭା ମଧ୍ୟ ଏହି ଖ୍ରୀଷ୍ଟୀୟ ମହିଳାଙ୍କୁ ସମ୍ମାନ ଦେବା ପାଇଁ କୁଣ୍ଠାବୋଧ କରି ନଥିଲା ।

କୁନ୍ତଳାଙ୍କୁ ଯେତେବେଳେ ୨୭ ବର୍ଷ ସେତେବେଳେ ନିଜର ସଂସ୍କାର, ଶିକ୍ଷା, ହିନ୍ଦୁ ଧର୍ମ ପ୍ରତି ପ୍ରଗାଢ଼ ମମତା, ତାଙ୍କୁ ଯେ କୌଣସି ହିନ୍ଦୁ ପୁରୁଷର ପାଦତଳେ ସମର୍ପିତ ହେବାପାଇଁ ପ୍ରେରଣା ଦେଇଥିଲା । ହୁଏତ ସେଇ ଅଭିଳାଷର କୁପରିଣାମ ତାଙ୍କର ପରବର୍ତ୍ତୀ ଜୀବନରେ ହାହାକାର ପାଇଁ ଦାୟୀ । ଦିଲ୍ଲୀର ନାଗରିକ ଓଡ଼ିଆ କୃଷ୍ଣ ପ୍ରସାଦ ଦାସ ଯେଉଁ ନିଜକୁ ଶବ୍ଦକଳ୍ପ ଅଧ୍ୟୟନ ପରେ ବ୍ରହ୍ମଚାରୀ ବୋଲି ପ୍ରଚାରିତ କରୁଥିଲେ ଏବଂ ଦୁର୍ବଳ ହୃଦୟା ଡା: କୁନ୍ତଳାଙ୍କର ଅସହାୟତାର ସୁଯୋଗ ନେଇ ତାଙ୍କୁ ପ୍ରଲୋଭିତ କରି ଓଡ଼ିଶାରୁ ଭୁଲେଇ ଦିଲ୍ଲୀ ନେଇ ଯାଇଥିଲେ । କୁନ୍ତଳା ଭାବିଥିଲେ ବ୍ରହ୍ମଚାରୀ ଜଣେ ଆଜନ୍ମ ବ୍ରହ୍ମଚାରୀ ଡାକ୍ତର । ତାଙ୍କୁ ହିନ୍ଦୁ ଧର୍ମାନ୍ତର କରିବାରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ହିନ୍ଦୁ ଘରେ ମଧ୍ୟ ବିବାହ କରିଦେବାରେ ସାହାଯ୍ୟ କରିବେ । ମାତ୍ର ତାଙ୍କର କଳ୍ପନା କେବଳ ପାଣି ଫୋଟକାରେ ହିଁ ପରିଣତ ହୋଇଥିଲା ।

ଡା: ବ୍ରହ୍ମଚାରୀ ଛଳନାରେ କୁନ୍ତଳାଙ୍କୁ ଦିଲ୍ଲୀ ନଗରୀର ବହୁ ସଂପତ୍ତି ତାଙ୍କର ଏବଂ କୁନ୍ତଳା ସେସବୁର ଅଧିକାରୀ ହେବେ ଇତ୍ୟାଦି କହି ଦିଲ୍ଲୀରେ ନେଇ ରଖିଥିଲେ । ୧୯୨୮ ରେ ଦିଲ୍ଲୀରେ ପହଞ୍ଚି କୁନ୍ତଳା ପ୍ରଥମେ ଆର୍ଯ୍ୟ ମନ୍ଦିର ଛାପଡ଼ା ବଜାରରେ ଶ୍ରୀ ନାରାୟଣ ସ୍ୱାମୀଙ୍କ ଉପସ୍ଥିତିରେ ଶୁଦ୍ଧ ହୋଇ ହିନ୍ଦୁ ହେଲେ । ଜୁଲାଇ ୨୯ ତାରିଖ ପରେ ସେ ଭାବିଥିଲେ ଏବେ ବୋଧେ ତାଙ୍କର ପ୍ରେମିକ ବନ୍ଧୁ ଡା: କୈଳାଶ ଚନ୍ଦ୍ର ରାଓ ତାଙ୍କୁ ସାଦରେ ଗ୍ରହଣ କରି ହିନ୍ଦୁ ପତ୍ନୀର ସମ୍ମାନ ଦେବେ ମାତ୍ର ବ୍ରହ୍ମଚାରୀଙ୍କର ଚକ୍ରାନ୍ତ ସେମାନଙ୍କର ବନ୍ଧୁତାରେ ତିକ୍ତତା ସୃଷ୍ଟି କରିଥିଲା । ଆଉ ନିଜେ ବ୍ରହ୍ମଚାରୀ ଗୃହସ୍ଥ ହେବାର ଯୋଜନା କୁନ୍ତଳାଙ୍କ ସମ୍ମୁଖରେ ଉପସ୍ଥାପିତ କରି ୧୯୨୮ ଅଗଷ୍ଟରେ ତାଙ୍କୁ ବିବାହ କରିଥିଲେ ।

ବିବାହ ପରେ ହଠାତ୍ ଦିନେ ବ୍ରହ୍ମଚାରୀଙ୍କର ବ୍ୟବହାରରେ କୁନ୍ତଳାଙ୍କର ମୋହ ଭଙ୍ଗ ହେଲା । ସେତେବେଳକୁ ନେଡ଼ି ଗୁଡ଼ କହୁଣୀକୁ ବୋହି ଯାଇଥିଲା । ସେ ତାଙ୍କର ଜଣେ ଦିଲ୍ଲୀର ଅନ୍ତରଂଗ ବନ୍ଧୁଙ୍କୁ ତାଙ୍କ ସହିତ ପ୍ରତାରଣା କରାଯାଇଥିବାର କଥା କହିଥିଲେ । ମାତ୍ର ଭାରତୀୟ ଆଦର୍ଶକୁ ମହତ୍ୱ ଦେଉଥିବା ଏହି ନାରୀ ଅନ୍ତଃକରଣରେ ପ୍ରଜ୍ୱଳିତ ସଳିତା ପରି ନିଃଶେଷ ହେବାକୁ ଲାଗିଲେ । ତେବେ ବି କେବେ ସ୍ୱାମୀଙ୍କର ବିରୋଧାଚରଣ କରିନାହାନ୍ତି । ଡା: ବ୍ରହ୍ମଚାରୀ ଭାବୁଥିଲେ ଡା: କୁନ୍ତଳା କୁମାରୀ ସବୁଦିନେ ସ୍ୱର୍ଣ୍ଣପ୍ରସୂ ଆକର ହୋଇ ରହିଥାନ୍ତୁ ।

ଯେଉଁ ୨୦୮ ନମ୍ବର ଏସ୍‌ପ୍ଲେନେଡ୍ ଘରେ ସେ ରହୁଥିଲେ ତାହା ୮୯ କୋଠରୀ ବିଶିଷ୍ଟ ଏକ ବିଧବାଙ୍କର ଦାନ ସ୍ୱରୂପ କୁନ୍ତଳାଙ୍କୁ ମିଳିଥିଲା । ତଳ ମହଲାରେ କ୍ଲିନିକ୍ ଓ ଅପରେସନ୍ ରୁମ୍ ଓ ଉପର ମହଲା ରହିବା ଘର । ସେତେବେଳେ ଆଜିକାର ତୃତୀୟ ମହଲା ତିଆରି ହୋଇ ନଥିଲା । କିଛିଦିନ ପରେ ୨ୟ ମହଲାର ରହିବା ଘରଟିକୁ ପ୍ରସୂତୀ ଗୃହରେ ରୂପାନ୍ତରୀତ କରି ସ୍ୱୟଂ ସପରିବାର ୮–ଡ଼ିକ୍‌ଟର ଲେନ୍‌କୁ ଉଠି ଯାଇଥିଲେ ।

ଦୁଇଟି ଝିଅ–ବିଭା (ଉତ୍କଳ କୁମାରୀ) ଆଉ ପ୍ରଭା । କୁନ୍ତଳାଙ୍କର ସେତେବେଳେ ଝିଅ ଦୁଇଟିର ଘରୋଇ ଶିକ୍ଷକ ଶ୍ରୀ ମଙ୍ଗଳ ଦେବ ଶାସ୍ତ୍ରୀ ତାଙ୍କ ପରିବାରର ଜଣେ ସଭ୍ୟ ଭାବରେ ବିଶ୍ୱାସ ଭାଜନ ହୋଇ କ୍ଲିନିକ୍ ଦାୟିତ୍ୱରେ ମଧ୍ୟ ରହୁଥିଲେ । ତାଙ୍କର ଅନେକ ଘରୋଇ ଘଟଣା ମଙ୍ଗଳ ଦେବଙ୍କର ଆଖି ଦେଖା । ତଥାପି କୁନ୍ତଳାଙ୍କର ଅମାୟିକତା ତାଙ୍କୁ ସବୁ କଥାରେ ନିରବ ଦର୍ଶକ ଭାବେ ରହିବାର ପ୍ରରୋଚନା ଦେଉଥିଲା ।

କୁନ୍ତଳା କେବଳ ଡେଲିଭେରି କେଶକୁ ହିଁ ହାତକୁ ନେଉଥିଲେ । କିନ୍ତୁ ଡ୍ରକ୍ଟାଗ୍ଭରୀ ବ୍ରହ୍ମଗ୍ଭରୀ ର ପ୍ରରୋଚନାରେ ହେଉ ଅଥବା ଦୁଃଖିନୀ ନାରୀମାନଙ୍କର କଷ୍ଟରେ ବ୍ୟଥିତା ହୋଇ ବା ହେଉ ସେ ଗର୍ଭପାତ କେଶ ମାନ ମଧ୍ୟ ଗ୍ରହଣ କରୁଥିଲେ । ହୁଏତ ଗର୍ଭପାତ ପରି ଏକ ସାମାଜିକ ଅନ୍ୟାୟକୁ ବ୍ୟବସାୟ କରି ରଖିଥିବାର ମାନସିକ ଦୁଃଶ୍ଚିନ୍ତା ତାଙ୍କୁ ଦୁର୍ବଳ କରି ପକାଉଥିଲା । ସେ ବହୁତବେଳେ ବନ୍ଧୁମାନଙ୍କୁ କଥା ଛଳରେ କହୁଥିଲେ ଜଗନ୍ନାଥଙ୍କ କୃପାରୁ ପୁଅଟିଏ ହେଲେ ଓଡ଼ିଶା ଫେରିଯାଇ ସେଠାରେ ଏକ ଆଶ୍ରମ ପ୍ରତିଷ୍ଠା କରିବେ ।

ସେହି ସମୟରେ ଦିଲ୍ଲୀରେ ହିନ୍ଦୀ ପଗ୍ଭରିଣୀ ସଭା ପ୍ରତିଷ୍ଠା ଲାଭ କରିଥିଲା । କବିଜୈନେନ୍ଦ୍ର ଓ ଚତୁରସେନ ଶାସ୍ତ୍ରୀ ପ୍ରଭୃତି ବହୁ ପ୍ରସିଦ୍ଧ ହିନ୍ଦୀ ସାହିତ୍ୟିକ ଏହି ସଂସଦ ସହିତ ସଂପୃକ୍ତ ଥିଲେ । କୁନ୍ତଳାଙ୍କ ଦିଲ୍ଲୀ ଆଗମନ ପରେ ଏହି ସଂସଦ ପକ୍ଷରୁ ତାଙ୍କୁ ଭାରତ କବିନେତ୍ରୀ ଉପାଧି ପ୍ରଦାନ କରାଯାଇଥିଲା । ପୁନଶ୍ଚ ଏହି ସଂସଦର ଏକ ମଞ୍ଚସ୍ଥ ନାଟକରେ ଡ଼ାଃ ବ୍ରହ୍ମଗ୍ଭରୀ ଅଭିନୟ କରିଥିଲେ ବି କୁନ୍ତଳାଙ୍କର ହିନ୍ଦୀ ସାହିତ୍ୟିକ ଗ୍ରହଣରେ ମିଳାମିଶାକୁ ସେ ସହଜ ଭାବେ ଗ୍ରହଣ କରି ପାରୁନଥିଲେ ।

ସେତେବେଳେ ଦିଲ୍ଲୀର ଜ୍ଞାନୀ ମାନୀଙ୍କ ମହଲରେ କୁନ୍ତଳା ଓ ବ୍ରହ୍ମଗ୍ଭରୀଙ୍କର ବିବାହ ଏକମାତ୍ର ସମାଲୋଚନାର ବସ୍ତୁ ଥିଲା । "Beauty & the Beast" ଭଳିପରି ବିଦୂଷୀ ରୂପସୀ କୁନ୍ତଳାଙ୍କ ପାଇଁ ବ୍ରହ୍ମଗ୍ଭରୀ କେବଳ ଅଯୋଗ୍ୟ ନ ଥିଲେ, ନିଷ୍ଠୁର ହୃଦୟ ମଧ୍ୟ ।

ଶ୍ରୀ ଯଶପାଳ ଜୈନଙ୍କ ମତରେ "କୁନ୍ତଳା କୁମାରୀ କବି ଥିଲେ । ସେ ଭାବାବେଶରେ ସମ୍ମୋହିତ ହୋଇ ଯେ କୌଣସି ନିର୍ଣ୍ଣୟରେ ପହଞ୍ଚି ପାରୁଥିଲେ । ତାଙ୍କ ଭିତରେ ଘରକରଣା ବୁଦ୍ଧି ଏତେ ଟିକେବି ନ ଥିଲା । ବହୁ ସରଳ, ଉଦାରମନା ଥିଲେ । ଲୋକଙ୍କ ସହିତ ଖୋଲା ମନରେ ମିଶୁଥିଲେ । କପଟହୀନ କଥାବାର୍ତ୍ତା କରୁଥିଲେ । ତାଙ୍କ ହୃଦୟରେ ମଧ୍ୟ କୌଣସି ଆବିଳତା ନ ଥିଲା । ପର ଆପଣାର ମନ ତାଙ୍କର ବୋଧେ ଜନ୍ମରୁ ହିଁ ନ ଥିଲା କହିଲେ ଚଳେ । ଆଡ଼ମ୍ବର ବୋଲି କିଛି ବସ୍ତୁ ସେ ଜାଣି ନ ଥିଲେ । ହେଲେ ବ୍ରହ୍ମଗ୍ଭରୀଙ୍କୁ ଏହା ମୋଟେ ପସନ୍ଦ ନ ଥିଲା । ସେ ତାଙ୍କ ଉପରେ ସନ୍ଦେହ ଓ କେବେ କେବେ କଠୋର ବ୍ୟବହାର ମଧ୍ୟ କରୁଥିଲେ । ସତ୍ତ୍ୱେ କୁନ୍ତଳା କୁମାରୀ ନିଜ ସପକ୍ଷରେ କେବେ ଯୁକ୍ତି କରୁ ନ ଥିଲେ ବି ତାଙ୍କ ହୃଦୟର ବେଦନା ଯେତେବେଳେ ଅସହ୍ୟ ହୋଇ ପଡୁଥିଲା ତାହା କବିତା ରୂପରେ ଫୁଟି ଉଠୁଥିଲା । ଏକ ଆଭିଜାତ୍ୟ ବଂଶର ରକ୍ଷଣଶୀଳ ମହିଳା ଭଳି କୁନ୍ତଳା ଅନ୍ୟମାନଙ୍କ ସହିତ ବ୍ୟବହାର କରନ୍ତୁ ବୋଲି ବ୍ରହ୍ମଗ୍ଭରୀ ଇଚ୍ଛା କରୁଥିଲେ ବି କୁନ୍ତଳା କୁମାରୀ ନିଜ ବ୍ୟବହାରରେ କେବେ କୌଣସି ପରିବର୍ତ୍ତନ କରି ପାରୁ ନ ଥିଲେ । ସୌମ୍ୟ ଦର୍ଶନା କୁନ୍ତଳାଙ୍କ ମୁହଁରେ ଅନ୍ତରରେ ମମତାର ସ୍ରୋତସ୍ୱିନୀ ପ୍ରବାହିତ ହେଉଥିଲା । ତାଙ୍କର ହସ ମୁଖ, ମିଳନ୍ତିଆ ଚେହେରା ଆଜିବି ମୋ ଆଖି ଆଗରେ ନାଚୁଛି । ଚରିତ୍ର ? ନିର୍ମଳ ଥିଲା । ତାଙ୍କ ହୃଦୟରେ ସମସ୍ତଙ୍କ ପ୍ରତି ମା, ଭଉଣୀ ସ୍ନେହ ଆଉ ମନେହୁଏ ଅତି ମାତ୍ରାରେ ଭାବ ପରବଶତା ତାଙ୍କ ଚରିତ୍ର ପ୍ରତି ଏକ ଆକ୍ଷେପ ହୋଇ ପାରେ ଯାହା ମୁଁ ଜାଣେ ତାଙ୍କୁ ସେହିପରି କେତେକ ଅସଂମଜସ ପରିସ୍ଥିତିରେ ପଡ଼ିବାକୁ ହେଉଥିଲା ।"

କବି ବିଷ୍ଣୁ ପ୍ରଭାକରଙ୍କ ଭାଷାରେ "ସେ ଅତ୍ୟନ୍ତ ନିଷ୍କପଟ, ସରଳ ଏବଂ ସ୍ନେହମୟୀ ନାରୀ ଥିଲେ । ସମସ୍ତଙ୍କୁ ନିଜର କରି ସେମାନଙ୍କୁ ସାହାଯ୍ୟ କରିବା ତାଙ୍କର ପ୍ରଥମ କର୍ତ୍ତବ୍ୟ ବୋଲି ସେ ମନେ କରୁଥିଲେ । ମୁଁ ତାଙ୍କ ଚରିତ୍ରରେ ମଳିନତା କେବେ ଲକ୍ଷ୍ୟ କରିନାହିଁ ।"

କୁନ୍ତଳାଙ୍କ ଦେଶଭକ୍ତି ପୂର୍ଣ୍ଣ କବିତାମାନ "ଆବାହନ" ରେ ସଙ୍କଳିତ । ସେହି ସଂକଳନଟି ବ୍ରିଟିଶ ସରକାର ବାଜ୍ୟାପ୍ତ କରିଦେଇଥିଲେ । ଅମର ସହୀଦ ଭଗତସିଂଙ୍କର ଜୀବନ ବଳୀଦାନ ପରେ ତାଙ୍କ ଅନ୍ତରାତ୍ମା ବିଚଳିତ ହୋଇ ଉଠିଥିଲା । ତାଙ୍କ ଦିଲ୍ଲୀ ବାସ ଭବନରେ ସେହି ସମୟରେ ବହୁ କ୍ରାନ୍ତିକାରୀ ସଭ୍ୟ ଆଶ୍ରୟ ନେଇ ଥିବାର ଦୃଷ୍ଟାନ୍ତ ବିରଳ ନୁହେଁ ।

୧୯୩୨ ମସିହା ବେରିଲିରେ ଆର୍ଯ୍ୟ ସମାଜ ଦ୍ୱାରା ପରିଗ୍ଭଳିତ ଏକ ବିରାଟ ମହିଳା ସଭାରେ କୁନ୍ତଳା କୁମାରୀ ପୌରହିତ୍ୟ କରିଥିଲେ । ଏପ୍ରିଲ ସଂଖ୍ୟା (୧୯୩୨) ସରସ୍ୱତୀ ପତ୍ରିକାରେ ଏହି ସଭାର ଏକ ଫଟୋ ଗ୍ରାଫ୍ ଛପା ଯାଇଥିଲା ଯେଉଁଥିରେ କୁନ୍ତଳା କୁମାରୀଙ୍କର ଛବି ମଝିରେ ଅଛି । ଏଲାହାବାଦ, ବନାରସ ପ୍ରଭୃତି ବିଶ୍ୱବିଦ୍ୟାଳୟରେ ଦୀକ୍ଷାନ୍ତ ଭାଷଣ ଦେବା ପାଇଁ ଆମନ୍ତ୍ରିତ ହୋଇ ଯାଉଥିଲେ । ହିନ୍ଦୀ ପତ୍ରକାରୀତା କ୍ଷେତ୍ରରେ ତାଙ୍କର ଖ୍ୟାତି ଏବେ ବି 'ମହାବୀର', 'ଜୀବନ', 'ନାରୀ', ଭାରତୀ' ପ୍ରଭୃତି ପତ୍ରିକା ସଂପାଦନାରୁ ଅନୁମିତ ।

ସାହିତ୍ୟ ଓ ଜନ କଲ୍ୟାଣରେ ଯେତିକି ଯେତିକି ନିଜକୁ ନିମଜ୍ଜିତ କରି ପାରିବାରିକ ଅପ୍ରିୟତା, ଦୁଃଖକୁ ସେ ଭୁଲିଯିବାକୁ ଗ୍ଭହୁଁଥିଲେ, ତାଙ୍କର ତଥାକଥିତ ସ୍ୱାମୀ କୃଷ୍ଣ ପ୍ରସାଦ ବ୍ରହ୍ମଗ୍ଭରୀଙ୍କର ଅତ୍ୟାଗ୍ଭର ସେତିକି ସେତିକି ବଢ଼ି ଗ୍ଭଲିଥିଲା । କୁନ୍ତଳା କୁମାରୀ ସବୁଦିଗରୁ ନିରାଶ୍ରୟା ହୋଇ ଜଗନ୍ନାଥ ଭକ୍ତିରେ ନିଜକୁ ବିଲୟ କରିବାକୁ ଗ୍ଭହୁଁଥିଲେ । ତାଙ୍କର ଏକ ହିନ୍ଦୀ କବିତା ସଂଗ୍ରହ 'ବରମାଲା' ରେ ତାଙ୍କ ହୃଦୟର ହାହାକାର

କିପରି ମୁଖର ତାହା ଲକ୍ଷ୍ୟ କରିବାର କଥା ଯାହାର ଓଡ଼ିଆ ଅନୁବାଦ—

ହୃଦୟର ଦୁଃଖ କହିବି କାହାକୁ
କେହି, ଦୁଃଖ ବୁଝେତ ନାହିଁ
ନୟନର ଲୁହ ଦେଖାଇବି କାରେ
କେହି ପୋଛିଲାବାଲାତ ନାହିଁ ।

ଡାକ୍ତର କୁନ୍ତଳା କୁମାରୀ ସାବତଙ୍କର ପ୍ରଥମସ୍ତ ଯୋଜନା ଥିଲା ଏକ ଆଶ୍ରମ ପ୍ରତିଷ୍ଠା କରି ଲୋକ କଲ୍ୟାଣ କରିବା । ୧୯୨୭ ମସିହାରେ କଟକରେ ଭାରତୀୟ ତପୋବନ ରଚନା ପାଇଁ ତାଙ୍କର ଆଶା ଥିଲା । ଦିଲ୍ଲୀରେ ମଧ୍ୟ ସେଇ ଯୋଜନା ଅନୁସାରେ ତପୋବନ ସଂସ୍ଥା ଗଢ଼ି ପୁସ୍ତକ ଓ ପତ୍ରିକା ଆଦି ସେ ପ୍ରକାଶ କରିଥିଲେ ତାଙ୍କର ଇଚ୍ଛାଥିଲା ସେଇ ସଂସ୍ଥାର ସଂଗ୍ଲଳକ ରୂପେ ଶ୍ରୀ ଜୈନେନ୍ଦ୍ରଙ୍କୁ ଦାୟିତ୍ୱ ଦେଇଥାନ୍ତେ । ମାତ୍ର କାର୍ଯ୍ୟ-କାରୀ ହେବା ଆଗରୁ ସବୁକିଛି ଓଲଟ ପାଲଟ ହୋଇ ଯାଇଥିଲା । ଶ୍ରୀ ଯଶପାଳ ଜୈନ, ଅଜ୍ଞେୟ, ମାଚୱେ,, ଗୁପ୍ତବଂଧୁ ପ୍ରଭୃତି ବହୁ ହିନ୍ଦୀ ସାହିତ୍ୟିକଙ୍କ ସହିତ ତାଙ୍କର ସଂପର୍କ ଗଢ଼ି ଉଠିଥିଲା । ତପୋବନ ସଂସ୍ଥାର ପ୍ରଥମ ପ୍ରକାଶନ 'ରଘୁଅରକ୍ଷିତ' । ମାତ୍ର ୧୯୩୬ରେ ହିନ୍ଦୀ କବିତା ସଂଗ୍ରହ 'ବରମାଲା' ପ୍ରକାଶ ପାଇଲା । ଭାରତୀୟ ତପୋବନ ସଂଘ ତରଫରୁ ଆଉ ଯେତେବେଳେ ବଂଧୁ-ମାନେ ସ୍ୱୀକରଣ ଗ୍ରହିଲେ—କୁନ୍ତଳା କୁମାରୀ ସଂସ୍ଥା ବଦଳରେ ସଂଘକୁ ଅଧିକ ସୁନ୍ଦର ବୋଲି ମନେ କରୁଥିବାର ଲକ୍ଷ୍ୟ କରାଯାଇଥିଲା ।

ବରମାଲା ପ୍ରକାଶ ପାଇବାର ଠିକ୍ ବର୍ଷଟିଏ ପରେ ଏକ ଦାରୁଣ ସଂବାଦ ଅଗଷ୍ଟର ବର୍ଷଣ ମୁଖର ଦିନରେ ବ୍ୟାପିଗଲା ଦିଲ୍ଲୀ ସାହିତ୍ୟିକ ଏବଂ ବୁଦ୍ଧିଜୀବୀ ମହଲରେ । "ଡ଼ାଃ କୁନ୍ତଳା କୁମାରୀ ଆଉ ନାହାନ୍ତି" । ଅନେକ ବିଶ୍ୱାସ କରି ପାରିଲେନି । ଗତ ଦିନର ଆଳାପ ଆଲୋଚନାରେ ଯାହାର ଲେଶ ମାତ୍ର ଚିହ୍ନ ନ ଥିଲା ତାହା ବା କିମିତି ସମ୍ଭବ ହୋଇ ପାରନ୍ତା ? ବହୁ ସଂଦେହ ବହୁ ଜିଜ୍ଞାସା ବହୁ ପ୍ରଶ୍ନବାଚୀ ସମସ୍ତଙ୍କ ମନ ହୃଦୟକୁ ଭାରାକ୍ରାନ୍ତ କରି ପକେଇଲା ସେ କି ପୁତ୍ର ପ୍ରସବ ଯନ୍ତ୍ରଣାର ଅସହ୍ୟ ପୀଡ଼ାରେ ମୂର୍ଚ୍ଛିତା ଓ ମୃତା ? ଅବା କୌଣସି ନିଷ୍ଠୁର ଅଲଂଘନୀୟ ଯୋଜନାର ଶୀକାର ? ଅଥବା ତାଙ୍କ ମୃତ୍ୟୁ ଏକ ଆକସ୍ମିକ ଦୁର୍ଘଟଣା ? ହୁଏତ ଅନେକ ନିଜକୁ ସାନ୍ତ୍ୱନା ଦେଇ ଅନୁଭବ କଲେ ଅଳ୍ପାୟୁଷା କୁନ୍ତଳାଙ୍କ ମୃତ୍ୟୁ ଜଗନ୍ନାଥଙ୍କର କରୁଣା ।

ତେବେବି ଆଜି ମଧ୍ୟ ଡ଼ା. "କୁନ୍ତଳା କୁମାରୀଙ୍କ" ମୃତ୍ୟୁ ତାଙ୍କ କବିତା ପରି ରହସ୍ୟାବୃତ୍ତ । ସେ ଯେତେବେଳେ ମାତ୍ର ୩୭ ବର୍ଷର, ଜ୍ଞାନ ଓ ପ୍ରତିଭା ଦିପ୍ତିମୟୀ ହଠାତ୍ ତାଙ୍କର ଜୀବନାବସାନ ରହସ୍ୟ ଆଚ୍ଛାଦିତ ନୁହେଁ ତ ଆଉ କ'ଣ ହୋଇ ପାରେ ?

ହିନ୍ଦୀର ବିଖ୍ୟାତ ଲେଖକ ଶ୍ରୀ ଜୈନେନ୍ଦ୍ରଙ୍କର ଏକ ବହୁ ଚର୍ଚ୍ଚିତ ଉପନ୍ୟାସ "କଲ୍ୟାଣୀ" କୁନ୍ତଳାଙ୍କର ଜୀବନ ଚରିତ । ସ୍ୱୟଂ ଲେଖକ ଏବଂ ଓକିଲ ଭୂମିକାରେ ଥାଇ ଲେଖିଛନ୍ତି "ମୁଝେ ଖବର ଦୋପହର ବାଦ୍ ମିଲି । ମାଲୁମ୍ ହୁଆ କି ସବେରେ ତିନି ବଜେ ଉନ୍ହୋନେ ପୁତ୍ରକୋ ଜନମ୍ ଦିଆ ତବ ସ୍ୱସ୍ଥ ଥୀ, ପ୍ରସନ୍ନ ଥୀ, ଲେକିନ୍ କୁଛ ଦେର ବାଦ୍ ଅଗ୍ଲନକ୍ ହୃଦୟ କି ଗତି ବନ୍ଦ ହୋ ଗୟୀ, ଅଗ୍ଲନକ୍........ଶାୟଦ୍........।" ହୁଏତ ଓକିଲ-ଙ୍କର ମଧ୍ୟ ସଂଦେହ ମୃତ୍ୟୁ ସ୍ୱାଭାବିକ ନଥିଲା ।

କେତେକ ସାହିତ୍ୟିକ ବଂଧୁ ଗହଣରେ ଶ୍ରୀ ଯଶପାଳ ଜୀ ମୃତ୍ୟୁ ସଂବାଦ ଶୁଣି ସ୍ତବ୍ଧ ହୋଇ ଯାଇଥିଲେ । ଶ୍ରୀ ମଙ୍ଗଳ ଦେବ ଶାସ୍ତ୍ରୀ ଓ ଶ୍ରୀ ମହାରଥିଙ୍କୁ କୁନ୍ତଳାଙ୍କର ମୃତ୍ୟୁର ବହୁଦିନ ପର୍ଯ୍ୟନ୍ତ ଜଣାଥିଲା—ସେ ସପରିବାର କଟକ ଫେରିଯାଇଥିଲେ ବୋଲି ।

ଶ୍ରୀ ଜୈନେନ୍ଦ୍ର କହନ୍ତି "ମୃତ୍ୟୁର ବହୁ ପୂର୍ବରୁ କୁନ୍ତଳା କୁମାରୀ ସ୍ୱାମୀଙ୍କ ଅତ୍ୟାଚାର ଆଉ ବ୍ୟବସାୟର ଝଂଝଟ ମଧ୍ୟରେ ନିଜର କବି ହୃଦୟକୁ ଜାଳି ଛାରଖାର କରି ସାରିଥିଲେ । 'କଲ୍ୟାଣୀ' ଅର୍ଥାତ୍ କୁନ୍ତଳାଙ୍କଠାରୁ ମୁଁ ଚାରିବର୍ଷ ସାନ ହେଲେବି ସେ ମୋତେ ବଂଧୁ ଭାବେ ଗ୍ରହଣ କରି ନିଜ ଅନ୍ତରର ଗୋପନତମ କଥା ମଧ୍ୟ ପ୍ରକାଶ କରିବାକୁ କୁଣ୍ଠା ବୋଧ କରୁନଥିଲେ । ଯେଉଁ ଯେଉଁ ଦିନ ଡ଼ା. ବ୍ରହ୍ମଚାରୀଙ୍କର ଅତ୍ୟାଚାର ତାଙ୍କ ସହ୍ୟର ସୀମା ଅତିକ୍ରମ କରେ ସେ ଆସି କହୁଥିଲେ ନିଜର ଗୃହିଣୀ ହେବାର ଅକ୍ଷମତା ବିଷୟରେ । କେବେ ସ୍ୱାମୀଙ୍କର ନିନ୍ଦା କରିବା କେହି ଶୁଣିନାହିଁ । ଦିନେ ଦିନେ ବ୍ରହ୍ମଚାରୀ ତାଙ୍କୁ ବିଚ୍ ରାସ୍ତାରେ ଜୋତାରେ ବାଡ଼େଇବା ଠୁଁ ଆରମ୍ଭ କରି ଘରେ ବନ୍ଦକରି ପାଶବିକ ବଳପ୍ରୟୋଗ କରିବା ଇତ୍ୟାଦି ଅତ୍ୟାଚାର କରିଛନ୍ତି ; ହେଲେ ସେ କେବଳଭାବ ବିହ୍ୱଳ ଭାବରେ ଦୁଃଖ ପ୍ରକାଶ କରିବା ବ୍ୟତୀତ ପ୍ରତିକାର ପାଇଁ ଭରସା ଖୋଜି ନାହାନ୍ତି ।

ନିଜ ପ୍ରତିଭା ବିକାଶ ହେଲାବେଳେ ସେ ଓଡ଼ିଶା ବାହାରେ ଥିବାରୁ ଓଡ଼ିଶାର ପାଠକ ତାଙ୍କର କେତେକ କବିତା ବ୍ୟତୀତ ଅନ୍ୟ କିଛି ବିଷୟରେ ଅବଗତ ନ ରହିବା ସ୍ୱଭାବିକ । ମାତ୍ର ଦିଲ୍ଲୀରେ ଥାଇ ବି, ହିନ୍ଦୀ ସାହିତ୍ୟରେ ନିଜର ପାଣ୍ଡିତ୍ୟ ପ୍ରକାଶ କରିବି, ଓଡ଼ିଆ ସାହିତ୍ୟକୁ ସଂବୃଦ୍ଧ କରିବାକୁ ସେ ପଛେଇ ନାହାନ୍ତି । ତାଙ୍କର କବିତା ମାଧ୍ୟମରେ ସେ ଓଡ଼ିଶା ପ୍ରତି ନିଜର ସ୍ନେହ, ଶ୍ରଦ୍ଧା ଆକର୍ଷଣ ଇତ୍ୟାଦିର ଯେଉଁ ପରାକାଷ୍ଠା ଦର୍ଶାଇଛନ୍ତି

ଯାହା ତାଙ୍କ ମୃତ୍ୟୁର ବହୁ ବର୍ଷପରେ ଆମର ଅନୁଭବକୁ ଆସିଛି । ତାଙ୍କ ପରି ଜଣେ ସଂବେଦନଶୀଳା ନାରୀ ସମଗ୍ର ଓଡ଼ିଶା ପାଇଁ ଗୌରବ ।

ତାଙ୍କର ବହୁ କବିତା ଭାରତର ବିଭିନ୍ନ ରାଜ୍ୟ ଭାଷା ଓ ଇଂରାଜୀରେ ଅନୂଦିତ ହୋଇ ଆଲୋଡନ ସୃଷ୍ଟି କରିଛି । ତାଙ୍କ ଜୀବଦ୍ଦଶାରେ ସେ ଯେଉଁ ସଭା ସମିତିମାନଙ୍କରେ ନିଜର ଓଜସ୍ୱିନୀ ଭାଷଣ, ପ୍ରତିଭା-ଦୀପ୍ତ କବିତା ପାଠ କରୁଥିଲେ, ଦର୍ଶକ, ଶ୍ରୋତା ମନ୍ତ୍ରମୁଗ୍ଧ ପରି ନିର୍ବାକ, ନିସ୍ତବ୍ଧ ହୋଇ ବସି ରହୁଥିଲେ, ଯେପରି ସ୍ୱୟଂ ସରସ୍ୱତୀ ଆବିର୍ଭୂତା—ମାତ୍ର ତାଙ୍କ ଠିଁ ମାନବିକ ଗୁଣ, ମହତ୍ୱ ସର୍ବଦା ବିଦ୍ୟମାନ ଥାଇ ବି ଏକ ଅତି ମାନବିକ ପ୍ରଶୋଚ୍ଛଳତାରେ ସେ ପରିଚାଳିତ ହେଉଥିବାର ଅନୁଭୂତ ହେଉଥିଲା । ନିଜେ ଡାକ୍ତର ବ୍ୟବସାୟ କରୁଥିଲେ ବି ତାଙ୍କର ଅନ୍ତର୍ନିହିତ ପ୍ରକୃତି ଏକ ମହତ୍ୱାକାଂକ୍ଷୀ ଭାବନାର ଶନ୍ତାଘର ।

କୁନ୍ତଳା ତାଙ୍କର ଲେଖକ ବନ୍ଧୁଙ୍କ ଗହଣରେ ସଂସାର ପ୍ରତି ବିମୁଖତାର କଥା ଆଲୋଚନା କରୁଥିଲେ । ତାଙ୍କର ମୃତ୍ୟୁ ପାଇଁ ଯେଉଁ ଏକ ଅଲଂଘନୀୟ ଆକର୍ଷଣ ସେ ଅନୁଭବ କରି କବିତାରେ ପରିସ୍ଫୁଟ କରୁଥିଲେ ତାହା ମଧ୍ୟ ସ୍ଥଳ ବିଶେଷରେ ପ୍ରକାଶ କରିବାକୁ କୁଣ୍ଠା ବୋଧ କରୁ ନଥିଲେ । ସ୍ୱାମୀଙ୍କ ତାଡ଼ନାରେ ଜର୍ଜରିତ କୋମଳ ପ୍ରାଣା କୁନ୍ତଳା କୁମାରୀ ସ୍ୱାମୀଙ୍କ ବିରୁଦ୍ଧରେ କେବେ ସ୍ୱତଃସ୍ଫୂର୍ତ୍ତ ଘୃଣା ପ୍ରକାଶ କରିନାହାନ୍ତି । ବରଂ ଆତ୍ମପୀଡ଼ନ, ଅନଶନରେ ଆତ୍ମଶୁଦ୍ଧି ପାଇଁ ସେ ସବୁବେଳେ ତତ୍ପର ଥିଲେ । ତାଙ୍କ ମତରେ ସେ ଥିଲେ ସ୍ୱାମୀ ଅଯୋଗ୍ୟା । ତେଣୁ ସଂସାରିକ ଦୁଃଖର ଶୀକାର । ସ୍ୱାମୀଙ୍କୁ ନିରନ୍ତର ପ୍ରେମ, ସ୍ନେହରେ ବାନ୍ଧି ରଖିବାକୁ ଚେଷ୍ଟା କରିବା ତାଙ୍କ ଚରିତ୍ରର ଏକ ମହତ୍ୱପୂର୍ଣ୍ଣ ଘଟଣା ।

ଶୈଳେନ୍ଦ୍ର ଜୀଙ୍କ 'କଲ୍ୟାଣୀ'ରୁ କୁନ୍ତଳାଙ୍କର ଏକ ବଚନିକା—"ମୁଁ ବିବାହ ପୂର୍ବରୁ ନିଜେ ଥିଲି, ମୋର ସେଇ ସମୟର ସବୁ ପୁସ୍ତକମାନଙ୍କର ଲେଖାମାନ ପ୍ରାଣବନ୍ତ, ମାତ୍ର ବିବାହ ପରେ ପ୍ରଶ୍ନମାନ ବୃଦ୍ଧି ହୋଇ ପଡ଼େ—ମୋର ବିବାହ, ମୋର ଡାକ୍ତରୀ, ମୋର ପତ୍ନୀତ୍ୱ, ମୋର ଶିଳ୍ପିତ୍ୱ—ଏଇସବୁ ଏକ ସାଥିରେ କେମିତି ସମ୍ଭବ ହୋଇ ପାରନ୍ତା ?"

ସ୍ୱାମୀ ଡାଃ ବ୍ରହ୍ମଚାରୀ (କଂପାଉଣ୍ଡର) ଚାହୁଁଥିଲେ କୁନ୍ତଳା ଏକ ଓଢ଼ଣା ଟଣା ଗହ ଲଳନା ହୋଇ ରହୁ—ବାହାରେ ସ୍ୱାମୀର ସମ୍ମାନକୁ ଆଗରେ ଧରି ପଦଚାରଣ କରୁ । କୁନ୍ତଳା ବି ଶପଥ କରି ପକେଇଲେ ସ୍ୱାମୀଙ୍କ ମନନେଇ ଚଳିବେ, ହେଲେ ଘରେ ବସି କ୍ଲିନିକ୍ ନ ଚଳେ ଟଙ୍କା ଆସନ୍ତା କୁଆଡୁ, ବ୍ରହ୍ମଚାରୀଙ୍କ ଆଭିଜାତ୍ୟ ରହନ୍ତା କେମିତି ? ଶପଥ ଭଙ୍ଗାଇବାକୁ ପଡ଼ିଥିଲା ପୁନଶ୍ଚ ବ୍ରହ୍ମଚାରୀଙ୍କୁ ସ୍ୱୟଂ ।

ଘରେ ଜଗନ୍ନାଥଙ୍କ ପ୍ରତିମୂର୍ତ୍ତି ସ୍ଥାପନା କରି ଅଧିକ ଶୁଚିମନ୍ତ, ଅଧିକ ପବିତ୍ର ଭାବରେ ଜୀବନ ଯାପନ କରିବା ତାଙ୍କ ଜୀବନର ନିତିଦିନିଆ କାର୍ଯ୍ୟଥିଲା । ସ୍ୱ ରଚିତ କବିତାମାନ ପୂଜା କରିବା ସମୟରେ ଯେତେବେଳେ ଗାଉଥିଲେ, ମନେ ହେଉଥିଲା ଯେମିତି ସ୍ୱାମୀର ଉତ୍ପୀଡ଼ନରେ ଏବଂ ଅର୍ଥ ଲୋଭର ପାଶବିକତାରେ ସେ ଅତିଷ୍ଠ, ଦୁଃଖିନୀ, ମୃତ୍ୟୁ ପାଇଁ କାତର ପ୍ରାର୍ଥନା, ମାତ୍ର ବ୍ରହ୍ମଚାରୀଙ୍କର ଅତ୍ୟାଚାରର ଶେଷ କେଉଁଠି ?

ଆଜି ସେହି ମହିୟସୀ ମହିଳାଙ୍କର ସ୍ମୃତି ଜାଗରିତ ହେଲେ ମନେହୁଏ ଯେମିତି ଏକ ଅନ୍ଧକାରର ଗହ୍ୱର ମଧ୍ୟରୁ ଆମେ ସମସ୍ତେ ଉଦ୍ଧାର ପାଇଛୁଁ—ଆଉ ହଠାତ୍ ଆମ ଭିତରେ ଥିବା ଏକ ପବିତ୍ର ଆତ୍ମା ନିଖୋଜ୍ । ହୁଏତ ଆମର ଏହା ମାନସିକ ବିଭ୍ରାନ୍ତି । ଦୁଃଖର ରାତି ଖୁବ୍ ଲମ୍ବା ।

ଅନେକଙ୍କ ମତରେ କୁନ୍ତଳା କୁମାରୀ ଯଦି ଉପଯୁକ୍ତ ସ୍ୱାମୀ ସଙ୍ଗ ଲାଭ କରିଥାନ୍ତେ ତେବେ ହୁଏତ ଭାରତୀୟ ସାହିତ୍ୟର ଏକ ନୂତନ ଦିଗଦ୍ରଷ୍ଟାରୂପେ ସମ୍ମାନିତ ହୋଇ ଥାନ୍ତେ । ମାତ୍ର ମହାକାଳର ନିମନ୍ତ୍ରଣ ଆଉ ଭବିଷ୍ୟତର ଯୋଜନା ମଧ୍ୟରେ ଯେଉଁ ବିରାଟ ତଫାତ୍—ତା' ଆମେ ସମସ୍ତେ ବୁଝି ବି ଅବୁଝା—ଯେମିତି ଯା' ଆମର ଚରିତ୍ର । 'ଆଶା ହିଁ ଜୀବନ ଧାରଣର ପାଥେୟ' ପରି ଆମେ କଳ୍ପନା ବିଳାସୀ ।

ଆଜି ଯେତେବେଳେ ପୂଜ୍ୟପୂଜାର ପ୍ରସାର ଚାଲିଛି, ସେତେବେଳେ ଅନ୍ତତଃ ପକ୍ଷେ ତାଙ୍କର ସ୍ମୃତି ଓଡ଼ିଶାର ସାହିତ୍ୟ ପ୍ରସାରର ପୀଠ ସ୍ଥଳୀମାନଙ୍କରେ ରହିବା ଦରକାର । ଦିବ୍ୟ ଚେତନାର ଫଲଗୁଧାରାରେ ବିମୋହିତ ହୋଇ ଓଡ଼ିଶାର ଅନ୍ୟତମ ଗୌରବ "ଭାରତ କବି ନେତ୍ରୀ" କୁନ୍ତଳା କୁମାରୀ ନିଜ କବିତା, ସ୍ନେହ, ସରଳତା ମାଧ୍ୟମରେ ଭାରତର ପ୍ରତ୍ୟେକ ବୁଦ୍ଧିଜୀବୀଙ୍କୁ ମାତ୍ର ୩୭ ବର୍ଷର ଜୀବନ କାଳ ଭିତରେ ବହୁ ଜୀବନ ଦର୍ଶନ ଶିକ୍ଷା ଦେଇ ଶେଫାଳୀ ପରି, ତାରା ପରି ମୃତ୍ୟୁ ବରଣ କଲେ । ତାଙ୍କର ମୃତ୍ୟୁ ପରେ ତାଙ୍କ ପରିବାରର ସଠିକ ଅନୁସନ୍ଧାନ ଏଯାଏ ହୋଇ ପାରିନି । ଯଦିଓ ଆମେ ତାଙ୍କ ଜୀବନକାଳ ଭିତରେ ତାଙ୍କର ପ୍ରତିଭାକୁ ପୂଜା କରିବାର, ତାଙ୍କ ଦୁଃଖରେ ଦୁଃଖୀ ହେବାର ସୁବିଧା ସୁଯୋଗ ପାଇନାହୁଁ, ତଥାପି ବୋଧେ ଏଇଯାହିଁ ଯଥେଷ୍ଟ ହେବ, ଆମେ ତାଙ୍କ ସ୍ମୃତି ପାଇଁ କିଛି କରିବୁଁ, ତାଙ୍କ ପରିବାରର ଅନୁସନ୍ଧାନ କରି ତାଙ୍କ ମୃତ୍ୟୁର ପ୍ରକୃତ ରହସ୍ୟକୁ ଉନ୍ମୋଚନ କରିବ ।

ସାଂବାଦିକ ରୂପସା, ବାଲେଶ୍ୱର—୭୫୬୦୨୮

ଦିନେ ଇଂରାଜୀ ଭାଷାରେ ପ୍ରଶ୍ନ କଲେ ଅଧ୍ୟାପକ What is the difference between a wife and a concubine ? (ବିବାହିତା ସ୍ତ୍ରୀ ଓ ରକ୍ଷିତା ମଧ୍ୟରେ ପାର୍ଥକ୍ୟ କ'ଣ ?) ଆମ୍ଭେମାନେ ସ୍ତବ୍ଧ, ବିସ୍ମିତ, ଉତ୍ତେଜିତ ଓ ଟିକେ ବିରକ୍ତ । କ୍ଲାସରେ ପ୍ରାୟ ୨୫ ଜଣ ଛାତ୍ର । ସମସ୍ତେ ଉଦ୍‌ଗ୍ରୀବ । ଇଏ ତା ମୁହଁକୁ, ସିଏ ତା ମୁହଁକୁ ଅନାଉଛି । କିରେ ଇଏ କିପରି ପ୍ରଶ୍ନ ଏତେ ପ୍ରବୀଣ ଅଧ୍ୟାପକ, ଏତେ ଗମ୍ଭୀର, ପୁଣି ପଢ଼ାଉଛନ୍ତି ନୀତିଶାସ୍ତ୍ର (Ethics) କିନ୍ତୁ, ଆଜି ଅକସ୍ମାତ ଏପରି ଅସଙ୍ଗତ ପ୍ରଶ୍ନ କାହିଁକି ? ଏଭଳିଆ ପ୍ରଶ୍ନ କ'ଣ ନୀତି ଶାସ୍ତ୍ରର ଅନ୍ତର୍ଗତ ? ମୁଁ ଆଉ ନିଜକୁ ସମ୍ଭାଳି ପାରିଲିନାହିଁ । ଛିଡାହୋଇ ଇଂରାଜୀ ଭାଷାରେ ଲେକ୍‌ଚର ଆରମ୍ଭ କଲି—Hindu Marriage is a Religious Sacrament ( ହିନ୍ଦୁ ବିବାହ ଗୋଟିଏ ଧର୍ମୀୟ ସଂସ୍କାର) । ଆମ ଧର୍ମରେ ସ୍ତ୍ରୀଙ୍କୁ ସହଧର୍ମିଣୀ କୁହାଯାଏ । ଏପରି ଧାରଣା ଖ୍ରୀଷ୍ଟ ଏବଂ ଇସ୍‌ଲାମ ଧର୍ମରେ ବି ଅଛି......ଇତ୍ୟାଦି । ମୋପରେ ଆହୁରି ଦୁଇଜଣ ଛାତ୍ର ମୋ କଥାର ପୁନରାବୃତ୍ତି କଲେ ।

ସ୍ୱାଧୀନ ଚିନ୍ତା—କେବଳ ଅନ୍ଧବିଶ୍ୱାସ ନୁହେଁ । ମଣିଷ ଚିରଦିନ ଯାହା ବିଶ୍ୱାସ କରିଛି, ତାହା ହିଁ ସତ୍ୟ କିମ୍ବା ସତ୍ୟତାରୁ କିଛି ଭିନ୍ନ—ତାହା ଚିନ୍ତାକରି ଦେଖିବାକୁ ପଡ଼ିବ । ଫିଲୋସଫିର ଧର୍ମ ହେଉଛି ସତ୍ୟପ୍ରିୟତା, ସତ୍ୟାନୁସନ୍ଧାନ, ଏହା ଯୁକ୍ତିମାର୍ଗ, ଭକ୍ତିମାର୍ଗ ନୁହେଁ । ଅଧ୍ୟାପକଙ୍କ କଥା ଟିକେ ବନ୍ଦ ହେବା ସଙ୍ଗେ ସଙ୍ଗେ ଆମ ଭିତରୁ ଜଣେ ଉଠି ପ୍ରଶ୍ନକଲା—Then Sir, what is your opinion ? (ତା ହେଲେ ସାର । ଆପଣଙ୍କ ମତ କ'ଣ ?) ଅଧ୍ୟାପକ କହିଲେ ଶୁଣ । ସ୍ତ୍ରୀ ଓ ରକ୍ଷିତା ମଧ୍ୟରେ ଏକମାତ୍ର ପାର୍ଥକ୍ୟ—ବିବାହିତା ସ୍ତ୍ରୀ ଆଇନର ସମର୍ଥନ ପାଏ, ରକ୍ଷିତା ପାଏନା । (A wife gets the support of law, a concubine does not get it.) ଉତ୍ତର ଶୁଣି ଆମେ ସ୍ତମ୍ଭିତ । ଆମ ମନ ମାନିଲା ନାହିଁ । ମନର କୋଣରେ ଗୋଟିଏ ଅତୃପ୍ତିକର ପ୍ରଶ୍ନ ଜାଗି ଉଠିଲା—ଏତିକି ମାତ୍ର ଯେବେ ପତି ପତ୍ନୀର ସମ୍ବନ୍ଧ ହୁଏ, ତେବେ ବିବାହପ୍ରଥା ମାନବ ସମାଜରେ କାହିଁକି

# ଗୁରୁ ଶିଷ୍ୟ ସଂବାଦ

ଶ୍ରୀ କ୍ଷିତିଶ ଚନ୍ଦ୍ର ମୈତ୍ର

ଆମ ବିଦ୍ୟା ବୁଦ୍ଧିର ପରିଚୟ ପାଇ ପ୍ରବୀଣ ଅଧ୍ୟାପକ, ରେଭେନ୍ସା କଲେଜର ଦର୍ଶନ ବିଭାଗର ପ୍ରଧାନ ମୋହିନୀମୋହନ ସେନାପତି ଖିଲି ଖିଲି କରି ହସି ଉଠିଲେ । କହିଲେ—ଏହି ମସ୍ତିଷ୍କକୁ ନେଇ ତୁମ୍ଭେମାନେ ଦର୍ଶନ ଶାସ୍ତ୍ର ପଢ଼ିବାକୁ ଆସିଛ ? ଦର୍ଶନ ପ୍ରତ୍ୟକ୍ଷ ଅଭିଜ୍ଞତା—କେବଳ ପୋଥିଗତ ବିଦ୍ୟା ନୁହେଁ । ଦର୍ଶନ

ପ୍ରଚଳିତ ରହିଛି ? ଯେବେ ବେଦୀରେ ବସି ବିବାହ କରିଥିବା ସ୍ତ୍ରୀ ଗୋଟିଏ ଆଇନ ଅନୁମୋଦିତ ରକ୍ଷିତା ଭିନ୍ନ ଆଉ କିଛି ନୁହେଁ (A legalised concubine) ତା ହେଲେ ବିବାହ କରିବାର ପ୍ରୟୋଜନ କଣ ? ଇନ୍ଦ୍ରିୟ ବୃତ୍ତି ଚରିତାର୍ଥ କରିବା ହିଁ ଯେବେ ବିବାହର ଏକମାତ୍ର ଉଦ୍ଦେଶ୍ୟ ହୁଏ, ତେବେ ଦାମ୍ପତ୍ୟ ଜୀବନ

...ତ୍ତ୍ୱ, ସ୍ୱାତନ୍ତ୍ର୍ୟ, ଗରିମା, ସତୀତ୍ୱର ମହିମା, ପୁରୁଷ ଚରିତ୍ରର ମହନୀୟତା, ଏସବୁ କ'ଣ ମୁହଁର କଥା ? ... ଉଚିତ କରୁନା ? ମାନବର ସାମାଜିକ ଏବଂ ଆଧ୍ୟାତ୍ମିକ ଜୀବନରେ କ'ଣ ଏ ସବୁର କିଛି ମୂଲ୍ୟ ନାହିଁ ?

୧୯୨୭ ମସିହାରେ ମୋହିନୀବାବୁଙ୍କ ପାଖରେ ମୁଁ ପାଠ ପଢ଼ିଥିଲି, ତାହାଙ୍କର ମତାମତ ଶୁଣିଥିଲି । ଆଜି ୧୯୮୦ ମସିହା, ପାଖାପାଖି ଅର୍ଦ୍ଧ ଶତାବ୍ଦୀ ବିତିଯାଇଛି । ଆଜି ବି ସେହି ପ୍ରଶ୍ନ ମନରେ ଘୋଷାରି ହେଉଛି । ଯେପରିକି ଆଜି ବି ଅଧ୍ୟାପକ ମୋହିନୀମୋହନ କାନ ପାଖରେ ନୀରବରେ ପ୍ରଶ୍ନ କରୁଛନ୍ତି—"What is the difference between a wife and a concubine" ? ଏ ପ୍ରଶ୍ନର ଉତ୍ତର ମୁଁ ବାରମ୍ବାର ନିଜପାଖରେ ଖୋଜିଛି । ଯଥାର୍ଥ ଉତ୍ତର ପାଇଛି କି ନା ତାହା ଜାଣେନା । କିନ୍ତୁ, ଆଜି ସତୁରିବର୍ଷ ବୟସରେ ବସି ଭାବୁଛି ଯେ କି ଅଦ୍‌ଭୁତ ପ୍ରଶ୍ନ ପଚାରି-ଥିଲେ ସେନାପତି ସାହେବ । ଯାହା ସାରା ଜୀବନରେ ମୁଁ ଭୁଲି ପାରିଲି ନାହିଁ । ଏବଂ ଯାହାର ଉତ୍ତର ପାଇବାକୁ ମୁଁ ବାରମ୍ବାର ଚେଷ୍ଟା କରୁଛି । ମୁଁ ତ ଅତୁରି ଅନେକ ଅଧ୍ୟାପକଙ୍କ ପାଖରେ ପାଠ ପଢ଼ିଛି । କିନ୍ତୁ କାହାରି ଗୋଟିଏ କଥା ତ ମୋର ମନେନାହିଁ ? କେହି ତ ଏପରି ଗୋଟିଏ ବାଙ୍କୁଆ ପ୍ରଶ୍ନ ପଚାରି ନଥିଲେ, ଯାହାକି ଶିଳାଲିପି ପରି ମନରେ ଗୋଟାଏ ଚିରସ୍ଥାୟୀ ରେଖାପାତ କରିପାରେ ?

ଯଥାର୍ଥଗୁରୁ କିଏ ? ଯିଏ ଛାତ୍ରମାନଙ୍କ ମନଭିତରେ ଜ୍ଞାନର ଆଲୋକ ସମ୍ପାତ କରିପାରେ ? ଛାତ୍ରମାନଙ୍କ ଚିନ୍ତା ଶକ୍ତିକୁ ଉଦ୍‌ବୁଦ୍ଧ କରିପାରେ ? ନୂଆ ଭାବିବାକୁ ଶିଖାଇ ପାରେ ? ପ୍ରଶ୍ନ ଦ୍ୱାରା ନୂଆ ସମସ୍ୟାର ଇଙ୍ଗିତ ଦେଇପାରେ ? ଏପରି ଶିକ୍ଷକ ଆମ ଦେଶରେ ଦୁର୍ଲଭ । ଆମ ଦେଶର ଅଧିକାଂଶ ଅଧ୍ୟାପକ ନିଜେ କିଛି ନୂଆ କଥା ଭାବନ୍ତି ନାହିଁ, ତେଣୁ ଛାତ୍ରମାନଙ୍କୁ ବି ନବୀନ ଚିନ୍ତାଧାରାରେ ଅନୁପ୍ରାଣିତ କରିପାରନ୍ତି ନାହିଁ । ଯେଉଁ ଜାତି ଦୁଇଶହ ବର୍ଷ ବିଦେଶୀର ଶୋଷଣ ମାନି ନେଇଥିଲା ତାହା ପକ୍ଷରେ ସ୍ୱାଧୀନ ଚିନ୍ତା ଯେ ମହାପାପ । ସେ ପିଲା ଦିନରୁ ଶିଖେ ପର ମତକୁ ଅଭ୍ରାନ୍ତ ସତ୍ୟ ବୋଲି ମାନିବାକୁ କଠୋର ସମସ୍ୟାର ସମ୍ମୁଖୀନ ହେବାକୁ ସେ ଡରେ—କାହିଁକି ନା ସମସ୍ୟାର ସମ୍ମୁଖୀନ ହେବାକୁ ହେଲେ ଅନେକ ଚିନ୍ତା ଅନେକ ପରିଶ୍ରମ କରିବାକୁ ପଡ଼େ । ପରର ମତଟାକୁ ମାନି-ନେଲେ ଯେବେ ସହଜରେ ଦାନା କନାର ବ୍ୟବସ୍ଥା ହୋଇପାରେ ତେବେ ତାହା ନକରିବା କିଆଁ ?

ଯେଉଁ ଯୁଗରେ ମୋହିନୀମୋହନ ଏ ଦେଶରେ ଜନ୍ମ ଗ୍ରହଣ କରିଥିଲେ, ସେ ଯୁଗରେ କେବଳ ଓଡ଼ିଶା ନୁହେଁ ସମଗ୍ର ନାରୀ ଜାତିର ଅବସ୍ଥା କ'ଣ ଥିଲା ତାହା ପାଠକ ପାଠିକା ମାନେ ଠିକ୍ ଭାବି ଦେଖିବେ । ଖାତା ଖତିୟାନରେ ନାରୀ ପୁରୁଷର ସହଧର୍ମିଣୀ କଥା କୁହା-ଯାଉଥିଲା କିନ୍ତୁ, ବାସ୍ତବରେ ନାରୀଥିଲା ପୁରୁଷର ସେବା ଦାସୀ । ନାରୀର କିଛିମାତ୍ର ସ୍ୱାଧୀନତା ନଥିଲା । ବିଶେଷ କରି ଓଡ଼ିଆ ନାରୀମାନେ ଥିଲେ ନିରକ୍ଷର । ପୁରୁଷ-ମାନଙ୍କ ମନୋରଞ୍ଜନ ହିଁ ନାରୀର ଏକମାତ୍ର ଜୀବନର ଆଦର୍ଶ । ତାହାର ନିଜର ଆଶା ଆକାଂକ୍ଷା କିଛି ନଥିଲା । ପୁରୁଷ ହାତରେ ସେ ଥିଲା ଗୋଟେ ଖେଳନା । ସ୍ୱାମୀର ହୁକୁମ ତାମିଲ୍ କରିବା ହିଁ ଥିଲା ନାରୀର ଏକମାତ୍ର କର୍ତ୍ତବ୍ୟ । ପତି ପରମ ଗୁରୁ । ଯଦିଓ ସେ ହୋଇପାରନ୍ତି ଗୋଟେ ମଦୁଆ, ଲମ୍ପଟ, ଅଥବା ଉଦ୍‌ଭେଶୀ ଷଣ୍ଢ, ଗୋଟାଏ ଜମିଦାରର ପାଞ୍ଚଟା ପୋଇଲି ଥାଇପାରେ, ତା ସଙ୍ଗରେ ତାର ଗୋଟାଏ ବିବାହିତା ସ୍ତ୍ରୀ । ପୋଇଲି ମାନଙ୍କ ଅପେକ୍ଷା ଗୋଟିଏ ବିବାହିତ ସ୍ତ୍ରୀର କ'ଣ ବେଶୀ ପାର୍ଥକ୍ୟ ଥିଲା ? ବରଂ ଅନେକ ପୋଇଲି ବିବାହିତା ସ୍ତ୍ରୀ ଅପେକ୍ଷା ଅନେକ ବେଶୀ ଆଦର ଯତ୍ନ ପାଉଥିଲେ । ଏପରି ପରିସ୍ଥିତିରେ ବିବାହିତା ସ୍ତ୍ରୀଙ୍କୁ ଆଇନସଙ୍ଗତ ରକ୍ଷିତା କହିଲେ ଅନ୍ୟାୟଟା କ'ଣ ହୁଏ ?

୧୯୨୭ ମସିହାରେ ଅନେକଦିନ ପରେ ମୁଁ ବିଶ୍ୱ-ବିଖ୍ୟାତ ଦାର୍ଶନିକ ନାଟ୍ୟକାର ବାର୍ଣ୍ଣାଡ୍‌ଶଙ୍କର "ମ୍ୟାନ୍ ଆଣ୍ଡ ସୁପର ମାନ" ନାଟକଟି ପଢ଼ିଥିଲି । ଗୋଟିଏ ଯାଗାରେ ବିବାହ ପ୍ରଥାକୁ ବିଦ୍ରୂପକରି 'ଶ' କହିଛନ୍ତି—"Marriage is the most licentious of all institutions, beacuse it gives the greatest scope for sexual intercourse and therefore it has been so very popular in the world.

ବିବାହ ସବୁଠାରୁ ବେଶୀ ଅଶ୍ଳୀଳ କଥା, କାରଣ ଏହା ଯୌନ ପ୍ରବୃତ୍ତି ଚରିତାର୍ଥ କରିବାର ସର୍ବାଧିକ ସୁଯୋଗ ଦିଏ, ଏବଂ ସେହି ହେତୁ ଏହା ଜଗତରେ ଏତେ ଜନପ୍ରିୟତା ଲାଭକରି ଅଛି । ମୋହିନୀ ସେନାପତି କହୁଥିଲେ "A wife is a legalised Concubine (ସ୍ତ୍ରୀ ଗୋଟିଏ ଆଇନ ଅନୁମୋଦିତ ରକ୍ଷିତା) । ଶ' ଙ୍କ କଥା ଠାରୁ ଏହାର ପାର୍ଥକ୍ୟ ଖୁବ୍ ବେଶୀ ନୁହେଁ ।

ଗ୍ରୀଷ୍ମ ଛୁଟୀରେ କଲେଜ ବନ୍ଦ ହେଲା । ମେ ମାସଟା କଟିଗଲା । ଜୁନ୍ ମାସରେ ଦିନେ ମନେହେଲା ଅନେକ ଦିନ ହେଲା ଗୁରୁଦର୍ଶନ ହୋଇନାହିଁ ! ଦିନେ ବେଳ

ପ୍ରାୟ ସାଢ଼େ ତିନିଟାରେ ଗୋଡ଼ରେ ଜୋତା ମୁଣ୍ଡରେ ଛତା, ମୁଁ ଘରୁ ବାହାରିଲି । ମାରୁଆ ଡଙ୍ଗାଘରୁ ଡାଟ ଛକି ପ୍ରାୟ ଦୁଇ ମାଇଲ୍ ରାସ୍ତା ଅତିକ୍ରମକରି ତେଲେଙ୍ଗା ବଜାର ଧୂଆଁପତ୍ରିଆ ସାହି ଗଳିରେ ସେନାପତି ଭବନରେ ଉପସ୍ଥିତ ହୋଇ ଦେଖିଲି—ଗୁରୁଦେବ ମୋହିନୀ ମୋହନ ଜଟଡିଆ ଗରମରେ ଝାଳେଇ ନାଳେଇ ଗୋଟାଏ ଘରେ ଚଟାଣ ଉପରେ ଗଡ଼ୁଛନ୍ତି । ମୋତେ ଦେଖିବା ମାତ୍ରକେ ଅତି ମଧୁର ଭାଷାରେ କହିଲେ—"ଆସ ଆସ, ଏହି ଖରାବେଳେ ଏତେ ଦୂରରୁ ତୁମେ ଆସିଲ କିପରି" ? ମୁଁ ତାଙ୍କ ପାଖରେ ବସିଲି, ସେ ଗୋଟିଏ ତକିଆ ମୋ ଆଡ଼କୁ ଠେଲିଦେଲେ । ମୁଁ ଅତ୍ୟନ୍ତ ପରିଶ୍ରାନ୍ତ ହୋଇ ପଡିଥିଲି । ତେଣୁ ଜାମାଟା ଫିଟାଇ ତକିଆରେ ମୁଣ୍ଡଦେଇ ଥଣ୍ଡା ଚଟାଣ ଉପରେ ଗଡିଗଲି । ଆଃ କି ଆରାମ ! ଗୋଟାଏ ହାତ ପଙ୍ଖା ନେଇ ସେନାପତି ସାହେବ ନିଜକୁ ନିଜେ ବିଞ୍ଚୁଥିଲେ । ମତେ ବି ବିଞ୍ଚିବାକୁ ଆରମ୍ଭ କଲେ । ମୁଁ ତାଙ୍କ ହାତରୁ ପଙ୍ଖାଟା ନେଇ ବିଞ୍ଚିବାକୁ ଲାଗିଲି । ମନେ ହେଲା ମୁଁ ନିଜ ବାପ ପାଖରେ ଶୋଇଛି । ମୋ ପକ୍ଷରେ ଏହା ଗୁରୁ ଗୃହରେ ଉପବେଶନ ବା ଉପନୟନ ନୁହେଁ—ଉପଶୟନ ।

ଶୋଇ ଶୋଇ ଆମେ ଦୁହେଁ କଥା କହିବାକୁ ଲାଗିଲୁ । କିପରି ଭାବରେ କଥାଟା ଆରମ୍ଭ ହେଲା, ଆଜି ଆଉ ତାହା ମନେ ନାହିଁ । କିନ୍ତୁ, କଥାର ଭାବ ଧାରାଟା ବେଶ୍ ଭଲ ଭାବରେ ମନେ ଅଛି । ମୋହିନୀ ମୋହନ ଥିଲେ ନିପଟ ନାସ୍ତିକ । ମୁଁ ଥିଲି ପିଲାଦିନରୁ ଆସ୍ତିକ । ଗୁରୁ ଓ ଚେଲା ଭିତରେ ମନୋଭାବରେ ଯଥେଷ୍ଟ ପାର୍ଥକ୍ୟ ଥିଲା । ମୋହିନୀ ବାବୁ ମୋତେ ବୁଝାଇବାକୁ ଚେଷ୍ଟା କଲେ ଯେ, ଈଶ୍ୱର ବ୍ରହ୍ମ ବା ଆତ୍ମା ବୋଲି କିଛି ନାହିଁ । ଗୋଟାଏ ଜଡ଼ ଶକ୍ତିର କ୍ରମ ବିକାଶରୁହିଁ ଏହି ଜଗତ ଓ ଜୀବନର ଉତ୍ପତ୍ତି ହୋଇଛି । ଡାରଉଇନଙ୍କ କ୍ରମ ବିକାଶବାଦ (Theory of Evolution)ରେ ତାଙ୍କର ପୂର୍ଣ୍ଣ ବିଶ୍ୱାସଥିଲା । ସେ ମୋତେ ବୁଝାଇବାକୁ ଚେଷ୍ଟା କରୁଥିଲେଯେ ଜଡ଼ ବସ୍ତୁର ରସାୟନିକ ପ୍ରକ୍ରିୟାରେ ଅତି ଅଣୁବୀକ୍ଷଣିକ ଜୀବମାନେ ସୃଷ୍ଟି ହେଲେ ଓ ବଢ଼ି ବଢ଼ି ମଙ୍କଡ଼ି ବାନର ହେଲେ ଏବଂ ତହିଁରୁ ମଣିଷ ହେଲେ । ତେଣୁ ମାନବ ଚେତନା ଓ ଜୀବନ ଅଣୁ ପରମାଣୁର ରସାୟନିକ ପ୍ରକ୍ରିୟାରେ ଜାତ । ଏହି ଯୁକ୍ତି ବିରୁଦ୍ଧରେ ମୋର ଯୁକ୍ତି ଥିଲାଯେ ଯାହା ମୂଳରେ ନାହିଁ ତାହା ଅଗରେ ବି ନାହିଁ ଓ ନ ଥାଇ ପାରେ । କେଉଁଠୁ ଉଭା ହୋଇ ପାରେନା । (Nothing can come out of Nothing) ଏହି ଜଗତ ଭିତରେ ଯଦି ଚୈତନ୍ୟର ବୀଜ ନଥାନ୍ତା ତାହା ହେଲେ ଜଡ଼ଶକ୍ତିର କ୍ରମବିକାଶ ଦ୍ୱାରା ଚେତନାର ଉଦ୍ଭବ ହୁଅନ୍ତାନାହିଁ । ବୀଜ ଭିତରେ ଯେବେ ବୃକ୍ଷର ସମ୍ଭାବନା ନଥାନ୍ତା, ତେବେ ବୀଜରୁ କୌଣସି ବୃକ୍ଷର ଉତ୍ପତ୍ତି ହୋଇ ପାରନ୍ତା ନାହିଁ । (ନା ସତେ ବିଦ୍ୟତେ ଭାବଃ ନା ଭାବ ବିଦ୍ୟତି ସତଃ) । ଯାହା ନାହିଁ ତାହା କଦାପି ନାହିଁ । ଯାହା ଅଛି ତାହା ଚିରଦିନ ଅଛି । ତେଣୁ ମାନବ ଚେତନା ବା ଜୀବନ ଗୋଟାଏ ଜଡ଼ ପଦାର୍ଥ ନୁହେଁ । ଆଜି କାଲି ଅନେକ ବୈଜ୍ଞାନିକ ଏହିପରି କଥା କହୁଛନ୍ତି ।

All through the phisical world runs that unknown content which must surely be the staff of our conciousness (Eddingtion space, Time, Granitation) ସମଗ୍ର ଜଡ଼ ଜଗତ ଭିତର ଦେଇ ସେହି ଅଜ୍ଞାତ ଆଧେୟ ବହି ଯାଉଛି ଯାହା ସୁନିଶ୍ଚିତ ଭାବରେ ଆମର ଚେତନାର ମୂଳ ଉପାଦାନ'

ପାଠକେ ମନେ ରଖିବେ—ଗୁରୁ ଶିଷ୍ୟ ଦୁହେଁ ଶୋଇ ଶୋଇ ଯୁକ୍ତି କରୁଛନ୍ତି । ତୁଣ୍ଡରେ ଯୁକ୍ତି, ମୁଣ୍ଡରେ ଶକ୍ତି ଏବଂ ଛାତିରେ ଭକ୍ତି, ଗୁରୁ ଚେଲା ଦୁହେଁ ସମାନ ତାର୍କିକ । କେହି କାହାକୁ ହଟେଇ ପାରୁ ନାହାନ୍ତି । ମୋହିନୀବାବୁ ଈଶ୍ୱରଙ୍କୁ ଛାଡ଼ି ଧର୍ମକୁ ଆକ୍ରମଣ କଲେ—କହିଲେ "Religion has done more harm to humanity than good" (ଧର୍ମ ମନୁଷ୍ୟର ଉପକାର ଅପେକ୍ଷା ଅପକାର ବେଶୀ କରିଛି) । ଧର୍ମ ଗୋଟିଏ ଶ୍ରେଣୀର ମଣିଷର ସ୍ୱାର୍ଥ ସିଦ୍ଧିର ଉପାୟ ମାତ୍ର । ପୁରୋହିତ ମାନେ ସାଧାରଣ ଅଜ୍ଞମାନବକୁ ସ୍ୱର୍ଗର ଲୋଭ ଏବଂ ନରକର ଭୟ ଦେଖାଇ ଚିରଦିନ ଶୋଷଣ କରିଛନ୍ତି । ଧର୍ମର ନାଁରେ ପ୍ରଚୁର ଅଧର୍ମ ହୋଇଛି । ନର ରକ୍ତରେ ଧରା କର୍ଦ୍ଦମାକ୍ତ ହୋଇଛି । ମୋହିନୀ ମୋହନଙ୍କର ଏହି ଯୁକ୍ତିରେ ଯେ ଯଥେଷ୍ଟ ଶକ୍ତି ଥିଲା, ଇତିହାସର ପରିହାସ ଥିଲା, ଏ କଥା କେହି ଅସ୍ୱୀକାର କରି ପାରନ୍ତି ନାହିଁ । ଏହିପରି ମତାବଲମ୍ବୀ ଲୋକ ଆଜି ଏ ଜଗତରେ ସବୁ ଦେଶରେ ଅଛନ୍ତି । କିନ୍ତୁ ମୋର ଯୁକ୍ତିଟା ହେଲା ଯେ ଯେବେ ଧର୍ମ ମଣିଷର ହିତ ଅପେକ୍ଷା ବେଶୀ ଅହିତ କରିଥାଏ, ତେବେ ଏତେ ଦିନ ପର୍ଯ୍ୟନ୍ତ ତାହାକୁ ମଣିଷ ତାବୁଡ଼ିଧରି ରଖିଛନ୍ତି କାହିଁକି ? ଗତ ପାଞ୍ଚହଜାର ବର୍ଷ ଧରି ଧର୍ମ ଏ

ଜଗତରେ ସଭିଙ୍କୁ କଲା କିପରି ? ଧର୍ମରେ ଯଦି କିଛି
ନୋ ନ ଥାଏ, ତାହା ଯଦି ମଣିଷକୁ ଶୋଷଣ ଓ ପେଷଣ
ଠୋର ଯନ୍ତ୍ର ମାତ୍ର ହୁଏ, ତା ହେଲେ ମଣିଷ ତାକୁ
ଏତେଦିନ ସହିଲା କିପରି ? ମଣିଷ ଜାତିଟା କ'ଣ ଏତେ
ବୋକା, ଏତେ ବଡ଼ ଗୋଟାଏ ମିଥ୍ୟାକୁ ଚିର ଦିନ ସହି
ଆସିଛି ଓ ଆସୁଛି । ଜଗତରେ କେତେ ପ୍ରାଚୀନ ସଭ୍ୟତା
ଓ ସଂସ୍କୃତି ସମ୍ପୂର୍ଣ୍ଣ ଲୋପ ପାଇ ଯାଇଛି । ଧର୍ମ ଲୋପ
ପାଇନାହିଁ କାହିଁକି ? ଏହାର ଏକମାତ୍ର କାରଣ
ହେଉଛି ଧର୍ମରେ ସତ୍ୟ ଅଛି । ଈଶ୍ୱର ମିଥ୍ୟା ନୁହନ୍ତି ।
ଜଗତର ଶ୍ରେଷ୍ଠ ଧର୍ମାଚାର୍ଯ୍ୟମାନେ ଈଶ୍ୱର ଉପଲବ୍ଧି
କରିଥିଲେ ଏବଂ ସେମାନେ ସମସ୍ତେ କହିଛନ୍ତି ଯେ ଏହି
ପରିଦୃଶ୍ୟମାନ ଜଗତ ଭିତରେ ଏବଂ ବାହାରେ ଏକ
ମହାନ ଚୈତନ୍ୟମୟ ସତ୍ତା ଅଛି । ସ୍ୱାମୀ ବିବେକାନନ୍ଦ
ଥିଲେ ନାସ୍ତିକ । ସେ ରାମ କୃଷ୍ଣଙ୍କୁ ପଚାରି ଥିଲେ
"ଆପଣ ଈଶ୍ୱରଙ୍କୁ ଦେଖିଛନ୍ତି ?" ରାମକୃଷ୍ଣ କହିଲେ—
"ତୋତେ ଯେପରି ଦେଖୁଛି ତାହାଠାରୁ ଈଶ୍ୱରଙ୍କୁ
ଅନେକ ଭଲଭାବେ ଦେଖୁଛି । ତାଙ୍କ ସଙ୍ଗରେ କଥା
କହିଛି । ଘର କରିଛି ।" ବିବେକାନନ୍ଦଙ୍କର ମଧ୍ୟ ଏହିପରି
ଉପଲବ୍ଧି ଘଟିଥିଲା ଏବଂ ସେ କହିଛନ୍ତି ଯେ ମଣିଷ
ଉପଯୁକ୍ତ ସାଧନା କଲେ ନିଶ୍ଚୟ ଈଶ୍ୱରଙ୍କୁ ଉପଲବ୍ଧି
କରି ପାରିବ । ଜଗତର ପ୍ରତି ଦେଶରେ ଏବଂ ପ୍ରତି-
ଯୁଗରେ ଏହିପରି ସାଧକ ଓ ସିଦ୍ଧ ପୁରୁଷମାନେ ଜନ୍ମିଛନ୍ତି
ଏବଂ ସେମାନେ ଉପନିଷଦର ସୁରରେ ସୁର ମିଳାଇ
କହିଛନ୍ତି—"ବେଦାହମେତମ୍ ପୁରୁଷଂ ମହାନ୍ତଂ ଆଦିତ୍ୟ
ବର୍ଣ୍ଣଂ ତମସଂ ପରସ୍ତାତ ।" (ମୁଁ ସେହି ଆଦିତ୍ୟବର୍ଣ୍ଣ
ମହାନ ପୁରୁଷଙ୍କୁ ଜାଣିଛି, ଯେ ଅନ୍ଧାରର ପର ପାରରେ
ଅଛନ୍ତି) । ଯେବେ ଭଲ ଭାବରେ ବିଚାର କରାଯାଏ,
ତାହାହେଲେ ଦେଖାଯିବ ଯେ ସବୁ ଧର୍ମର ମୂଳ ସୂତ୍ର
ଏକା । ଗୀତା କହିଛି—"ଈଶ୍ୱର ସର୍ବ ଭୂତାନଂ ହୃଦେଶେ
ଅର୍ଜୁନ ତିଷ୍ଠତି," ବାଇବେଲ କହିଛି—"The
Kingdom of Heavens is within you"
(ଈଶ୍ୱରଙ୍କ ରାଜ୍ୟ ତୁମ ଭିତରେ ଅଛି) । ଏହିପରି ଭାବରେ
ମୁଁ ଯୁକ୍ତି କାଢ଼ି ଚାଲିଲି । ସେତେବେଳକୁ ଆମେ
ଦୁଇଜଣ ହଠି ବସିଛୁ । ଉଭୟ ପକ୍ଷରୁ ଗରମା ଗରମ
ଯୁକ୍ତିର ବାଣ ଫୁଟୁ ଥାଏ । ଏହା ଗୁରୁ ଶିଷ୍ୟ ସଂବାଦ
କିମ୍ବା ବିଷମ ବାଦ ତାହା ପାଠକେ ବିଚାର କରିବେ ।
ସେତେବେଳକୁ ପାଞ୍ଚଟା ବାଜି ଗଲାଣି । ହୁଏତ ଏହି
ତର୍କ ଆହୁରି ଘଣ୍ଟାଏ ଚାଲିଥାନ୍ତା, କାରଣ ନାସ୍ତିକ ଓ
ଆସ୍ତିକର ତର୍କ କେବେ ସରେ ନାହିଁ । ଏ ସରିବାର
ନୁହେଁ କିନ୍ତୁ, ଆମର ଗୁରୁ-ଚେଲାର ଯୁକ୍ତିରୁ ମୁକ୍ତି
ମିଳିଲା, ଏକ ଅଦ୍ଭୁତ ଭାବରେ । ହଠାତ୍ ଶ୍ରୀମତୀ
ହିରଣ ପ୍ରଭା ସେନାପତି (ମୋହିନୀ ବାବୁଙ୍କ ସ୍ତ୍ରୀ) ଘର
ଭିତରକୁ ପଶିଆସି ଆମ ଦୁଇଜଣଙ୍କର ଦୁଇହାତ, ଦୁଇ
ହାତରେ ଟାଣିଧରି ଉଠାଇଲେ, ମଧୁର କଣ୍ଠରେ କହିଲେ
—"ଥାଉ—ଯଥେଷ୍ଟ ତର୍କ ହୋଇଛି । ଖାଲି ଦାର୍ଶନିକ
ଯୁକ୍ତିରେ ପେଟ ପୁରେନା, ତାହା ପାଇଁ ଆଉକିଛି
ଦରକାର ।" ଏହା କହି ମାଉସୀ ହିରଣ ପ୍ରଭା ଆମ
ଦୁଇଜଣଙ୍କୁ ନେଇ ଖାଇବାଘର ଟେବୁଲ୍‌ରେ ବସାଇ
ଦେଲେ ଏବଂ ନିଜ ହାତରେ ପରଷିଲେ, ଲୁଚି, ତରକାରୀ
ଓ ଘରେ ତିଆରି ଉପାଦେୟ ପାନତୁଆ । ଯେଉଁ ପାଟିରୁ
ଏତେ ବାକ୍ୟ ସ୍ରୋତ ବାହାରୁଥିଲା ତାହା ଏକା ବେଳକେ
ବନ୍ଦ । ସେଦିନ ଗୋଟିଏ ମହାନ ଶିକ୍ଷା ଲଭିଥିଲି,
ଯାହାକି ଅଦ୍ୟାବଧି ଭୁଲି ନାହିଁ । ପାଟି ତୁଣ୍ଡ ବନ୍ଦ
କରିବାକୁ ହେଲେ, ପାଟି ତୁଣ୍ଡ ବନ୍ଦ କରିବାକୁ ପଡ଼ିବ ।
ପାଟି ଭିତରେ ବେଶ୍ ସୁସ୍ୱାଦୁ କେତେଗୁଡ଼ିଏ ପଦାର୍ଥ
ପୁରାଇ ଦେଲେ ସବୁ ପାଟି ତୁଣ୍ଡ ବନ୍ଦ ହୋଇଯିବ ।
ଖାଦ୍ୟର ଦର ବଢ଼ିଲେ ଦେଶ ବି ବିଦ୍ରୋହ
ଘୋଷଣା କରେ । ମନୁଷ୍ୟକୁ ଉଦାର କରିବାକୁ
ହେଲେ ତାର ଉଦରକୁ ବି ଶାନ୍ତ କରିବାକୁ
ପଡ଼ିବ । ଗୁରୁ ଦେଇଥିଲେ ଦର୍ଶନ । ଗୁରୁପତ୍ନୀ
ଦେଇଥିଲେ ଭୋଜନ । ଗୁରୁ ଶିଖେଇଥିଲେ ଯୁକ୍ତି,
ଗୁରୁମା ଶିଖେଇ ଥିଲେ ଭୁକ୍ତି ଓ ସେଥିରୁ ଭକ୍ତି । ଭକ୍ତି
ଓ ଯୁକ୍ତିର ସମନ୍ୱୟରେ ଗୋଟିଏ ଜାତିର ଜୀବନରେ ହୁଏ
ଶକ୍ତିର ଆବିର୍ଭାବ । ଜାତି କେବଳ ଶକ୍ତି ବଳରେ ଜୀବନ
ସଂଗ୍ରାମରେ ଜୟଲାଭ କରେ । ଯୁକ୍ତି ବିହୀନ ଭକ୍ତି ଓ
ଭକ୍ତି ବିହୀନ ଯୁକ୍ତି ଜାତିକୁ କରେ ଶକ୍ତିହୀନ । ୧୯୨୮
ମସିହାରେ ମୁଁ ବି, ଏ, ପାସ୍ କଲି । ସେନାପତି ଭବନରେ
ଯାଇ ମୁଁ ଶୁଣିଲିଯେ ମୁଁ ଦର୍ଶନରେ ଦ୍ୱିତୀୟ ପତ୍ରରେ
ଶହେରୁ ପଞ୍ଚାନବେ ନମ୍ବର ପାଇଛି ଓ ସେହି ପତ୍ରରେ
ପ୍ରଥମସ୍ଥାନ ଅଧିକାର କରିଅଛି । ସେହି ବିଷୟଟି ଥିଲା
ଦର୍ଶନ ଇତିହାସ (History of Philosophy)
ଏବଂ ତାହାର ପରୀକ୍ଷକ ଥିଲେ ସ୍ୱୟଂ ମୋହିନୀ ମୋହନ
ସେନାପତି । ମୁଁ ବିସ୍ମିତ, ପୁଲକିତ, ଶ୍ରଦ୍ଧାରେ ଅବନତ
ମସ୍ତକ, । ଆଜି ଅର୍ଦ୍ଧଶତାବ୍ଦୀ ପରେ ବି ସେହି ସ୍ମୃତି ଭାସି
ଆସୁଛି । ଅତୀତର କୁହୁଡ଼ିକୁ ଭେଦି । ଭାବୁଛି କି ଅଦ୍ଭୁତ
ଥିଲେ ସେହି ଲୋକଟି ? ଯାହାଙ୍କର ମତକୁ ମୁଁ କେବେ
ସମର୍ଥନ କରିନାହିଁ । ଯାହାଙ୍କର ମତକୁ ମୁଁ ବାରମ୍ବାର
ପ୍ରତିବାଦ କରିଛି—ସେହି ଅଧ୍ୟାପକ ହିଁ ମୋତେ ସର୍ବୋଚ୍ଚ
ନମ୍ବର ଦେଇଛନ୍ତି । ଆଜି ଆମ ଦେଶରେ କେତେଜଣ
ପରୀକ୍ଷକ ଏତେ ନିରପେକ୍ଷ, କେତେଜଣ ଅଧ୍ୟାପକ ଏତେ
ଉଦାର ଓ ପରମତସହିଷ୍ଣୁ ?

ମୋହିନୀ ବାବୁ ଅମୃତ ବଜାର ପତ୍ରିକାରେ ଗୋଟିଏ ପ୍ରବନ୍ଧ ଲେଖିଥିଲେ—Matriarchate in Assam and Travancore (ଅସାମ ଓ ତ୍ରିବାଙ୍କୁରରେ ମାତୃସତ୍ତର ଯୁଗ) । ଏହି ପ୍ରବନ୍ଧରେ ସେ ବୁଝାଇ ବାକୁ ଚାହିଁଥିଲେ ଯେ ପିତୃସତ୍ତର (Patriarchate State) ଯୁଗ ଆଗରେ ଥିଲା ମାତୃସତ୍ତର ଯୁଗ । ମାତାଥିଲେ ସଂସାରର ମୁରବି । ସବୁ ସମ୍ପତ୍ତି ଥିଲା ମାଙ୍କର । କେଉଁଠି ସ୍ୱାମୀଥିଲେ ସ୍ତ୍ରୀର ଅଧୀନ ଏବଂ ଗୋଟିଏ ସ୍ତ୍ରୀର ଏକାଧିକ ପତି ଥିଲେ । ତାହା ଫଳରେ ସମ୍ପତ୍ତି ବେଶୀ ବିଭକ୍ତ ହେଉ ନଥିଲା । ପୁନରାୟ ମନୁଷ୍ୟକୁ ମାତୃସତ୍ତର ଯୁଗକୁ ଫେରିଯିବାକୁ ପଡ଼ିବ । ତାହା ନହେଲେ ମାନବ ସମାଜର ମୁକ୍ତିନାହିଁ । ସେହି ପ୍ରବନ୍ଧ ପଢ଼ି ବାଂଲା ଏବଂ ଓଡ଼ିଶାର ବହୁଲୋକ ତୀବ୍ର ପ୍ରତିବାଦ କରିଥିଲେ । ସେଟାପ୍ରାୟ ୧୯୩୨-୩୪ ମସିହାର କଥା । ସେତେବେଳେ ସ୍ତ୍ରୀ ସ୍ୱାଧୀନତା ସ୍ୱପ୍ନଥିଲା । ସ୍ତ୍ରୀ ସ୍ୱାଧୀନତା ଏବଂ ପୁରୁଷ ସହିତ ନାରୀର ସବୁ ବିଷୟରେ ସମାନ ଅଧିକାରର ଚିନ୍ତା ନିତାନ୍ତ ଗର୍ହିତ ବୋଲି ମନେ ହେଉଥିଲା । କିନ୍ତୁ, ଗତ ୪୦ ବର୍ଷରେ ସମଗ୍ର ଜଗତର ସାମାଜିକ ରାଜନୈତିକ, ଅର୍ଥନୈତିକ ଜୀବନରେ ଯେ ବିପ୍ଳବ ପରିବର୍ତ୍ତନ ଘଟିଛି, ତାହା ମାନବ ଇତିହାସରେ ଆଉ କେବେ ଘଟି ନଥିଲା । ଆଜି ଇଉରୋପ, ଆମେରିକାରେ ନାରୀଜଗତ ପୂର୍ଣ୍ଣ ସ୍ୱାଧୀନତା ଅର୍ଜନ କରିଛନ୍ତି, ଏବଂ ଭାରତୀୟ ନାରୀ ମଧ୍ୟ ଆଜି ପୁରୁଷମାନଙ୍କ ସହିତ ସମାନ ଅଧିକାର ପାଉଛି, ସମାଜର ବହୁ କ୍ଷେତ୍ରରେ ପୁରୁଷମାନେଯେ ବହୁାଂଶରେ ନାରୀର ଶ୍ରେଷ୍ଠତା ସ୍ୱୀକାର କରିଛନ୍ତି । ତାହା କାହାରି ଅଜଣା ନୁହେଁ । ଆଜି ସମଗ୍ର ଇଉରୋପ ଓ ଆମେରିକାରେ ଅନୁମୋଦିତ ସମାଜର (Permissive Society) ସୃଷ୍ଟି ହୋଇଛି । ସେଠାରେ ନାରୀମାନଙ୍କର ଅବାଧ ସ୍ୱାଧୀନତା ଏବଂ ତାଙ୍କର ଯୌନ ଜୀବନରେ ମଧ୍ୟ ସ୍ୱାଧୀନତାର ଉପଯୁକ୍ତ ବ୍ୟବହାର ସେମାନେ କରୁଛନ୍ତି । ସମାଜ ମଧ୍ୟ ତାଙ୍କୁ ଅନୁମୋଦନ କରୁଛି । ଅବିବାହିତା ଜୀବନର ସଂଖ୍ୟା ଦିନକୁ ଦିନ ବଢ଼ି ଚାଲିଛି । ଗତ ବିଶ୍ୱଯୁଦ୍ଧ ସମଗ୍ର ଇଉରୋପୀୟ ସମାଜକୁ ଭାଙ୍ଗି ଚୂରମାର କରିଦେଇଛି । ଯେଉଁ ନୂଆ ସମାଜ ଗଢ଼ା ହୋଇଛି ସେଥିରେ ନାରୀ ପାଇଛି ପ୍ରଚୁର ସ୍ୱାଧୀନତା ଏବଂ ପୁରୁଷ ମଧ୍ୟ ସେହିପରି ସ୍ୱାଧୀନତାର ପକ୍ଷପାତୀ । ବିବାହିତ ଜୀବନକୁ ଅନେକେ ଗୋଟାଏ ବନ୍ଧନ ବୋଲି ମନେ କରୁଛନ୍ତି । ତାହା ଫଳରେ ବାରମ୍ବାର ବିବାହ ବିଚ୍ଛେଦ ହେଉଛି । ଆମ ଦେଶରେ ବି ଏହା ଘଟୁଛି । ପୁଅ ମାନଙ୍କ ସହିତ ଝିଅ ମାନଙ୍କର ପୈତୃକ ସମ୍ପତ୍ତିର ସମାନ ଅଧିକାର । ମାତୃସତ୍ତର ଯୁଗ ଆସିବାକୁ ଆଉ ଡେରି କେତେ ।

ମୋହିନୀମୋହନଙ୍କ ଦୂରଦୃଷ୍ଟିକୁ ଅଶେଷ ଧନ୍ୟବାଦ—ଯେଉଁ ଯୁଗରେ ଓଡ଼ିଆ ତଥା ହିନ୍ଦୁନାରୀ ଥିଲା ସମ୍ପୂର୍ଣ୍ଣ ପରାଧୀନ, ସେହି ଯୁଗରେହିଁ ମୋହିନୀମୋହନ ମାତୃସତ୍ତ ଯୁଗର ସ୍ୱପ୍ନ ଦେଖିଥିଲେ ଏବଂ ତାଙ୍କର ସ୍ୱପ୍ନ ଆଜି ଆଂଶିକ ସଫଳତା ଲାଭ କରିଅଛି । ମୋହିନୀମୋହନଙ୍କର ସ୍ୱପ୍ନଥିଲା, ଯୁକ୍ତିର ଶକ୍ତି, ଯୁକ୍ତିର ଭିତ୍ତିରେ ସେ ଜ୍ଞାନକୁ ତଉଲୁଥିଲେ । କିନ୍ତୁ ଏହି ଭକ୍ତି ବାଦର ଦେଶରେ ସେ ଧର୍ମକୁ ଭକ୍ତି କରୁନଥିଲେ । ଭକ୍ତି କରୁଥିଲେ ବିଜ୍ଞାନକୁ । ଚିର ଆଚରିତ ସାମାଜିକ ସଂସ୍କାରକୁ ସେ ନମସ୍କାର କରିବାକୁ ଆଦୌ ପ୍ରସ୍ତୁତ ନଥିଲେ । କହିବା ବାହୁଲ୍ୟ ଯେ ଏପରି ଲୋକ କଦାପି ଜନପ୍ରିୟ ହୋଇ ନପାରେ ଏବଂ ସେ ଶସ୍ତା ଜନପ୍ରିୟତା କୁ ଆଦୌ ପସନ୍ଦ କରୁନଥିଲେ ।

ମୋହିନୀ ସେନାପତିଙ୍କର ପ୍ରାକ୍ତନ ଛାତ୍ରମାନେ ତାଙ୍କର ନିର୍ଭିକତା ସମ୍ବନ୍ଧରେ ଅନେକ କଥା କହୁଥିଲେ । ତା ଭିତରୁ ଦୁଇଟି ଘଟନାର ଉଲ୍ଲେଖ କରାଗଲା ।

ସେ ଯୁଗରେ ଅଧିକାଂଶ ପାଠ୍ୟ ପୁସ୍ତକ ଇଂରେଜମାନଙ୍କର ଲିଖିତ ଥିଲା । କିନ୍ତୁ ମୋହିନୀ ବାବୁ କ୍ଲାସରେ ଛାତ୍ରମାନଙ୍କୁ ପଢ଼ାଉଥିଲେ । ଭାରତୀୟମାନଙ୍କର ଲିଖିତ ପୁସ୍ତକ କଲିକତାର ଜଣେ ଅଧ୍ୟାପକ ଫଣୀଭୂଷଣ ଚାଟାର୍ଜିଙ୍କ ବହି ସେ କ୍ଲାସରେ ପଢ଼ାଉଥିଲେ ।

ସେହି ସମୟରେ ପାଟନା କଲେଜର ଅଧ୍ୟକ୍ଷ 'ହର୍ଣ୍ଣ' ସାହେବ ପରିଦର୍ଶକ ରୂପରେ ରେଭେନ୍ସା କଲେଜକୁ ଆସିଥିଲେ । ରେଭେନ୍ସା କଲେଜର ଅଧ୍ୟକ୍ଷ ଥିଲେ ଷ୍ଟୁଆର୍ଟ ସାହେବ । ଦୁଇ ସାହେବ ଆସି ମୋହିନୀ ବାବୁଙ୍କ କ୍ଲାସରେ ଉପସ୍ଥିତ ହେଲେ । ସେମାନେ ଦେଖିଲେ ଯେ ଟେବୁଲ ଉପରେ ଯେଉଁ ବହି ଥୁଆହୋଇଛି ତାହା ଜଣେ ଭାରତୀୟର ଲେଖା ; ଏହା ଦେଖି 'ହର୍ଣ୍ଣ' ସାହେବ ପଚାରିଲେ ଯେ ଭାରତୀୟ ଲେଖା ବହି କାହିଁକି ପଢ଼ା ହେଉଛି? ତାହାତ ପାଠ୍ୟ ପୁସ୍ତକର ତାଲିକାଭୁକ୍ତ ନୁହେଁ । ଉତ୍ତରରେ ସେନାପତି ସାହେବ କହିଲେ ଯେ ଭାରତୀୟ ଛାତ୍ରମାନଙ୍କ ପାଇଁ ଭାରତୀୟ ଲେଖାହିଁ ପ୍ରଶସ୍ତ—କାରଣ, ଭାରତୀୟ ଛାତ୍ରମାନେ ତାହା ସହଜରେ ବୁଝିପାରିବେ ଏବଂ ସେ କେଉଁ ବହି ପଢ଼ାଇବେ ତାହା ତାଙ୍କୁ ଭଲ ଭାବରେ ଜଣା, ସେ ବିଷୟରେ ଅନ୍ୟକାହାରି ମତକୁ ସେ ସମର୍ଥନ କରନ୍ତି ନାହିଁ । ସାହେବ ଦୁହେଁ ତତ୍‌କ୍ଷଣାତ ବେଗେ ପ୍ରସ୍ଥାନ କଲେ ।

ମହାଯୁଦ୍ଧ ବେଳେ ରେଭେନ୍ସା କଲେଜରେ ପ୍ରତି ସପ୍ତାହରେ ଗୋଟିଏ ସମର ଭାଷଣ (War Lecture) ହେଉଥିଲା । ପ୍ରତି ଅଧ୍ୟାପକ ଦିନେ ଯୁଦ୍ଧ ବିଷୟରେ ବକ୍ତୃତା ଦେଉଥିଲେ । ପ୍ରତ୍ୟେକ ଇଂରେଜର ସ୍ତୁତିଗାନ କରୁଥିଲେ । ଇଂରେଜ ଶାସନର ସୁଫଳ କ'ଣ, ଇଂରେଜ ଅଧୀନ ଫଳରେ ଭାରତର କିଭଳି ଉନ୍ନତି ହୋଇଛି-ଇତ୍ୟାଦି ପ୍ରତ୍ୟେକ କହୁଥିଲେ ଇଂରେଜ ଯୁଦ୍ଧ ଜିତିଲେହିଁ ଭାରତର ମଙ୍ଗଳ । ଜର୍ମାନ ଜିତିଲେ ଭାରତର ପ୍ରଚଣ୍ଡ କ୍ଷତି ହେବ । ଏହାଥିଲା ପ୍ରତି ବକ୍ତୃତାର ସାରକଥା ।

ମୋହିନୀମୋହନ ତାଙ୍କ ବକ୍ତୃତାରେ କହିଲେ ଯେ ଯୁଦ୍ଧର ଯେଉଁ ଫଳ ହେଉନା କାହିଁକି ଭାରତ ପକ୍ଷରେ ମୂଲ୍ୟହୀନ । ଭାରତ ପରାଧୀନ । ସୁତରାଂ ଇଂରେଜ ଜିତିଲେବି ପରାଧୀନ ରହିବ ଏବଂ ଜର୍ମାନ ଜିତିକରି ଭାରତ ଦଖଲ କଲେ ଭାରତ ଯାହା ତାହାହିଁ ରହିବ ।

ଅଧ୍ୟକ୍ଷ 'ଲାମ୍ବାର୍ଟ' ଏବଂ ଅଧ୍ୟକ୍ଷ 'ହୁଇଟଲକ' ସାହେବଙ୍କ ମୁହଁ ଲାଲ ପଡ଼ିଗଲା । ତାହା ଫଳରେ ମୋହିନୀମୋହନଙ୍କ ପଦୋନ୍ନତିରେ ଯଥେଷ୍ଟ ଡେରି ହୋଇଗଲା । ଆଜି ଆମ ଦେଶରେ ଏପରି ନିର୍ଭୀକ ସ୍ପଷ୍ଟ ବକ୍ତା ଅଧ୍ୟାପକ କେଇଜଣ ଅଛନ୍ତି ? ଆଜି ସେହି ସ୍ପଷ୍ଟବକ୍ତା ସ୍ୱାଧୀନଚେତା ସତ୍ୟସନ୍ଧ ଅଧ୍ୟାପକ ମୋହିନୀମୋହନଙ୍କ ସ୍ମୃତି ତର୍ପଣ କରି ଗୁରୁଙ୍କ ଋଣ ଅତି ସାମାନ୍ୟ ପରିମାଣରେ ପରିଶୋଧ କଲି ।

ଭୁବନେଶ୍ୱର

# ସିନେମା ଗୃହ ନିର୍ମାଣ ନିମନ୍ତେ ଆର୍ଥିକ ସାହାଯ୍ୟ

ଓଡ଼ିଶାରେ ଚଳଚ୍ଚିତ୍ର ଉତ୍ପାଦନ କାର୍ଯ୍ୟକୁ ଉତ୍ସାହିତ କରିବା ଦିଗରେ ରାଜ୍ୟ ସରକାର ଗତ କେତେ ସପ୍ତାହ ଧରି ଜୋର ଭାବରେ ଚିନ୍ତା କରୁଥିଲେ । ଯଦିଓ ଅଳ୍ପ କେତେ କାଳ ହେଲା ପ୍ରତିଷ୍ଠିତ ହୋଇଥିବା ଫିଲ୍ମ ଡେଭେଲପମେଣ୍ଟ କର୍ପୋରେସନ ଓଡ଼ିଆ ଚଳଚ୍ଚିତ୍ର ଉତ୍ପାଦନକୁ ଉତ୍ସାହିତ କରିବ, ତଥାପି କେବଳ ଏତିକିରେ ଓଡ଼ିଆ ଚଳଚ୍ଚିତ୍ର ଶିଳ୍ପ ଆଶାନୁରୂପ ଭାବେ ପ୍ରୋତ୍ସାହିତ ବା ଲାଭବାନ ହୋଇ ପାରିବେ ନାହିଁ ବୋଲି ଅନୁଭବ କରାଯାଉଛି । ରାଜ୍ୟରେ ଯଥେଷ୍ଟ ସଂଖ୍ୟକ ସିନେମା ଗୃହ ରହିବା ହେଉଛି ବର୍ତ୍ତମାନର ଆବଶ୍ୟକତା ।

ରାଜ୍ୟର ଚଳଚ୍ଚିତ୍ର ଶିଳ୍ପର ବିକାଶ ନିମନ୍ତେ ପ୍ରୋତ୍ସାହନ ଦେବା ଉଦ୍ଦେଶ୍ୟରେ ରାଜ୍ୟ ସରକାର ସ୍ଥିର କରିଛନ୍ତି ଯେ ତା ୧ । ୧ । ୧୯୭୭ ଠାରୁ ନୂଆ କରି ଖୋଲାଯାଉଥିବା ସିନେମା ଗୃହଗୁଡ଼ିକୁ ୫ ବର୍ଷ ପାଇଁ ପ୍ରମୋଦକରରୁ ଅବ୍ୟାହତି ଦିଆଯିବ ।

ଏତଦ୍‌ବ୍ୟତୀତ ବହୁ ସଂଖ୍ୟକ ସିନେମା ଗୃହ ବସାଇବା ପାଇଁ ସହଜ ଓ ସୁବିଧାଜନକ ସର୍ତ୍ତରେ ଋଣ ଯୋଗାଇ କରି ଆବଶ୍ୟକ ଆର୍ଥିକ ସାହାଯ୍ୟ ଦେବା ନିମନ୍ତେ ଓଡ଼ିଶା ରାଜ୍ୟ ଅର୍ଥ କର୍ପୋରେସନ ସମେତ ଅନ୍ୟାନ୍ୟ ଅର୍ଥ ଲଗାଣକାରୀ ସଂସ୍ଥାମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ଆଶା କରାଯାଏ ଯେ ସିନେମା ଗୃହ ବସାଇବାକୁ ଇଚ୍ଛୁକ ବ୍ୟକ୍ତିମାନେ ଏହି ସୁଯୋଗର ଫାଇଦା ଉଠାଇବେ ଏବଂ ରାଜ୍ୟର ଉପଯୁକ୍ତ ସହର ଓ ଗ୍ରାମାଞ୍ଚଳରେ ସିନେମା ଗୃହ ବସାଇବେ । ସ୍ୱାୟତ୍ତ ସଂସ୍ଥା ଓ ଜିଲ୍ଲା କର୍ତ୍ତୃପକ୍ଷମାନେ ସିନେମା ଗୃହ ବସାଇବାକୁ ଇଚ୍ଛୁକ ଥିବା ବ୍ୟକ୍ତିମାନଙ୍କୁ ଆବଶ୍ୟକୀୟ ସାହାଯ୍ୟ ଦେବାପାଇଁ ନିର୍ଦ୍ଦେଶ ଦିଆଯାଇଛି ।

ଫିଲ୍ମ ଡେଭେଲପମେଣ୍ଟ କର୍ପୋରେସନ ସହରାଞ୍ଚଳ ଓ ଗ୍ରାମାଞ୍ଚଳରେ ସିନେମା ଗୃହଗୁଡ଼ିକ ଯେପରି ଶସ୍ତାରେ ହୋଇପାରିବ ତଥା ଦର୍ଶକମାନଙ୍କ ପାଇଁ ସୁବିଧାଜନକ ଓ ଆରାମପ୍ରଦ ହେବ, ସେଇ ଲକ୍ଷ୍ୟରେ ଗୋଟିଏ ଷ୍ଟାଣ୍ଡାର୍ଡ ନକ୍ସା ପ୍ରସ୍ତୁତ କରୁଛନ୍ତି ।

ଆପଣ ଓଡ଼ିଆ—ଓଡ଼ିଶାର ଅଧିବାସୀ । ଓଡ଼ିଶା ମାଟିର କ୍ଷୀର ଖାଇ ଆପଣ ବଢ଼ିଛନ୍ତି । ମାତ୍ର ଦେଖିଛନ୍ତି କି ମାଆର ସମଗ୍ରରୂପ କିପରି ? ତୁଙ୍ଗଶିଖରୀ ଚୂଳ, କୁନ୍ତଳାନନ ମାଳ ଉତ୍କଳମାତାର ସମଗ୍ର ରୂପକୁ ଯଦି ଆପଣ ପ୍ରତ୍ୟକ୍ଷ ନକରିଥାନ୍ତି ତେବେ ଆପଣ ଉତ୍କଳୀୟ ନିଶ୍ଚୟ । ମାତୃଭୂମିକୁ ସମୁଦାୟ ନଦେଖିବା ଯାହା ମାଆର କୋଳରେ ବସି ମାଆକୁ ଭଲରେ ନଦେଖିବା ସେହିଆ । ଆପଣ କହିବେ, କେଉଁ ଦେଖିଛନ୍ତି ହୁଏତ ମାତ୍ର ଦେଖି ନାହାନ୍ତି ସମ୍ବଲପୁର କିମ୍ବା କଳାହାଣ୍ଡି । କିମ୍ବା ଆପଣ ଦେଖିଛନ୍ତି କିମ୍ବା ଆପଣଙ୍କ ଥାନାର ଚୌହଦୀ ଛାଡ଼ି ବୁଲିବେ ତାହାକୁ

ଆମର ପରିଚିତ ଅପରିଚିତ ନଦୀ ଆଉ ଜଙ୍ଗଲ ସବୁ ସେସବୁ ଅରଣ୍ୟ ଭିତରେ କେତେ ପ୍ରକାର ଜୀବଜନ୍ତୁ— ବାଘ, ଭାଲୁ, ହାତୀ, ହରିଣ, ଶଶା, ଚିତ୍ତା, ସାପ ଆଦି ପ୍ରତ୍ୟେକ ରକମର ଚଢ଼େଇ ସବୁ । ଏଇଥିପାଇଁ ତ ଆଜି ପଶ୍ଚିମ ଓଡ଼ିଶା ଭାରତ ଓ ଭାରତବାହାରର ବୈଦେଶିକ ପର୍ଯ୍ୟଟକମାନଙ୍କର ଦୃଷ୍ଟି ଆକର୍ଷଣ କରିଛି ହଜାର ହଜାର ପର୍ଯ୍ୟଟକ ପୁରୀ, କୋଣାର୍କ, ଭୁବନେଶ୍ୱର ଦେଖିସାରି ଛୁଟୁଛନ୍ତି ଦେଖିବାକୁ ମନ୍ଦୁରେଙ୍କର ... ଦାଣ୍ଡ, ସମ୍ବଲପୁରର ହୀରାକୁଦ, ନୃସିଂହନାଥ— ବଲାଙ୍ଗୀରର ହରିଶଙ୍କର—ବା ରାଣୀପୁର ଝରିଆଲ କଳାହାଣ୍ଡିର ଯୋଗୀମଠ ।

# ରମ୍ୟାଣି ବୀକ୍ଷ୍ୟ

## ପଶ୍ଚିମ ଓଡ଼ିଶା

ଶ୍ରୀ ରାମଚନ୍ଦ୍ର ମହାପାତ୍ର

ନାହାନ୍ତି । ଖୁବ୍ ବେଶୀହେଲେ ଆପଣ ରାଜଧାନୀ ଯାଉଥିବେ ସରକାରଙ୍କଠାରୁ କିଛି କାର୍ଯ୍ୟ ହାସଲ ପାଇଁ । କଟକ ଯାଉଥିବେ କିଛି ବେପାର ବଣିଜ ଉଦ୍ଦେଶ୍ୟରେ— ପୁରୀ ଯାଉଥିବେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ ଲାଗି । ଏତ ଠିକ୍ କଥା । ମାତ୍ର ଏତିକିରେ କ'ଣ ଆପଣ ଓଡ଼ିଶାକୁ ଦେଖି ଦେଲେ ? ଓଡ଼ିଶାକୁ ଜାଣିଗଲେ ? ଗଙ୍ଗା ଧୋଇଲା ଚିବୁକ ଯାହାର, କୃଷ୍ଣାବେଣୀ ତଳ— ସେହି ବିସ୍ତୃତ ଭୂମି ଓଡ଼ିଶାର ପୂର୍ବ-ପଶ୍ଚିମ, ଉତ୍ତର-ଦକ୍ଷିଣ ସବୁଆଡ଼ ବୁଲି ଦେଖନ୍ତୁ । ତା'ହେଲେ ଜାଣିବେ ଓଡ଼ିଶା କ'ଣ ଓ ଓଡ଼ିଶାରେ କ'ଣ ସବୁ ନିଧି ରହିଛି । ସୁନ୍ଦର କାରୁକାର୍ଯ୍ୟ ପୂର୍ଣ୍ଣ ମନ୍ଦିରମାନ ଖାଲି ଆମର ସମତଳ ଅଞ୍ଚଳରେ ନାହିଁ । ଓଡ଼ିଶାର ଅଧିକରୁ ବେଶୀ ପ୍ରାଚୀନ ମନ୍ଦିର ଓ ମଠମାନ ରହିଛି ଆମର ପଶ୍ଚିମ ଦିଗରେ । ଖାଲି ମନ୍ଦିର ମଠ ନୁହେଁ—କି ସୁନ୍ଦର ପାହାଡ଼ମାନ, କି ସୁନ୍ଦର ଛନ ଛନ ଘଞ୍ଚ ଅରଣ୍ୟମାନ—କି ସୁନ୍ଦର ପାର୍ବତ୍ୟ ଉପତ୍ୟକା ଭିତର ଦେଇ ବହି ଯାଉଥିବା

ସେମାନେ ଦେଖୁଛନ୍ତି—ଦେଖି କେତେ ଖୁସୀ ହୋଇ ଫେରୁଛନ୍ତି—ତାହାରେ ଯାଇ କହୁଛନ୍ତି ଓଡ଼ିଶାଠୁ ସୁନ୍ଦର ଦେଶ ଆଉ ନାହିଁ । ସେଠାରେ ପ୍ରକୃତି ଯେମିତି ସୁନ୍ଦର—ମଣିଷର କଳା ଆଉ ବିଜ୍ଞାଣୀପଣ ତା'ଠୁ ଚମତ୍କାର । ଅଥଚ ଏସବୁ ଶୁଣି ଆପଣ ଏଠି ବସିଛନ୍ତି ? ଆପଣ ଯେ ହୁଅନ୍ତୁ—ଯାହାପଛେ ଆପଣଙ୍କ ବୃତ୍ତି ହେଉ—ଆପଣ ଥରେ ଦୟାକରି ପଶ୍ଚିମ ଓଡ଼ିଶା ଆସନ୍ତୁ । ଆଜିଠାରୁ ଅଳ୍ପଅଳ୍ପ କରି ଭ୍ରମଣ ଉଦ୍ଦେଶ୍ୟରେ ପ୍ରତିଦିନ କିଛିକିଛି ପଇସା ସଞ୍ଚୟ କରନ୍ତୁ । ବର୍ଷକରେ ପରିବାରଧରି ଆସନ୍ତୁ ପଶ୍ଚିମ ଓଡ଼ିଶା । ଆପଣ ପଶ୍ଚିମ ଓଡ଼ିଶା ବୁଲି ଦେଖିସାରି ଫେରିବେ ଯେତେବେଳେ, ନିଶ୍ଚୟ କହିବେ ଯେ ଆପଣଙ୍କ ପଇସା ପାଣିରେ ପଡ଼ିନାହିଁ ।

ପ୍ରଥମେ ଆପଣ ଆସନ୍ତୁ ସମ୍ବଲପୁର କିମ୍ବା ବଲାଙ୍ଗୀର । କାରଣ, ଏ ଦୁଇଟି ସହରରେ ଆପଣମାନଙ୍କର



କୋରାପୁଟର ଧାଙ୍ଗଡ଼ା ନୃତ୍ୟ

ପର୍ଯ୍ୟଟକମାନଙ୍କ ଲାଗି ଆମ ସରକାର ଦୁଇଟି ପର୍ଯ୍ୟଟନ କେନ୍ଦ୍ର ଖୋଲିଛନ୍ତି । ଆପଣ ଯଦି ସମ୍ବଲପୁର ପ୍ରଥମେ ଆସନ୍ତି—ତେବେ ଜାଣି ରଖନ୍ତୁ, ଏହି ପ୍ରାଚୀନ ସୁନ୍ଦର ସହରଟିରେ ଆପଣଙ୍କ ରହିବା ଲାଗି ବହୁ ସୁନ୍ଦର ହୋଟେଲ ଏବଂ ଧର୍ମଶାଳା ମଧ୍ୟ ରହିଛି । ତା'ଛଡା ସରକାରଙ୍କ ତରଫରୁ ଏକ ବିରାଟ ମନୋରମ ଟୁରିଷ୍ଟ ବଙ୍ଗଳା ମଧ୍ୟ ଅଛି । ଯତ୍‌ସାମାନ୍ୟ ଦୈନିକ ଭଡା ଦେଇ ଆପଣ ସେଠାରେ ରହିପାରିବେ । ଶୀତଦିନ, ବର୍ଷାଦିନ, ଖରାକାଳରେ ବା ବସନ୍ତ ଋତୁରେ ସଞ୍ଜ ବା ସକାଳରେ ସମ୍ବଲପୁର ସହରଟି ପାହାଡ଼ ଉପରେ ଅବସ୍ଥିତ [illegible] ମାନଙ୍କରୁ ବା ଧର୍ମଶାଳା, ହୋଟେଲର ଝରକାମାନଙ୍କରୁ ଅପୂର୍ବ ସୁନ୍ଦର ଦେଖାଯାଏ । ସତେକି, ନଦୀ, ପାହାଡ଼, ନାଳ, ଟାଙ୍ଗର, ମୁଣ୍ଡିଆ ଓ ବୋଠାମାଳ ମିଶି ଖୋଳିଏ ମନମତାଣିଆ ନିସର୍ଗଛବି । ସମ୍ବଲପୁରଠାରୁ ମାତ୍ର ଦଶ କିଲୋମିଟର ଦୂରରେ ହିରାକୁଦ—ଦୀର୍ଘତମ ବନ୍ଧ । ଏ ଯୁଗର ବିଜ୍ଞାନ ଓ ସ୍ଥାପତ୍ୟ କଳାର ଏକ ଅନବଦ୍ୟ ଅବଦାନ । ଏଠି ଯୋଉ କୃତ୍ରିମ ହ୍ରଦଟି ଦେଖିବେ, ଏହା ଏସିଆ ମହାଦେଶର ସର୍ବବୃହତ ଅପ୍ରାକୃତିକ ହ୍ରଦ । ୩ କିଲୋମିଟର ଦୀର୍ଘ ହୀରାକୁଦ ବନ୍ଧକୁ ଟାଣିଧରିଥିବା ଦୁଇଟି ପାହାଡ଼ ଉପରେ ନିର୍ମିତ ଅତିସୁନ୍ଦର ୨ଟି ଗମ୍ବୁଜ—ଗାନ୍ଧୀ ମିନାର ଏବଂ ଜହର ମିନାର । ତା' ଉପରକୁ ଚଢ଼ି ଆପଣ ଦେଖିବେ ଦିଗ୍‌ବଳୟ ବ୍ୟାପି ସୁନୀଳ ଜଳରାଶି କଳକଲ୍ଲୋଳିତ ହୋଇ ଆପଣଙ୍କ ଦୃଷ୍ଟିକୁ ମନୋହିତ କରି ଦେଉଛି । ଅନ୍ୟପଟରେ ନୀଳଶ୍ୟାମଳ ବନାନୀ ଓ ଦେବବିଗ୍ରହ ପରି ପାହାଡ଼ମାନ ଦିଗନ୍ତ କୋଳରେ ଛିଡ଼ାହେବେ ଦଣ୍ଡାୟମାନ । ପ୍ରକୃତରେ ଏଦୃଶ୍ୟ ରାଧାନାଥଙ୍କ ଭାଷାରେ—'ବଚନ ବିଷୟ ନୁହଇଁ ଏ ଛବି

ହ୍ରଦ ସେ କେବଳ ପ୍ରାଣେ ଅନୁଭବି'',

ଗମ୍ବୁଜ ଉପରେ ଠିଆ ହୋଇ ଏହି ଶୋଭାଶୋଭ ଅପ୍ସରଭବନକୁ ଦେଖିଲେ ଆଉ ତଳକୁ ଓହ୍ଲାଇବାକୁ ମନ ଡାକିବ ନାହିଁ । ପ୍ରକୃତି ଉପାସକ ରାଧାନାଥ କହିନାହାନ୍ତି କି ?

ସୁନ୍ଦରେ ତୃପ୍ତିର ଅବସାଦ ନାହିଁ
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ?

ତାପରେ ଆପଣ ଯାଇ ପାରନ୍ତି ଖେଁଓିଲିମା ବୋଲି ଗୋଟିଏ ନିସର୍ଗ-ସୁନ୍ଦର ଜାଗାକୁ । ଏଠାରୁ ମାତ୍ର ୧୬ କିଲୋମିଟର ଦୂର । ପରିବାର ଓ ବନ୍ଧୁବାନ୍ଧବଙ୍କ ସହ ଏଠି ବଣଭୋଜି କରିବାଠାରୁ ଆନନ୍ଦ ଆଉକିଛି ନାହିଁ ।

ତା'ପରେ ଆପଣ ଯାଆନ୍ତୁ "ଉଷାକୋଠି" ଦେଖିବେ । ସମ୍ବଲପୁର ଠାରୁ ୪୫ କିଲୋମିଟର ଦୂର । ଆମର ସୁପ୍ରସିଦ୍ଧ ଅଭୟାରଣ୍ୟ (ଜିନ୍ଦଗି ଫରେଷ୍ଟ) ଏଇଠି । ଓଡ଼ିଶାର ସବୁ ପ୍ରକାର ଜନ୍ତୁଙ୍କୁ ଏଠାରେ ରଖା ଯାଇଛି । ଏଠି ଶୀକାର ମନା । ତେଣୁ ନିର୍ଭୟରେ ଏଠି ଜନ୍ତୁମାନେ ବୁଲୁଥିବେ । ଜାନୁଆରୀ ଠାରୁ ଜୁନ୍ ମାସ ଯାଏ ଅସଂଖ୍ୟ ଯାତ୍ରୀ ଏଠି ଭିଡ଼ କରନ୍ତି । ବଡ଼ବେମା ଠାରେ ଗୋଟିଏ ଫରେଷ୍ଟ ବଙ୍ଗଳା ଅଛି ପର୍ଯ୍ୟଟକମାନଙ୍କ ରାତ୍ରିଯାପନ ପାଇଁ । ଏହା ୬ ନମ୍ବର ଜାତୀୟ ରାଜପଥ ଉପରେ ପଡ଼େ ।

କିନ୍ତୁ ନୃସିଂହନାଥ ଆପଣ ଅବଶ୍ୟ ଦେଖିବେ । ଏଠି କେବଳ ଜଣେ ପାହାଡ଼ ନାହିଁ—ପ୍ରସିଦ୍ଧ ନୃସିଂହନାଥଙ୍କ ପ୍ରାଚୀନ ମନ୍ଦିର ମଧ୍ୟ ଅଛି । ଅସଂଖ୍ୟ ଭକ୍ତପ୍ରାଣ ଯାତ୍ରୀ ଏଠାକୁ ଦର୍ଶନ ଓ ପୂଜାର୍ପଣ କରିବାକୁ ଆସନ୍ତି । ପ୍ରାଚୀନ କାଳରେ ଏଠି ଥିଲା ଏକ ବିଖ୍ୟାତ ବିଶ୍ୱବିଦ୍ୟାଳୟ "ପରିମଳଗିରି" । ବହୁ ବର୍ଷ ତଳେ ଚୀନ ପରିବ୍ରାଜକ ହୁଏନ୍‌ସାଂ ଏଠାକୁ ଆସି ଏହାର ବହୁ ପ୍ରଶଂସା କରିଛନ୍ତି । ଏ ମନ୍ଦିର ପଞ୍ଚଦଶ ଶତାବ୍ଦୀରେ ନିର୍ମିତ ଓ ଏହାର ବିଗ୍ରହମୂର୍ତ୍ତି ବଡ଼ ବିଚିତ୍ର ସୁନ୍ଦର । କଥିତ ଅଛି—ନୃସିଂହ ରୂପୀ ବିଷ୍ଣୁ ମୂଷିକ-ଦୈତ୍ୟକୁ ବିନାଶ କରିବା ନିମିତ୍ତ ମାର୍ଜାର ରୂପ ଧାରଣ କରି ଏଠାରେ ଅବସ୍ଥାନ କରୁଛନ୍ତି । ଏ ମନ୍ଦିରର ନିର୍ମାଣ ଶୈଳୀ ଠିକ୍ କୋଣାର୍କ ପରବର୍ତ୍ତୀ ଯୁଗର ଓ ଏବେବି ଅକ୍ଷୁର୍ଣ୍ଣ ଅଛି । ଏଠି ଗୋଟିଏ ପାନ୍ଥଶାଳା ନିର୍ମାଣ କରାଯାଉଛି ଓଡ଼ିଶା ସରକାରଙ୍କ ପର୍ଯ୍ୟଟନ ବିଭାଗ ତରଫରୁ । ବର୍ତ୍ତମାନ କିନ୍ତୁ ଆପଣଙ୍କ ରହିବା ପାଇଁ ସେଠାରେ ପୂର୍ତ୍ତବିଭାଗ ଓ ପଞ୍ଚାୟତ ସମିତିର ଦୁଇଟି ବଙ୍ଗଳା ରହିଛି । ଆପଣ ଯଦି ଏଠାକୁ ଯାନ୍ତି ବୈଶାଖ ମାସ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଦିନ—ତା'ହେଲେ ଏଠାରେ ସହସ୍ର ସହସ୍ର ଯାତ୍ରୀଙ୍କ ସମାବେଶରେ ଗୋଟିଏ ଧାର୍ମିକ ମେଳାରେ ମଧ୍ୟ ଆପଣ ଅଂଶ ଗ୍ରହଣ କରିପାରିବେ ।

ଆପଣମାନଙ୍କ ସୁବିଧା ଲାଗି ପର୍ଯ୍ୟଟନ ବିଭାଗ ସମ୍ବଲପୁର ଠାରୁ ପ୍ରତି ରବିବାର ଦିନ ଗୋଟିଏ ମିନିବସ୍‌ରେ ଦକ୍ଷିଣାଞ୍ଚଳ ଭ୍ରମଣ ବ୍ୟବସ୍ଥା କରିଛି । ତେଣୁ ଆପଣ ଏଥିରେ ପରିକଳ୍ପିତ ଉଡ଼ା ଦେଇ ସହଜ ଓ ସୁବିଧାରେ ହୀରାକୁଦ ଓ ନୃସିଂହନାଥ ଦର୍ଶନ କରିପାରିବେ । ପ୍ରତି ସ୍ଥାନ ପାଇଁ ବର୍ତ୍ତମାନ ଲୋକ ପିଛା ଟ ୧୫ ଙ୍କା ମାତ୍ର ଭଡ଼ା ଦେବାକୁ ପଡ଼େ ।



ଆପଣ ପୂର୍ବରୁ ଟେଲିଫୋନ ବା ଟେଲିଗ୍ରାମ୍ ଦ୍ୱାରା ମଧ୍ୟ ସ୍ଥାନ ସଂରକ୍ଷଣ କରି ପାରନ୍ତି । ଅନ୍ୟ ଦିନମାନଙ୍କରେ ବି ଏହି ମିନିବସ୍‌କୁ ଭଡ଼ାରେ ଯୋଗାଇ ଦିଆଯାଏ ।

ତା'ପରେ ଆପଣ ଯଦି ବଲାଙ୍ଗୀର ଠାରୁ ଆପଣଙ୍କ ଯାତ୍ରା ଆରମ୍ଭ କରନ୍ତି ତେବେ ଆପଣ ପର୍ଯ୍ୟଟନ ବିଭାଗ ତରଫରୁ ମିନିବସ୍ ଓ ଅନ୍ୟାନ୍ୟ ବହୁ ସୁବିଧା ସୁଯୋଗ ପାଇ ପାରିବେ । ବଲାଙ୍ଗୀର ଠାରୁ ଆପଣ ଯିବେ ସୋନପୁର, ରାଣୀପୁର ଝରିଆଲ୍ ଓ ପ୍ରସିଦ୍ଧ



ହରିଶଙ୍କର । ନୃସିଂହନାଥର ବିପରୀତ ପାର୍ଶ୍ୱରେ ପୁରାଣ ପ୍ରସିଦ୍ଧ ସୁନୀଳ ବୃକ୍ଷ ଗୁଳ୍ମାଚ୍ଛାଦିତ ଗନ୍ଧମାର୍ଦ୍ଦନ ପର୍ବତ । ଅତି ଚିତ୍ତାକର୍ଷକ ଦୃଶ୍ୟ । ପଞ୍ଚଦଶ ଶତାବ୍ଦୀ

ଏକ ସାଧାରଣ ମନ୍ଦିର ଦେଖିବେ—ହରି ଓ ହରଙ୍କ ଯୁଗଳ ଉପାସନାର ମନ୍ଦିର । ତା' ପାଖରେ ବିସ୍ତୃତ ଏକ ଜଳପ୍ରପାତ । ଗନ୍ଧମାର୍ଦ୍ଦନ ପର୍ବତରୁ ଜଳକୁ ଏହି ଜଳ ହୋଇ ବହି ଆସୁଛି । ଏଠି ଖରାଦିନେ ସ୍ନାନ କରି ଯାତ୍ରୀମାନେ ଖୁବ୍ ଶୀତଳ ଓ ଶୁଚୀମନ୍ତ ବୋଧ କରନ୍ତି । ରାତିରେ ରହିବାକୁ ବଙ୍ଗଳା ଅଛି । ରାତିରେ ନିକଟସ୍ଥ ବଣ ପାହାଡ଼ରୁ ବାଘ, ହାତୀ, ଭାଲୁ ପ୍ରଭୃତିଙ୍କ ଶବ୍ଦ ଶୁଣି ପାରନ୍ତି । ବହୁ ଜଣା ଅଜଣା ଚଢ଼େଇଙ୍କ ମଧୁର କାକଳି ଆପଣଙ୍କ କାନକୁ ନିଶ୍ଚୟ ଝଙ୍କୃତ କରିବ ।

ତା'ପରେ ଆପଣ ଯାଇ ପାରନ୍ତି ରାଣୀପୁର ଝରିଆଲ । ବହୁ ପ୍ରାଚୀନ ଯୁଗର ଶାକ୍ତ ଓ ତନ୍ତ୍ରପୀଠ । ଏଠି ରହିଛି ବହୁ ପ୍ରତ୍ନତତ୍ତ୍ୱର ସମ୍ଭାର । ଏହାର ପ୍ରାକୃତିକ ପରିବେଶ, ବିଶେଷତଃ ଜହ୍ନରାତିରେ ଖୁବ୍ ସ୍ୱପ୍ନମୟ । ଏଠି ଆପଣ ଦେଖିବେ "ସୋମତୀର୍ଥ" ର ଅବଶେଷ । ଚଉଷଠୀଯୋଗ୍ନୀ ମୂର୍ତ୍ତି ଦେଖିଲେ ଆପଣଙ୍କ ମନ ସେହି ଅତୀତ ଯୁଗର ସାଧନାମୟି ପରିବେଶ ଭିତରକୁ ଉଡ଼ିଯିବ । କୁହାଯାଉଛି—ଏଠି ଶୈବ, ଶାକ୍ତ



(ହରିଶଙ୍କର ଜଳ ପ୍ରପାତ)

ଓ ବୈଷ୍ଣବ ତନ୍ତ୍ରବାଦର ମହା ମହା ସାଧକମାନେ ରହୁଥିଲେ । ଏକ ପ୍ରାଚୀନ ଇଷ୍ଟକ ନିର୍ମିତ ମନ୍ଦିର ଅଛି—ସୋମେଶ୍ୱର ମନ୍ଦିର । ଏହ ପୀଠର ନିରାଞ୍ଜନ ନୀରବତା ଆପଣଙ୍କ ମନକୁ ଏକ ଅପୂର୍ବ ଶାନ୍ତିରେ ଭରିଦେବ ।

ସେ ଯୁଗର ସୁବର୍ଣ୍ଣପୁର ହୁଏତ ଆଉ ନାହିଁ । ମାତ୍ର ତାର ଅଲିଭା ସ୍ମୃତି ନେଇ ମୂକ ସାକ୍ଷୀରୂପେ ଠିଆ ହୋଇଛି ଆଜିର ସୋନପୁର । ପାଖେ ପାଖେ ବାଲୁକା ଓ ଖଣ୍ଡ ପାହାଡ଼ମାନଙ୍କୁ ବକ୍ଷରେ ଧାରଣ



କରି ଉଚ୍ଛଳ ଭଗିରଥୀ ମହାନଦୀ ବହି ଯାଉଛି । ଏହି ସୋନପୁର ଥିଲା ଦିନେ କୋଶଳଗୁପ୍ତ ରାଜା-ମାନଙ୍କର ଏକ ଧନଧାନ୍ୟପୂର୍ଣ୍ଣ ମନୋରମ ରାଜଧାନୀ । ଦଶମ ଶତାବ୍ଦୀରେ ନିର୍ମିତ ବହୁ କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିରର ଭଗ୍ନାବଶେଷ ଏଠି ଦେଖିବାକୁ ମିଳେ । ସପ୍ତଦଶ ଶତାବ୍ଦୀରେ ନିର୍ମିତ କେତେ ସୁଦୃଶ୍ୟ ମନ୍ଦିର ଯଥା—ଖମ୍ବେଶ୍ୱରୀ, ସୁବର୍ଣ୍ଣମେରୁ, ରମେଶ୍ୱର ଓ ପଞ୍ଚଦେବାଳୟ ଇତ୍ୟାଦି ଏବେ ବି ଦର୍ଶକମାନଙ୍କୁ ଆକୃଷ୍ଟ କରିଥାଏ । ସୋନପୁରକୁ "ପଶ୍ଚିମ ଲଙ୍କା" ବୋଲି କୁହାଯାଏ । ଏବେ ବି ମହାନଦୀ ଶଯ୍ୟାରେ ଥିବା ଏକ ପ୍ରସ୍ତରକୁ "ଲଙ୍କେଶ୍ୱରୀ" ଆଖ୍ୟା ଦିଆ ଯାଉଛି ।

ସୋନପୁର ଠାରୁ ୧୨ କି:ମିଟର ଦୂରରେ ବୈଦ୍ୟ-ନାଥର ପ୍ରସିଦ୍ଧ କୋଶଳେଶ୍ୱରଙ୍କ ମନ୍ଦିର । ଏହାର ନିର୍ମାଣକାଳ ନବମ କିମ୍ବା ଦଶମ ଶତାବ୍ଦୀ ହୋଇ ପାରେ । ଏହାର ଯେ ଜଗମୋହନ ରହିଛି, ତାହା ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ମୂର୍ତ୍ତି ନିର୍ମାଣ ଶୈଳୀର ବିକାଶରେ ବିଶେଷ ସାହାଯ୍ୟ କରିଛି ବୋଲି ତତ୍ତ୍ୱବିତ୍‌ମାନଙ୍କ ମତ । ସେ ଯୁଗରେ ଭୁବନେଶ୍ୱର

ପରି ସୋନପୁରରେ ମଧ୍ୟ ବହୁ ଦିଗରେ ବହୁ ପ୍ରତିଷ୍ଠା ଥିଲା ।

ପ୍ରକୃତରେ ପର୍ଯ୍ୟଟନ ଓଡ଼ିଶା ଅତି ବହୁ ବିଶିଷ୍ଟ ଲୋକଙ୍କ ଦୃଷ୍ଟି ଆକର୍ଷଣ କରିଛି । ଓଡ଼ିଆ-ସଂସ୍କୃତିର ପ୍ରାଚୀନତା ଆଜି ଏହି ସବୁ ଅଞ୍ଚଳରେ ଜୀବନ୍ତ ହୋଇ ରହିଛି । ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରିବା ସଙ୍ଗେ ସଙ୍ଗେ ଆପଣ ବିଭିନ୍ନ ଋତୁରେ ବିଭିନ୍ନ ଲୋକଯାତ୍ରା ବା ପର୍ବ ସଙ୍ଗେ ମଧ୍ୟ ପରିଚିତ ହେବେ । ସମ୍ବଲପୁରୀ ନୃତ୍ୟଗୀତ, ଡାଲଖାଇ, ରସରକେଲି, ଢର୍ମାନୃତ୍ୟ, ଦଣ୍ଡନୃତ୍ୟ ଆଦି ବହୁ ହୃଦୟସ୍ପର୍ଶୀ ସାଂସ୍କୃତିକ ବ୍ୟାପାର ସଙ୍ଗେ ମଧ୍ୟ ଆପଣ ପରିଚିତ ହେବେ । ଏସବୁ ଅଞ୍ଚଳର ଆଦିବାସୀମାନଙ୍କ ସରଳ ଜୀବନ ନିଶ୍ଚୟ ଆପଣଙ୍କୁ ଆକୃଷ୍ଟ କରିବ । ଓଡ଼ିଆ ସଂସ୍କୃତି ବା ଓଡ଼ିଆ ଭାଷାକୁ କେବଳ ଉପକୂଳବର୍ତ୍ତୀ ଅଞ୍ଚଳରେ ଖୋଜିଲେ ତାର ସମଗ୍ର ରୂପ ଧରାପଡ଼ିବ ନାହିଁ । ଆଦିବାସୀ ସଂସ୍କୃତି ଓ ଜୀବନଧାରା ସଙ୍ଗେ ଆପଣ ପରିଚିତ ହୁଅନ୍ତୁ ଓ ଜାତୀୟ ସଂସ୍କୃତିର ସାମଗ୍ରିକ ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟକୁ ଉପଭୋଗ କରନ୍ତୁ । ତାହେଲେ ବୁଝିବେ ଓଡ଼ିଆ ଜାତି କେତେ ମହାନ୍—ଓଡ଼ିଶା ମାତାର ନିସର୍ଗ ସୌନ୍ଦର୍ଯ୍ୟ କେତେ ମନମୁଗ୍ଧକର । ବନ୍ଧୁ ! ଖୁବ୍ ନିକଟରେ ପଶ୍ଚିମ ଓଡ଼ିଶା ଭ୍ରମଣରେ ଆସନ୍ତୁ । ପର୍ଯ୍ୟଟନ ବିଭାଗ ତରଫରୁ ଆମେ ଆପଣଙ୍କୁ ସାହାଯ୍ୟ କରିବାକୁ ସର୍ବଦା ପ୍ରସ୍ତୁତ ଅଛୁ ।

ଅସିଷ୍ଟାଣ୍ଟ ଡିରେକ୍ଟର,
ଟୁରିଜିମ୍, ଭୁବନେଶ୍ୱର

---

## ଟାଙ୍ଗୀ-ଚୌଦ୍ୱାର ଅଞ୍ଚଳର ଭୂମିହୀନ ବ୍ୟକ୍ତିଙ୍କୁ ଚାଷ ଜମିର ପଟ୍ଟା ବଣ୍ଟନ

ଟାଙ୍ଗି-ଚୌଦ୍ୱାର ବ୍ଲକ ଅନ୍ତର୍ଗତ ବ୍ରହ୍ମପୁରଠାରେ ଗତକାଲି ଶିଳ୍ପ ଓ ବାଣିଜ୍ୟ ମନ୍ତ୍ରୀ ଶ୍ରୀ କାହ୍ନୁଚରଣ ଲେଙ୍କା ୫୦ ଜଣ ଭୂମିହୀନ ଲୋକଙ୍କୁ ଜଣପିଛା ୨ ଏକର ହିସାବରେ ମୋଟ୍ ୧୦୦ ଏକର ଚାଷ ଜମିର ପଟ୍ଟା ବଣ୍ଟନ କରିଥିଲେ । କ୍ଷୁଦ୍ର ଚାଷୀମାନଙ୍କ ପାଇଁ ଦିଆଯାଉଥିବା ସରକାରୀ ସାହାଯ୍ୟର ପୂର୍ଣ୍ଣ ବିନିଯୋଗ କରି ଏକାଧିକ ଫସଲ ଉତ୍ପାଦନ ଦ୍ୱାରା ନିଜର ଆର୍ଥିକ ସ୍ଥିତି ଦୃଢ଼ କରିବାକୁ ଶ୍ରୀ ଲେଙ୍କା ଏହି ଚାଷୀମାନଙ୍କୁ ପରାମର୍ଶ ଦେଇଥିଲେ । ଏହାଛଡ଼ା ୩୨ ଜଣ ଅସମର୍ଥ ବ୍ୟକ୍ତିଙ୍କୁ ଶ୍ରୀ ଲେଙ୍କା ବାର୍ଦ୍ଧକ୍ୟ ଭତ୍ତା ପ୍ରଦାନ କରିଥିଲେ ।

ଏହି ଅଞ୍ଚଳର ପ୍ରାୟ ୧୦୦ ଜଣ ବ୍ୟକ୍ତିଙ୍କୁ ଗୃହପାଳିତ ପଶୁ ଖରିଦ୍ କରିବା ପାଇଁ ଓ ଗ୍ରାମାଞ୍ଚଳରେ ଦୋକାନ ପ୍ରତିଷ୍ଠା ପାଇଁ ସେଣ୍ଟ୍ରାଲ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ ତରଫରୁ ୫୦,୦୦୦ ଟଙ୍କା ଋଣ ମଞ୍ଜୁର କରାଯାଇଛି । ଏହି ବ୍ୟାଙ୍କର ରିଜିଓନାଲ ମ୍ୟାନେଜର ଶ୍ରୀ ଏମ୍. ଏଲ୍. ଦତ୍ତାଙ୍କ ଉପସ୍ଥିତିରେ ଶିଳ୍ପ ମନ୍ତ୍ରୀ ଶ୍ରୀ ଲେଙ୍କା ଏହି ଋଣର ପ୍ରଥମ କିସ୍ତି ଟଙ୍କା ଲୋକମାନଙ୍କୁ ଦେଇଥିଲେ ।

ଏହାପରେ କଟରପୁର ନିକଟସ୍ଥ ତାଳଦଣ୍ଡା କେନାଲ ଉପରେ ଏକ ପୋଲ ନିର୍ମାଣ ପାଇଁ ଶ୍ରୀ ଲେଙ୍କା ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ । ପ୍ରଧାନ ରାସ୍ତା କଡ଼ରେ ଯାଇଥିବା ଏହି କେନାଲର ଅପର ପାର୍ଶ୍ୱରେ ରହିଥିବା ଅନେକଗୁଡ଼ିଏ ଗ୍ରାମର ବାସିନ୍ଦାମାନଙ୍କ ଯାତାୟତରେ ଅନ୍ତରାୟ ସୃଷ୍ଟି କରୁଥିବା ଏହି କେନାଲ ଉପରେ ଏକ ପୋଲ ନିର୍ମାଣ ପାଇଁ ସ୍ଥାନୀୟ ବାସିନ୍ଦାମାନେ ବହୁ ଦିନରୁ ଦାବୀ କରି ଆସୁଥିଲେ ।

# ତୁମ ଦର୍ଶନେ ଯାତ୍ରୀ ଲୋକେ

ଶ୍ରୀ ନେତ୍ରାନନ୍ଦ ସାମନ୍ତରାୟ,

କିଏ ସେହି ଯୋଗୀ ଶିଳ୍ପୀ କବି ଦାର୍ଶନିକ
କେଉଁ ପାଣି ପବନରୁ କ୍ଷୋ ତ ର ଜନ୍ମର ଛାତକ
କୋଣାର୍କରେ ଫୁଙ୍କିଗଲା କେଉଁ ମନ୍ତ୍ର
ମୂକ ଯହିଁ ଗାଇଯାଏ ଅତୀତର ଗୌରବ ଗାଥା....

କାହିଁ ସେ ବୀର ପୁଙ୍ଗବ ! କାହିଁ ଗଲେ ସେ ମହାମାନବ
ଶୋଣିତକୁ ପାଣି କରି ଅମ ହାତେ ଦେଲେ ଯିଏ ଦଶର ଗୌରବ
ଅବିଳମ୍ବେ ଯାଅ ଯାଅ ଅନ୍ୱେଷଣ କର ତାଙ୍କ ସତ୍ତା,

ପଥରରେ ଖୋଳିଗଲେ କେଉଁ ପ୍ରେମ-ମୈତ୍ରୀ ଆଉ ଜୀବନର କାବ୍ୟ
କର୍ପୂର ଗଲେ କି' ଉଡ଼ି ଛିଣ୍ଡା ସେହି କନାତଳେ
ଯୁଗ ଯୁଗ ବିଶ୍ୱ ଯହିଁ ନମ୍ରଭାବେ ନୁଆଁଇଛି ମଥା !!

ଏକି ପୂଜ୍ୟ ନୀଳାଚଳ—ଶ୍ରୀକ୍ଷେତ୍ର ସେ' ପୁଣ୍ୟସ୍ଥଳ
ଆତ୍ମା ମେଲି ଶ୍ରୀମନ୍ଦିରେ ବିଜେ ଯହିଁ ସ୍ୱୟଂ ଜଗନ୍ନାଥ....

ସୃଷ୍ଟିର ସର୍ଜନା କାଳେ କି ପାପ କି ପୁଣ୍ୟ କଲେ
କୁଣ୍ଠିତ ଢଙ୍ଗରେ ରଙ୍ଗି ବାଛି ନେଲେ ଏଥା ଗୋଡ଼ହାତ,

କିଏ ସେହି ବିଶ୍ୱକର୍ମା ଗଢ଼ିଥିଲା ଏ ମନ୍ଦିର
ସମଗ୍ର ଏ ସୃଷ୍ଟି ଯହିଁ ଏକାନ୍ତ ଓ ଏକ ପରିବାର
ସର୍ବଧର୍ମ-ସମନ୍ୱୟ ଏକମାତ୍ର ଯାହାର ସଙ୍ଗୀତ....

କେଉଁ ପୁଣ୍ୟଭୂମି ଇଏ ବିଶ୍ୱେ ଯା'ର ଏତିକି ମହତ !!
ଚଣ୍ଡାଶୋକେ ଧର୍ମାଶୋକ କିଏ କାହିଁ କରିଛି କହତ ??

ଏଇ କି ସେ ଭୁବନେଶ୍ୱର—
ମନ୍ଦିରରେ ପୂର୍ଣ୍ଣ ଯା'ର ଓଡ଼ିଶା-ନଗର ପ୍ରାନ୍ତର

ତେତ୍ରିଶ କୋଟି ଦେବତା ବରିନେଲେ ଯେଉଁ ପୀଠ
କରିବାକୁ ରଙ୍ଗଭୂମି କାନନ ବିହାର....

ଏଇ ସେହି ପୁଣ୍ୟ ତୀର୍ଥ ?
—ସୂକ୍ଷ୍ମକଳା ଭାସ୍କର୍ଯ୍ୟର କୋଟି ଗର୍ଭାଘର....

ଏଠି କି ଖୋର୍ଦ୍ଧା ଗଡ଼ ?
—ଜନ୍ମି ଜଗବନ୍ଧୁ ଯା'ର ପାଇକ ସର୍ଦ୍ଦାର ...

ଏଇ ସେ ସମ୍ବଲପୁର ?
—ପ୍ରବଳ ପ୍ରତାପୀ ବୀର ସୁରେନ୍ଦ୍ର ସାଏ !!

କିଏ ସେହି ମହାଜ୍ଞାନୀ ଲେଖିଗଲେ 'ସିଦ୍ଧାନ୍ତ-ଦର୍ପଣ'
କାହିଁ ସେ କବି-ସମ୍ରାଟ ତୋଳିଲେ ଯେ ଅଭିନବ ଛନ୍ଦର ଗାନ ?

କିଏ ସେ ଗୋପାଳକୃଷ୍ଣ ଜଗନ୍ନାଥ ଭୀମାଭୋଇ ଦୀନକୃଷ୍ଣ
ଗଙ୍ଗାଧର ରାଧାନାଥ ଗୋପବନ୍ଧୁ ମଧୁବାବୁ ଫକୀର ମୋହନ ??

କେଉଁ ଭାଗ୍ୟବତୀ ମାଆ ପ୍ରସବିଲେ ଏତେ ବୀର ଦିଗ୍‌ବିଜୟର
ଯୋଗଜନ୍ମା ପୁଣ୍ୟକର୍ମା ଯଶସ୍ୱୀ ସନ୍ତାନ ....

ଏଇ ସେ ଉତ୍କଳଭୂମି କାଲିଁ ଯା'ର ବୀରମହାୟାନ ?
ସେହି ଉତ୍କଳରୁ ଜନ୍ମି ତା' ମାଟିର ପାଣି ପବନରେ
ମୁଁ ବୁଝେନି ଆଜି କିଆଁ ଆମେ ଏତେ ହୀନବୀର୍ଯ୍ୟ
ଅଥର୍ବ ଓ ପଙ୍ଗୁ ପରି ଶକ୍ତି ଓ ସମ୍ବଳହୀନ.....

ସମସ୍ତେ ତ' ମୂକବତ୍ କିଏ ଦେବ ଏ ଉତ୍ତର
କୁହରେ ଓଡ଼ିଆ ଥରେ କି' ଗର୍ବ ଓ ଗୌରବରେ
ତୋ ଅତୀତ/ବଂଶଧର କେତେ ଦୀପ୍ତ କେତେ ତେଜୀୟାନ !!

କାହିଁ—କାହିଁଗଲେ ଦର୍ପ ଦମ୍ଭ କଳା କୁଶଳତା
ସବୁଖାଲି ସ୍ମୃତିର ସଫେଦ ମୁହଁରେ ହୋଇଯାଏ ଲୀନ....

ଜଗନ୍ନାଥେ ! ଏ ଜାତିକୁ ସ୍ଥାନ ଦିଅ ଭୁଜତଳେ ରଖ ମହାପ୍ରଭୁ
ଏ ଜାତିର ଭବିଷ୍ୟତ ପୂର୍ବାପେକ୍ଷା ସ୍ୱର୍ଣ୍ଣଦୀପ୍ତ ହେଉ
ହୃଦୟ ଗମ୍ଭୀର ହେଉ, ମନ ହେଉ ବିରାଟ ଉତ୍ତୁଙ୍ଗ
ଏ ଜାତିର ପ୍ରାଣଶକ୍ତି ସଂଜୀବିତ ହେଉ ମହାପ୍ରଭୁ
ସମସ୍ତ ଉତ୍କଳ ଜାତି ଆତ୍ମା ହେଉ ପବିତ୍ର ନିର୍ମଳ
ଅବଶେଷରେ ଜଗନ୍ନାଥେ—ତୁମ ଧର୍ମେ ଗଢ଼ ଏ ଜାତିକି ।

# ସ୍ୱାମୀ ବିବେକାନନ୍ଦ ଓ ଭାରତରେ ଗଣଜାଗରଣ

ଶ୍ରୀ ବ୍ରହ୍ମଚାରୀ ଗଣେଶ ଚୈତନ୍ୟ

ଊନବିଂଶ ଶତାବ୍ଦୀ ଭାରତର ଇତିହାସରେ ଏକ ଅବିସ୍ମରଣୀୟ ସମୟ । ଏହି ସନ୍ଧିକ୍ଷଣରେ ଆମ ଦେଶରେ ବହୁ ମହାମାନବ ଜନ୍ମ ଗ୍ରହଣ କରିଥିଲେ । ତାହାଙ୍କର ମହାନ ଜୀବନ ଓ ଚିନ୍ତାଧାରା ବିଦେଶୀ ଶାସନସନ୍ତ୍ରସ୍ତ ଭାରତର ଆତ୍ମଗ୍ଲାନିକୁ ଦୂର କରିଥିଲା ଓ ଜଗତ ସମ୍ମୁଖରେ ଭାରତକୁ ଏକ ଗୌରବମୟ ସ୍ଥାନ ପ୍ରଦାନ କରିଥିଲା ।

ସ୍ୱାମୀ ବିବେକାନନ୍ଦ (୧୮୬୩—୧୯୦୨) ଏହି ମହାମାନବମାନଙ୍କ ମଧ୍ୟରେ ଅନ୍ୟତମ । ସେ ଭାରତୀୟ ଇତିହାସର ଏକ ଦୁଃସମୟରେ ଜନ୍ମ ଗ୍ରହଣ କରିଥିଲେ । ଯେତେବେଳେ ଭାରତୀୟ ମାନଙ୍କ ଭିତରେ ଏକ ଦାସ-ସୁଲଭ ଗ୍ଲାନି ଦେଖାଦେଇଥିଲା । ସେମାନେ ଆତ୍ମ-ବିଶ୍ୱାସ ହରାଇ ଥିଲେ ଓ ପାଶ୍ଚାତ୍ୟର ଅନୁକରଣକୁ ହିଁ ଜୀବନରେ ଶ୍ରେୟବୋଲି ବିବେଚନା କରିଥିଲେ । ଜାତୀୟତା ବୋଧ ଲୋପ ପାଇ ଯାଇଥିଲା ବୋଲି କହିଲେ ମଧ୍ୟ ଅତ୍ୟୁକ୍ତି ହେବନାହିଁ । ଶିକ୍ଷିତ ଯୁବକମାନେ ଇଂରେଜମାନଙ୍କର ଏକ ଅବିକଳ "ନକଲ" ହେବାକୁ ହିଁ ନିଜ ଜୀବନର ଚରମ ଆଦର୍ଶ ବୋଲି ମନେ କରିଥିଲେ । ବିବେକାନନ୍ଦଙ୍କ ପରି ଭାରତର ସୁସନ୍ତାନ-ମାନେ ଜନ୍ମଗ୍ରହଣ ନ କରିଥିଲେ, ଦେଶ କାଳକ୍ରମେ ପାଶ୍ଚାତ୍ୟର ଏକ ଅସମ୍ପୂର୍ଣ୍ଣ ହାସ୍ୟକର ଅନୁକରଣରେ ପରିଣତ ହୋଇଥାନ୍ତା । ପ୍ରାଚୀନ ସମଭାବାପନ୍ନ ବ୍ୟକ୍ତି-ମାନେ ନିଜକୁ ରକ୍ଷାକରିବାପାଇଁ ଆଧୁନିକ ସଭ୍ୟତାରୁ ନିଜକୁ ବିଚ୍ଛିନ୍ନ କରି ରଖିଥିଲେ । ଖ୍ରୀଷ୍ଟିଆନ ପ୍ରଚାରକ ମାନେ ଏହି ପରିସ୍ଥିତିର ସୁଯୋଗ ନେଇ ସହସ୍ର ସହସ୍ର ହିନ୍ଦୁଙ୍କୁ ଧର୍ମାନ୍ତରିତ କରୁଥିଲେ । ଭାରତୀୟ ସମାଜର ପତନ କ୍ରମେ ସ୍ପଷ୍ଟରୁ ସ୍ପଷ୍ଟତର ହେଲା ।

ଏହି ଶୋଚନୀୟ ପରିସ୍ଥିତିର ପ୍ରତିକ୍ରିୟା ଭାରତରେ ସ୍ୱାମୀଜୀଙ୍କ ଜନ୍ମଗ୍ରହଣ ପୂର୍ବରୁ ଆରମ୍ଭ ହୋଇ ଯାଇ-ଥିଲା । ରାଜା ରାମମୋହନ ରାୟ ଓ ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କର ଅକ୍ଳାନ୍ତ ପରିଶ୍ରମରେ ଭାରତୀୟ ଚେତନା ଅନେକାଂଶରେ ପୁନର୍ଜୀବିତ ହୋଇଥିଲା ।

ବିଗତ ତିନିଶତ ବର୍ଷ ଧରି ଜଡ଼ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବହୁଳ ଅଗ୍ରଗତି ହେତୁ ଆଧୁନିକ ମାନବ ଭଗବତ ସତ୍ତାର ଅସ୍ତିତ୍ୱକୁ ଅସ୍ୱୀକାର କରେ, ଯେଉଁ ପ୍ରେମ ଓ ସହିଷ୍ଣୁତା ଜନସମାଜକୁ ବାନ୍ଧିରଖେ, ତାହାର ଆଧ୍ୟାତ୍ମିକ ଭିତ୍ତିକୁ ସେମାନେ ଭୁଲି ଯାଇଛନ୍ତି । ସେମାନେ ଏହାମଧ୍ୟ ଭୁଲି ଯାଇଛନ୍ତି ଯେ ପ୍ରତ୍ୟେକ ଧର୍ମ ମନୁଷ୍ୟକୁ ତା'ର ଜନ୍ମଗତ ସଂସ୍କାରାନୁଯାୟୀ ଏକ ଗନ୍ତବ୍ୟ ସ୍ଥଳକୁ ନେଇ ଯାଆନ୍ତି । ଆମର ଜଡ଼ଭାବା-ପନ୍ନ ବୁଦ୍ଧି ଇନ୍ଦ୍ରିୟ ଗ୍ରାହ୍ୟ ଜଗତ ଛଡ଼ା ଅନ୍ୟ କିଛି ଗ୍ରହଣ କରିବାକୁ ଚାହେଁ ନାହିଁ । ଆଧୁନିକ ବିଜ୍ଞାନ ଏହି ଜଗତକୁ ସ୍ଥୂଳ ଦୃଷ୍ଟିରୁ ବ୍ୟାଖ୍ୟାକରେ । ଏହା ମତରେ ମାନବ ଏକ ଜଡ଼ କ୍ରମବିକାଶବାଦର ପରିଣତି ଓ ତାହାର କୌଣସି ଆଧ୍ୟାତ୍ମିକ ସତ୍ତା ନାହିଁ । ତେଣୁ ଆମର ସାମାଜିକ ଜୀବନ ଏକ ସ୍ୱାର୍ଥ-ପର ପ୍ରତିଯୋଗିତାରେ ପରିଣତ ହୋଇଅଛି । ଭୟ, ସନ୍ଦେହ ଓ ଘୃଣା ମାନବର ସାମାଜିକ ସମ୍ପର୍କକୁ ବିଷାକ୍ତ କରି ପକାଇଛି । ମନୁଷ୍ୟ କିଛିରେ ସନ୍ତୁଷ୍ଟ ହୋଇ ପାରୁନାହିଁ । ଭବିଷ୍ୟତରେ ପାରମାଣବିକ ଯୁଦ୍ଧ ହେଲେ ଆଧୁନିକ ଜଡ଼ ସଭ୍ୟତାକୁ ଉପଭୋଗ କରିବାପାଇଁ କେହି ହେଲେ ବଞ୍ଚି ରହିବ ନାହିଁ । ସଂକ୍ଷେପରେ କହିବାକୁ ଗଲେ, ଆଧୁନିକ ସଭ୍ୟତାର ବ୍ୟାଧି ସମ୍ପୂର୍ଣ୍ଣଭାବରେ ଆଧ୍ୟାତ୍ମିକ,—ଅର୍ଥ

ନୈତିକ, ଆର୍ଥନୈତିକ ଅସମତା । ଏହା ବ୍ୟାଧିର ବାହ୍ୟ ଲକ୍ଷଣ ମାତ୍ର । ଧର୍ମରେ ମତାନ୍ଧତା ଓ କୁସଂସ୍କାର ପ୍ରବେଶ କରିଛି । ଧର୍ମଯାଜକ ଓ ପୁରୋହିତମାନଙ୍କର ମତ ଗୁଡ଼ିକ ଅତି ସଙ୍କୀର୍ଣ୍ଣ, ତାହା ମନୁଷ୍ୟ ହୃଦୟରେ ଶାନ୍ତି ଆନୟନ କରିବାରେ ଅସମର୍ଥ । ଏହି ସବୁ କାରଣରୁ ଆଧୁନିକ ମାନବ ସନ୍ଦେହବାଦ ଓ ନାସ୍ତି-କତାକୁ ଆଶ୍ରୟ କରୁଛି ।

ଏହି ସାମାଜିକ ବ୍ୟାଧିଗୁଡ଼ିକୁ ନିର୍ମୂଳ କରିବାପାଇଁ ସ୍ୱାମୀଜୀ ନିଜ ଜୀବନର ଅନୁଭୂତି ବେଦାନ୍ତର ଚିର-ନ୍ତନ ସତ୍ୟ ସମୂହକୁ ପୁନଃପ୍ରଚାର କଲେ । ସେ ମାନବ ଆବିଷ୍କୃତ ସକଳ ଜ୍ଞାନର ସମନ୍ୱୟ ସାଧନ କରିଥିଲେ—ତାହା ବୈଜ୍ଞାନିକ ବା ଦାର୍ଶନିକ; ବା ଆଧ୍ୟାତ୍ମିକ ହେଉ । ସେ ଦର୍ଶାଇଥିଲେ କିପରିଭାବରେ ଏହି ସବୁ ଜ୍ଞାନ ସମୂହ ଏକ ଲକ୍ଷ୍ୟାଭିମୁଖୀ । ସେ ମଧ୍ୟ ଦେଖାଇଥିଲେ କିପରି ଭାବରେ ସୁନିୟନ୍ତ୍ରିତ ବୁଦ୍ଧି, କର୍ମ, ପ୍ରେମ ଓ ଆତ୍ମସଂଯମ ଦ୍ୱାରା ଆମେ ଅନ୍ତସ୍ଥ ଦେବତ୍ୱକୁ ପ୍ରସ୍ଫୁଟିତ କରି ପାରୁ ।

ସ୍ୱାମୀଜୀଙ୍କର ଉପଦେଶଗୁଡ଼ିକ ଯେ କେବଳ ଭାରତପାଇଁ ତାହା ନୁହେଁ—ତାହା ସମଗ୍ର ଜଗତ ପାଇଁ । ଯଦି ଓ ତାଙ୍କର କୋମଳ ହୃଦୟ ମାନବର ସର୍ବବିଧ ଦୁଃଖ ପାଇଁ ସର୍ବଦା ଆର୍ଦ୍ର ଥିଲା, ତଥାପି ସେ ଭାରତର ଜନସାଧାରଣଙ୍କ କଲ୍ୟାଣ ସାଧନରେ ହିଁ ଅଧିକତର ମନୋନିବେଶ କରିଥିଲେ ।

୨

୧୮୮୬ ଖ୍ରୀ: ରେ ଶ୍ରୀରାମକୃଷ୍ଣ ଦେବଙ୍କ ତିରୋଧାନ ପରେ ଦୀର୍ଘ ଛଅ ବର୍ଷକାଳ ସ୍ୱାମୀଜୀ ପରିବ୍ରାଜକ-ରୂପେ ହିମାଳୟଠାରୁ କନ୍ୟାକୁମାରିକା ପର୍ଯ୍ୟନ୍ତ ଭାରତରେ ସର୍ବତ୍ର ଭ୍ରମଣ କରିଥିଲେ ଓ ମହାରାଜାଙ୍କଠାରୁ ଆରମ୍ଭ କରି ସକଳ ସ୍ତରର ଜନସାଧାରଣଙ୍କ ଆତିଥ୍ୟ ଗ୍ରହଣ କରିଥିଲେ ଓ ତାଙ୍କ ସହିତ ଘନିଷ୍ଠଭାବରେ ମିଶିଥିଲେ । ଏହି ଭ୍ରମଣ କାଳରେ ବୋଧହୁଏ ସେ ତାଙ୍କ ଜୀବନର ମୁଖ୍ୟ ଉଦ୍ଦେଶ୍ୟ ସମ୍ପର୍କରେ ସେତେଟା ସଚେତନ ନ ଥିଲେ ଓ ଅନ୍ୟାନ୍ୟ ସାଧକମାନଙ୍କ ପରି ନିଜର ମୁକ୍ତିସାଧନକୁ ହିଁ ଚରମ ଲକ୍ଷ୍ୟ ବୋଲି ଧରି ନେଇଥିଲେ; କିନ୍ତୁ ଏକ ଅଜ୍ଞାତ ପ୍ରେରଣା ତାଙ୍କୁ ଏହି ପଥରେ ଅଗ୍ରସର ହେବାକୁ ବାଧା ଦେଉଥିଲା । ତାଙ୍କ ସ୍ମୃତିପଥରେ ଉଦିତ ହେଲା—ତାଙ୍କ ପ୍ରତି ଶ୍ରୀରାମକୃଷ୍ଣଙ୍କର ସେହି ଭର୍ତ୍ସନାର କଥା ଯେତେବେଳେ ସେ ତାଙ୍କୁ ନିଜ ମୁକ୍ତି ସାଧନର ଚେଷ୍ଟା ତ୍ୟାଗ କରି ମାନବସମାଜର ହିତସାଧନ ପାଇଁ ସଚେଷ୍ଟ ହେବାକୁ କହିଥିଲେ । ସେ ତାଙ୍କୁ ଗୋଟିଏ ବୃହତ ବୃକ୍ଷ ପରି ହେବାକୁ କହିଥିଲେ, ଯାହାର ସାହାଯ୍ୟରେ ପରିଶ୍ରାନ୍ତ ସଂସାର ତାପକ୍ଲିଷ୍ଟ ମାନବ ଭବସାଗର ପାରି ହୋଇ ମୁକ୍ତିର ସନ୍ଧାନ ପାଇବେ ।

ପ୍ରାଚୀନ ଭାରତର ମୁନି ଋଷିଙ୍କର ଆଧୁନିକ ବଂଶଧର ମାନଙ୍କର ବର୍ତ୍ତମାନ ଅବସ୍ଥା ତାଙ୍କ ହୃଦୟକୁ କରୁଣାରେ ବିଗଳିତ କରିଥିଲା । ସେ ସ୍ପଷ୍ଟ ଦେଖିଲେ କିପରିଭାବରେ ବିଦେଶୀମାନଙ୍କର ନିର୍ମମ ଶାସନ, ସ୍ୱଜାତୀୟ ଧନୀସଂପ୍ରଦାୟର ଶୋଷଣ ଓ ସ୍ୱାର୍ଥପର ପୁରୋହିତ ଶ୍ରେଣୀର ଅତ୍ୟାଚାର ଭାରତୀୟ ଜନସାଧାରଣଙ୍କୁ ଦରିଦ୍ର କରି ପକାଇଥିଲା । ଏହି ବିପର୍ଯ୍ୟୟ ସତ୍ତ୍ୱେ ଯେ ସେମାନେ ଶାନ୍ତିରେ ରହିଛନ୍ତି ଓ ଭଗବାନଙ୍କ ଉପରେ ତାଙ୍କ ଆସ୍ଥା ହରାଇ ନାହାନ୍ତି—ଏହା ଦେଖି ବିବେକାନନ୍ଦ ସ୍ତମ୍ଭିତ ହୋଇଥିଲେ । ବିବେକାନନ୍ଦଙ୍କ ପରେ ଗାନ୍ଧୀଜୀ ମଧ୍ୟ ଏହିପରି ଭାବେ ଭ୍ରମଣ କରି ଅନୁରୂପ ମନ୍ତବ୍ୟ ପ୍ରକାଶ କରିଥିଲେ । ଉଭୟ ଦେଶପ୍ରେମିକ ଜନସାଧାରଣଙ୍କ ଆର୍ଥିକ ଦାରିଦ୍ର୍ୟ ଓ ଆଧ୍ୟାତ୍ମିକ ସମ୍ପଦକୁ ଦେଖି ବିସ୍ମିତ ହୋଇଥିଲେ ଓ ଏମାନଙ୍କ ଅଭାବ ଦୂର କରିବା ନିମିତ୍ତ ଏବଂ ଆଧ୍ୟାତ୍ମିକ ଶକ୍ତି ବର୍ଦ୍ଧିତ କରିବା ନିମିତ୍ତ ସଂକଳ୍ପ କରିଥିଲେ । ଭାରତର ଦରିଦ୍ର ଜନଗଣ କିପରି ଭାବରେ ଖାଦ୍ୟ, ବସ୍ତ୍ର ଓ ଅନ୍ୟାନ୍ୟ ପ୍ରୟୋଜନୀୟ ବସ୍ତୁସକଳ ପାଇବେ ତାଙ୍କ ପରିଭ୍ରମଣ କାଳରେ ସ୍ୱାମୀଜୀ ଏହି ସତ୍ୟ ମଧ୍ୟ ଆବିଷ୍କାର କଲେ ଯେ ଭାରତର ଅବନତିର କାରଣ ଧର୍ମ ନୁହେଁ, ବରଂ ଧର୍ମ ନାମରେ ଅଭିହିତ ହେଉଥିବା କୁସଂସ୍କାର ଓ ଭଣ୍ଡାମି ଏହାର ମୂଳ କାରଣ । ଅନ୍ୟ ଏକ ଦୃଷ୍ଟିକୋଣରୁ ଦେଖିଲେ ଶାସ୍ତ୍ରୋପଦେଶ ଓ ବିଭିନ୍ନ ଯୁଗରେ ପ୍ରସିଦ୍ଧ ମହାପୁରୁଷମାନଙ୍କ ଉପଦେଶର ଶ୍ରଦ୍ଧାପୂର୍ବକ ଅନୁଶୀଳନ ଭାରତୀୟ ଧର୍ମ ଓ କୃଷ୍ଟିକୁ ବିଦେଶୀ ଶାସନ ଓ ଅନ୍ୟାନ୍ୟ ବହୁ ବାଧା ସତ୍ତ୍ୱେ ଏତେକାଳ ଯାଏ ରକ୍ଷାକରି ଆସିଛି; ଅଥଚ ଯେଉଁ କ୍ଷେତ୍ରରେ ମିଶର, ଗ୍ରୀକ୍ ଓ ରୋମ୍ ସଭ୍ୟତା ଆଜି ସମ୍ପୂର୍ଣ୍ଣ ଲୁପ୍ତ । ଭଗବାନ ଯେପରିକି ଶାସ୍ତ୍ରରେ କହିଛନ୍ତି । ନା ଦଦାତି କସ୍ୟଚିତ ପାପଂ ନ ଚୈବ ସୁକୃତଂ ବିଭୁ ; ଭାରତର ଏହି ଅବନତି ପାଇଁ ଭଗବାନ କିମ୍ବା ଦେବଦେବୀ ନୁହନ୍ତି—ବରଂ ଆମେ ନିଜେ ଏଥି ପାଇଁ ଦାୟୀ । ଭାରତର ଦୁର୍ଗତି ମନୁଷ୍ୟ ସୃଷ୍ଟ, ସେଥି ଆମ୍ଭମାନଙ୍କୁ ହିଁ ଭାରତର ଉନ୍ନତି ପାଇଁ ଯତ୍ନଶୀଳ ହେବାକୁ ପଡ଼ିବ । ଦୁଷ୍କର୍ମକୁ ଆମେ ସତ୍କର୍ମ ଦ୍ୱାରା ରୋଧ କରି ପାରୁ । ସ୍ୱାମୀଜୀଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ, ବେଦାନ୍ତିକ ସତ୍ୟ ସମୂହର ଜନସାଧାରଣଙ୍କ ମଧ୍ୟରେ ଅବାଧ ପ୍ରଚାର ଦ୍ୱାରା ମନୁଷ୍ୟର ଅନ୍ତର୍ନିହିତ ଶକ୍ତି ପୁନର୍ଜାଗ୍ରତ

ଓ ସେମାନେ ନିଜର କଲ୍ୟାଣ ପାଇଁ ଯାହା ପ୍ରୟୋଜନ ନିଜେ ତାହାର ସମାଧାନ କରି ପାରିବେ । ଏତେ ଦିନ ଯାଏ ବୈଦାନ୍ତିକ ସତ୍ୟସମୂହ କେବଳ ସ୍ୱାମୀଜୀ ଓ ସନ୍ନ୍ୟାସୀମାନଙ୍କର ସମ୍ପତ୍ତି ହୋଇ ରହିଥିଲା; କିନ୍ତୁ ସ୍ୱାମୀଜୀ ଏହି ତତ୍ତ୍ୱଗୁଡ଼ିକୁ ଲୁଚାଇ ନ ରଖି ଆଚଣ୍ଡାଳ ସମସ୍ତଙ୍କ ମଧ୍ୟରେ ବିତରଣ କରିବାକୁ କହିଲେ । ସେ ଭାରତୀୟ ଇତିହାସର ଏକ କଠୋର ସତ୍ୟକୁ ପ୍ରତ୍ୟକ୍ଷ କରିଥିଲେ । ଯେତେବେଳେ ଦେଶରେ କତିପୟ ବ୍ୟକ୍ତି କେତେ ଦୂର ଆଧ୍ୟାତ୍ମିକ ଶକ୍ତି ସମ୍ପନ୍ନ ହୁଅନ୍ତି ଓ ଅନ୍ୟ ଦିଗରେ ସେହି ଦେଶର ଜନସାଧାରଣ କେତେଦୂର ଅଧୋଗତି ପ୍ରାପ୍ତ ହୋଇ ଯାଆନ୍ତି । ପାଶ୍ଚାତ୍ୟ ଦେଶରେ ବୁଦ୍ଧଙ୍କ ପରି ମହାନ କେହି ନ ଥିଲେ ମଧ୍ୟ ସେମାନଙ୍କର ସାମାଜିକ ଅଗ୍ରଗତି ସମସ୍ତଙ୍କୁ ବିସ୍ମିତ କରି ଥାଏ ।

ସ୍ୱାମୀଜୀଙ୍କର ଦୃଢ଼ଧାରଣା ହୋଇଥିଲା ଯେ ପାଶ୍ଚାତ୍ୟର ବିଜ୍ଞାନ ପ୍ରଯୁକ୍ତି ବିଦ୍ୟା ଓ ସଂଗଠନ (Organisation) ବ୍ୟତୀତ ଭାରତର ଉନ୍ନତି ଅସମ୍ଭବ । ପାଶ୍ଚାତ୍ୟର ସମୃଦ୍ଧିରେ ମୂଳରେହିଁ ଶିକ୍ଷାର ଯଥେଷ୍ଟ ଅବଦାନ ରହିଛି । ତେଣୁ ଭାରତରେ ଏହି ଶିକ୍ଷାର ରହସ୍ୟ ଜାଣିବା ପାଇଁ ସ୍ୱାମୀଜୀ ୧୮୯୩ ଖ୍ରୀ. ରେ ଆମେରିକାକୁ ଯାତ୍ରା କଲେ । ପାଶ୍ଚାତ୍ୟର ସମୃଦ୍ଧି ଦେଖି ବୋଧ ହୁଏ ସ୍ୱାମୀଜୀ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । କିନ୍ତୁ ତାଙ୍କର ବୁଝିବାରେ ଡେରି ହେଲା ନାହିଁ ଯେ ଏହି ସ୍ୱାର୍ଥପର ଜଡ ସଭ୍ୟତାର ପରିଣତି କ'ଣ । ତେଣୁ ଆମେରିକାର ଖ୍ରୀଷ୍ଟିୟାନମାନଙ୍କୁ ସେ ଖ୍ରୀଷ୍ଟଙ୍କ ମତକୁ ଫେରି ଯିବାପାଇଁ ଅନୁରୋଧ ଜଣାଇଥିଲେ । ଦୁଇଟି ବିଶ୍ୱ ମହାଯୁଦ୍ଧ ସ୍ୱାମୀଜୀଙ୍କର ଏହି ସତର୍କ ବାଣୀର ଯଥାର୍ଥତାକୁ ପ୍ରମାଣ କରିଛି । ଆମେରିକାବାସୀଙ୍କ ଦୈହିକ ସୁଖ ସ୍ୱାଚ୍ଛନ୍ଦ୍ୟର ଅଭାବ ନାହିଁ ସତ, କିନ୍ତୁ ସେମାନଙ୍କ ମଧ୍ୟରେ ଅତି ଅଳ୍ପସଂଖ୍ୟକ ବ୍ୟକ୍ତି ଶାନ୍ତିରେ ବାସ କରନ୍ତି । ତେଣୁ ସେ ଭାରତବାସୀମାନଙ୍କ ଏହି ନଗ୍ନ ଜଡ ସଭ୍ୟତାର ଅନୁକରଣ ତ୍ୟାଗ କରି ସେମାନଙ୍କ ନିକଟରୁ ବିଜ୍ଞାନ ଓ ପ୍ରଯୁକ୍ତି-ବିଦ୍ୟା ଶିଖିବାକୁ କହିଥିଲେ ଯାହା ଦ୍ୱାରା କି ସେମାନେ ନୂତନ ଭାରତ ପାଇଁ ଏକ ସୁଦୃଢ଼ ଭିତ୍ତି ପ୍ରସ୍ତୁତ କରି ପାରିବେ । ଏହି ଭିତ୍ତି ଉପରେ ସ୍ଥାପିତ ହେବ ଭାରତର ଗଗନସ୍ପର୍ଶୀ ଆଧ୍ୟାତ୍ମିକ କୃଷ୍ଟିର ସୌଧ । ସ୍ୱାମୀ ବିବେକାନନ୍ଦ ଭାରତକୁ ସତର୍କ କରି ଦେଇଥିଲେ ଯେ ଯଦି ସେ ନିଜର ଆଧ୍ୟାତ୍ମିକ ମୂଲ୍ୟବୋଧକୁ ହରାଇ କେବଳ ମାତ୍ର ଅର୍ଥନୈତିକ ଓ ରାଜନୈତିକ ଦିଗରେ ନିଜର ଶକ୍ତି ନିୟୋଜିତ କରେ, ତେବେ ତାହାର ମୃତ୍ୟୁ ଆସନ୍ନ ।

ଭାରତର ଜାତୀୟ ଉତ୍ଥାନରେ କାର୍ଯ୍ୟାବଳୀ ସ୍ୱାମୀଜୀ ତାଙ୍କର ବିଭିନ୍ନ ରଚନା ଓ ବକ୍ତୃତା ମାଧ୍ୟମରେ ଦେଇ ଯାଇଛନ୍ତି । ଜନଗଣଙ୍କ ଶାରିରୀକ ଓ ମାନସିକ ଉନ୍ନତି ପାଇଁ ଯେଉଁ ଧରଣର ଶିକ୍ଷାର ପ୍ରୟୋଜନ ସେ କଥା ସ୍ୱାମୀଜୀ କହିଛନ୍ତି । ସ୍ୱଦେଶ ପ୍ରେମୀ ନରନାରୀମାନେ ଗାଁ ଗାଁରେ ବୁଲି ଜନସାଧାରଣଙ୍କ ସହିତ ସାକ୍ଷାତ କରିବେ ଓ ସେମାନଙ୍କ ଶିକ୍ଷାର ବ୍ୟବସ୍ଥା କରିବେ ଓ ପୁସ୍ତକଗତ ଶିକ୍ଷା ବ୍ୟତିରେକେ ତାଙ୍କୁ ବିଭିନ୍ନ ଧରଣର ଶିକ୍ଷା ଯେପରିକି ସ୍ୱାସ୍ଥ୍ୟ, କୃଷି, କଳା ଓ କାରିଗରୀ ଶିଳ୍ପ ସମ୍ପର୍କରେ ଓ ଦେଶ ବିଦେଶ ସମ୍ପର୍କରେ ବିଭିନ୍ନ ତଥ୍ୟାଦି ସେମାନଙ୍କ ମଧ୍ୟରେ ପରିବେଷଣ କରିବେ । ଏହି ସବୁ ଶିକ୍ଷାଦାନ ଛଡ଼ା ସେମାନେ ଗ୍ରାମବାସୀମାନଙ୍କୁ ଭାରତର ଆଧ୍ୟାତ୍ମିକ ସମ୍ପଦ ବିଷୟ ମଧ୍ୟ ଶିଖାଦେବେ, ଯେପରିକି ସେମାନେ ଆଧୁନିକ ହିନ୍ଦୁ-ଧର୍ମର ବହିର୍ଭାଗରେ ଯେଉଁସବୁ କୁସଂସ୍କାର ରହିଛି, ସେଗୁଡ଼ିକୁ ବର୍ଜନ କରି ପାରିବେ । ଜଣେ କ୍ଷୁଧାର୍ତ୍ତ ବ୍ୟକ୍ତିକୁ ଧର୍ମର ବାଣୀ ଶୁଣାଇବ ବାତୁଳତା ମାତ୍ର । ସ୍ୱାମୀଜୀ ଦୃଢ଼ସ୍ୱରରେ ଘୋଷଣା କରିଛନ୍ତି ଯେ ମନୁଷ୍ୟର ନିଷ୍କାମ ସେବାହିଁ ପ୍ରକୃତ ଈଶ୍ୱରୋପାସନା । ଭାରତର ଜନସାଧାରଣଙ୍କୁ ସେ ଦରିଦ୍ର ନାରାୟଣ ଆଖ୍ୟା ପ୍ରଦାନ କରିଥିଲେ । ଦରିଦ୍ରରୂପରେ ସ୍ୱୟଂ ନାରାୟଣ ଆମ ସମ୍ମୁଖରେ ବିଦ୍ୟମାନ । ତେଣୁ ତାଙ୍କ ଉପାସନା ପାଇଁ ଅନ୍ୟତ୍ର ଗମନ ଅନାବଶ୍ୟକ । ସ୍ତୁତିଦ୍ୱାରା ମହତ କାର୍ଯ୍ୟ ହୁଏ ନାହିଁ । ବିବେକାନନ୍ଦ ଏହା ବାରମ୍ବାର କହିଛନ୍ତି, ତେଣୁ ଭାରତର ଜାତୀୟ ଜାଗରଣ ପାଇଁ ଯେଉଁମାନେ ନିଜକୁ ନିଯୁକ୍ତି କରିବେ ସେମାନେ ନ୍ୟାୟପରାୟଣ, ଚରିତ୍ରବାନ, କଠୋର ପରିଶ୍ରମୀ ହେବେ ଓ ହିଂସା, ସ୍ୱାର୍ଥପରତା, ଦାମ୍ଭିକତା ଓ କ୍ଷମତାର ଲୋଭ ଇତ୍ୟାଦି ବର୍ଜନ କରିବେ ।

ଆମେରିକାରେ ଅବସ୍ଥାନ କାଳରେ ସ୍ୱାମୀଜୀ ତାଙ୍କ ଭାରତୀୟ ଶିଷ୍ୟମାନଙ୍କ ପ୍ରତି ଜାତୀୟ ସଂଗଠନ ପାଇଁ ଓଜସ୍ୱୀ ଭାଷାରେ ବହୁ ପତ୍ରାଦି ଲେଖିଛନ୍ତି ।

୧୮୯୪ ଖ୍ରୀ:ରେ ଲିଖିତ ଗୋଟିଏ ପତ୍ରରେ ସେ କହିଛନ୍ତି: "ଆସ ଆମେ ଭାରତର ଲକ୍ଷ ଲକ୍ଷ ପଦ-ଦଳିତ ଜନଗଣଙ୍କ ପାଇଁ—ଦାରିଦ୍ର୍ୟ, ଅତ୍ୟାଚାର ଓ ପୁରୋହିତ ମାନଙ୍କ ଶୋଷଣରେ ଜର୍ଜରିତ ଅସଂଖ୍ୟ ଭାରତବାସୀଙ୍କ ମଙ୍ଗଳପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା ଜଣାଇବା । ତାଙ୍କପାଇଁ ଦିବାରାତ୍ର ଏହିପରି ପ୍ରାର୍ଥନା ଜଣାଅ । ମୁଁ କୌଣସି ଦାର୍ଶନିକ କିମ୍ବା ମହାତ୍ମା ନୁହେଁ । ମୁଁ ଜଣେ ଦରିଦ୍ର ଭାରତବାସୀ. ମୁଁ ଦରିଦ୍ରମାନଙ୍କୁ ଭଲ ପାଏ । ଭାରତର ତିରିଶକୋଟି ଅଶିକ୍ଷିତ, ଦରିଦ୍ର, ନରନାରୀଙ୍କ କଥା କିଏ ଚିନ୍ତା

କରେ ? ତାଙ୍କପାଇଁ କିଏ ସହାନୁଭୂତି ପ୍ରଦର୍ଶନ କରେ ? ବର୍ତ୍ତମାନ ଏହି ଦରିଦ୍ର ନରନାରୀଗଣହିଁ ତୁମର ଉପାସ୍ୟ ଦେବତା—ତାଙ୍କ କଥା ଚିନ୍ତାକର, ତାଙ୍କପାଇଁ କର୍ମକର ଓ ସର୍ବଦା ତାଙ୍କ ମଙ୍ଗଳପାଇଁ ପ୍ରାର୍ଥନା କର, ତେବେ ଯାଇଁ ଭଗବାନ ତୁମକୁ ପ୍ରକୃତ ପଥର ସନ୍ଧାନ ଦେବେ । ଯାହାର ହୃଦୟରୁ ଦରିଦ୍ରମାନଙ୍କ-ପାଇଁ ରକ୍ତ କ୍ଷରିତ ହୁଏ, ତାଙ୍କୁ ମୁଁ ମହାତ୍ମା ବୋଲି ଅଭିହିତ କରେ । ଅନ୍ୟଥା ସେ ଜଣେ ଦୁରାତ୍ମା । ଯେତେଦିନଯାଏ ଲକ୍ଷ ଲକ୍ଷ ଲୋକ କ୍ଷୁଧାର୍ତ୍ତ ଓ ଅଶିକ୍ଷିତ ହୋଇ ରହିଛନ୍ତି, ସେତେଦିନ ପର୍ଯ୍ୟନ୍ତ ମୁଁ ସମସ୍ତଙ୍କୁ ବିଶ୍ୱାସଘାତକ ବୋଲି କହିବି । କାରଣ ସେମାନେ ଏହି ଦରିଦ୍ର ଜନଗଣଙ୍କ ବିନିମୟରେ ଶିକ୍ଷାଲାଭ କରିଛନ୍ତି, ଅଥଚ ତାଙ୍କ ପ୍ରତି ସଂପୂର୍ଣ୍ଣ ଉଦାସୀନ ରହିଛନ୍ତି ।

ସ୍ୱାମୀ ବିବେକାନନ୍ଦ ଆମେରିକାରେ ପ୍ରତ୍ୟକ୍ଷ ଦେଖିଲେ ମନୁଷ୍ୟ ନିଜ ଆନ୍ତରିକ ଚେଷ୍ଟା ଓ ବୁଦ୍ଧିର ପ୍ରୟୋଗ ଦ୍ୱାରା ସାଧାରଣ ଜନଗଣଙ୍କର ଉନ୍ନତିବିଧାନ ପାଇଁ କଣ କରିପାରେ । ଜନୈକ ଭାରତୀୟ ଶିଷ୍ୟଙ୍କ ନିକଟକୁ ସେ ୨୦ ଅଗଷ୍ଟ ୧୮୯୩ ଖ୍ରୀ: ରେ ଲେଖିଥିଲେ—

“ନିରାଶ ହୁଅ ନାହିଁ । ସ୍ମରଣ ରଖ, ଭଗବାନ ଗୀତାରେ କହିଛନ୍ତି—କର୍ମରେ ତୁମର ଅଧିକାର, ଫଳରେ ନୁହେଁ । ଅଣ୍ଟାଭିଡ଼ି ଠିଆହୁଅ । ବତ୍ସ ! ପ୍ରଭୁ ଆମ୍ଭମାନଙ୍କୁ ଏକାର୍ଯ୍ୟ କରିବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି । ଗଣ୍ୟମାନ୍ୟ ଉଚ୍ଚପଦସ୍ଥ ଅଥବା ଧନୀମାନଙ୍କ ଉପରେ କୌଣସି ଭରସା ରଖ ନାହିଁ । ସେମାନଙ୍କ ମଧ୍ୟରେ ପ୍ରାଣଶକ୍ତି ନାହିଁ—ସେମାନେ ଏକ ପ୍ରକାର ମୃତକଳ୍ପ କହିଲେ ଚଳେ । ଭରସା ତୁମମାନଙ୍କ ଉପରେ, ଏହି ପଦମର୍ଯ୍ୟାଦାହୀନ ନିର୍ଦ୍ଧନ, କିନ୍ତୁ ବିଶ୍ୱାସୀ ତୁମମାନଙ୍କ ଉପରେ । ଭଗବାନଙ୍କଠାରେ ବିଶ୍ୱାସ ରଖ । ଦୁଃଖୀ-ମାନଙ୍କ ବ୍ୟଥା ଅନୁଭବ କର । ଆଉ ଭଗବାନଙ୍କ ନିକଟରେ ସାହାଯ୍ୟ ପ୍ରାର୍ଥନା କର—ସାହାଯ୍ୟ ନିଶ୍ଚୟ ଆସିବ । ଦ୍ୱାଦଶ ବର୍ଷଧରି ମୁଁ ହୃଦୟରେ ଏହି ଭାବନା ନେଇ—ମୁଣ୍ଡରେ ଏହି ଚିନ୍ତା ନେଇ ବୁଲୁଛି । ମୁଁ ତଥାକଥିତ ଅନେକ ଧନୀ ଓ ବଡ଼ଲୋକଙ୍କ ଦ୍ୱାରସ୍ଥ ହୋଇଛି, ସେମାନେ ମୋତେ କେବଳ ଠକ ବୋଲି ମନେ କରିଛନ୍ତି । ହୃଦୟର ରକ୍ତ କ୍ଷରଣ କରି କରି ଶେଷରେ ଅର୍ଦ୍ଧପୃଥିବୀ ଅତିକ୍ରମ କରି ମୁଁ ଏହି ସୁଦୂର ବିଦେଶରେ ସାହାଯ୍ୟପ୍ରାର୍ଥୀ ଭାବରେ ଉପସ୍ଥିତ ହୋଇଛି । ମୁଁ ଏଦେଶରେ ଅନାହାର କିମ୍ବା ଶୀତରେ ମରିଯାଇ ପାରେ ; କିନ୍ତୁ ଏହି ଯୁବକଗଣ ! ମୁଁ ତୁମ-ମାନଙ୍କ ନିକଟରେ ଏହି ଗରିବ, ଅଜ୍ଞ, ଅତ୍ୟାଚାରିତ ପୀଡ଼ିତମାନଙ୍କ ପାଇଁ ସମସ୍ତ ପ୍ରକାର ସହାନୁଭୂତି ଓ ପ୍ରାଣ-ପଣ ଚେଷ୍ଟାର ଦାୟ ସ୍ୱରୂପ ଅର୍ପଣ କରୁଛି । ଯାଅ, ଏହି ମୁହୂର୍ତ୍ତରେ ସେହି ପାର୍ଥ ସାରଥୀଙ୍କ ମନ୍ଦିରକୁ ; ଯାଅ ତାଙ୍କ ନିକଟରେ ସାଷ୍ଟାଙ୍ଗ ହୋଇ ପଡ଼ିଯାଅ, ସେ ତାଙ୍କ ନିକଟରେ ଏକ ମହାବଳି ପ୍ରଦାନ କର—ଜୀବନକୁ ବଳି, ସେହିମାନଙ୍କ ପାଇଁ—ଯେଉଁମାନଙ୍କ ପାଇଁ ସେ ସ୍ୱୟଂ ଯୁଗେ ଯୁଗେ ଅବତୀର୍ଣ୍ଣ ହୋଇଥାନ୍ତି—ଯେଉଁମାନଙ୍କୁ ସେ ସର୍ବାପେକ୍ଷା ଭଲପାନ୍ତି, ସେହିଦୀନ ଦରିଦ୍ର ପତିତ ଉତ୍ପୀଡ଼ିତ ମାନଙ୍କ ପାଇଁ । ସ୍ୱାମୀଜୀ ଭାରତୀୟ ମାନଙ୍କ ସମ୍ମୁଖରେ ଘୋଷଣା କରିଥିଲେ ଯେ ଭାରତର ଜାତୀୟ ଆଦର୍ଶ ହେଉଛି ତ୍ୟାଗ ଓ ସେବା ଏବଂ ଏହି ଦୁଇ ଆଦର୍ଶକୁ ସାମନାରେ ରଖି, ଯେବେ କାମ କରିଗଲେ ଭାରତର ସର୍ବବିଧ ଉନ୍ନତି ସମ୍ଭବ ହେବ । ଭାରତର ଜଣେ ପ୍ରକୃତ ହିତାକାଂକ୍ଷୀ ନିଜର ସ୍ୱାର୍ଥ ତ୍ୟାଗ କରି ଜନଗଣଙ୍କ ପାଇଁ କାମ କରିବ । ଏପରି କର୍ମୀଙ୍କ ପକ୍ଷରେ ଅନ୍ଧ ପରାନୁକରଣ ଓ ଅନ୍ୟ ଜାତୀୟ ଦୁର୍ବଳତା ହିଂସା ଓ ଅନୁଶାସନ ହୀନତା ତ୍ୟାଗ କରିବାକୁ ପଡ଼ିବ ।

ସ୍ୱାମୀଜୀ ଯେପରିକି ଭାରତ ଆତ୍ମାର ଏକ ଘନୀଭୂତ ମୂର୍ତ୍ତି ଥିଲେ । ସେ ଘୋଷଣା କରିଥିଲେ—“ହେ ବୀର ! ସାହସ ଅବଲମ୍ବନ କର ; ସଦର୍ପରେ କୁହ—ମୁଁ ଭାରତବାସୀ, ଭାରତବାସୀ ମୋର ଭାଇ ; କୁହ—ମୂର୍ଖ ଭାରତବାସୀ, ଦରିଦ୍ର ଭାରତବାସୀ—ଚଣ୍ଡାଳ ଭାରତବାସୀ ମୋ ଭାଇ । ତୁମେ କଟିମାତ୍ର—ବସ୍ତ୍ରାବୃତ ହୋଇ ସଦର୍ପରେ କୁହ—ଭାରତବାସୀ ମୋର ଭାଇ, ଭାରତବାସୀ ମୋର ପ୍ରାଣ, ଭାରତର ଦେବ ଦେବୀ ମୋର ଆରାଧ୍ୟ—ଭାରତର ବନ ଅରଣ୍ୟ ମୋର ଯୌବନର ଉପବନ, ବାର୍ଦ୍ଧକ୍ୟର ବାରାଣସୀ ; କହ ଭାଇ—ଭାରତର ମୃତ୍ତିକା ମୋର ସ୍ୱର୍ଗ, ଭାରତର କଲ୍ୟାଣ ମୋର କଲ୍ୟାଣ” । ବିବେକାନନ୍ଦଙ୍କ ନିକଟରେ ମାତୃଭୂମି ସ୍ୱର୍ଗଠାରୁ ମଧ୍ୟ ଗରୀୟସୀ ଥିଲା । ବିଦେଶୀ ଶାସନର ଅପକାରିତା ସେ ମର୍ମେ ମର୍ମେ ଅନୁଭବ କରିଥିଲେ । ବିଦେଶୀ ଶାସକମାନେ ଯେ କେବଳ ଦେଶର ଆର୍ଥିକ ଶୋଷଣ କରନ୍ତି ତାହା ନୁହେଁ, ସେ ନିଜର ସଂସ୍କୃତି ଓ ଭାବଧାରା ଶାସିତ ଦେଶ ଉପରେ ଆରୋପ କରନ୍ତି । ଶାସକମାନଙ୍କ ଦାସତ୍ୱ ଫଳରେ ହିଂସା, ଭୟ, ବିଦ୍ୱେଷ ଓ ପର ନିର୍ଭରତା ପ୍ରଭୃତି ଦୋଷଗୁଡ଼ିକ ଆସିଥାଏ ଏବଂ ଦେଶର ସାଂସ୍କୃତିକ ବିକାଶ ହୋଇଯାଏ । ଇଂରାଜୀ ଶିକ୍ଷିତ ଯୁବକମାନେ

...ଙ୍କ ଶ୍ରେଣୀକୁ ଅନୁକରଣ କରିବାକୁ ଲାଗିଲେ ଓ ...ଜାତୀୟ ଜୀବନଠାରୁ ବିଚ୍ଛିନ୍ନ ହୋଇଗଲେ । ...ସାଧାରଣଙ୍କର ଦୁଃଖ କଷ୍ଟରେ କର୍ଣ୍ଣପାତ କଲେ ...। ଇଂରେଜୀ ଶାସନ ଫଳରେ ଭାରତର ପାର୍ଥିବ ...ଅପେକ୍ଷା ମାନସିକ କ୍ଷେତ୍ରର କ୍ଷତି ଅନେକ ବେଶୀ । ...ଇଂରେଜୀ ଶିକ୍ଷିତ ଯୁବକମାନଙ୍କ ପକ୍ଷରେ ଭାରତୀୟ ...ସଂସ୍କୃତି ଓ କୃଷ୍ଟିର ମହତ୍ତ୍ୱ ବୁଝିବା କଷ୍ଟକର । ମୁକ୍ତି ...ଆନ୍ଦୋଳନରେ ଅଂଶଗ୍ରହଣ କରିଥିବା ଜଣେ ବିଖ୍ୟାତ ...ଥରେ ମନ୍ତବ୍ୟ କରିଥିଲେ ଯେ, ଯେତେ ଦିନ ...ଯାଏ ପାଶ୍ଚାତ୍ୟ ଭାବଧାରାରେ ଶିକ୍ଷିତ ବ୍ୟକ୍ତିମାନେ ...ଙ୍କର ଶିକ୍ଷା ଓ ଶାସନଧାରା ଗ୍ରହଣ କରି ରହିଥିବେ, ...ସେତେଦିନ ଯାଏ ଭାରତର ଉନ୍ନତିର ଆଶା ଆଦୌ ...ନାହିଁ କହିଲେ ଚଳେ ।

...ଦେଶରେ ସାଧାରଣ ଲୋକେ ଶକ୍ତିବାଦୀ ନ ହେଲେ ...କେବେହେଲେ ଶକ୍ତିଶାଳୀ ହୋଇ ନ ପାରେ । ...ଦୂରର ବିଦେଶୀ ଆକ୍ରମଣକାରୀଙ୍କ ଦ୍ୱାରା ...ହୋଇଥିଲା । କାରଣ ସମାଜର ଉଚ୍ଚ ଶ୍ରେଣୀର ...ଶୋଷଣ ଫଳରେ ଜନସାଧାରଣ ଏହି ଆକ୍ରମଣ ...ରୋଧ କରିବାକୁ ସମର୍ଥ ହୋଇ ନ ଥିଲେ ।

(୩)

...ଆମ ଦେଶର ଅର୍ଥନୈତିକ ଉନ୍ନତି ପାଇଁ ସ୍ୱାମୀଜୀ ...ର ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାକୁ କାମରେ ଲଗାଇବା ...କହିଥିଲେ । ଦେଶର ସ୍ୱାଧୀନତା ପରେ ଆମ ...ଶାସନ ଏହି ଶିକ୍ଷାଲାଭର ପଥ ସୁଗମ କରିବା ...ଅପ୍ରାଣ ଚେଷ୍ଟା କରୁଛନ୍ତି । କିନ୍ତୁ ଏହି ...ରେ ଗୋଟିଏ ବଡ଼ ବିପଦର ଆଶଙ୍କା ଅଛି । ...ଏହି ଶିକ୍ଷାର ପଶ୍ଚାତରେ ଆମର କୌଣସି ...ତ୍ମିକ ପ୍ରେରଣା ନ ଥାଏ—ଯଦି ଆମେ ମାନବର ...ଗୋଟିଏ ଆଧ୍ୟାତ୍ମିକ ସତ୍ତା ଉପରେ ବିଶ୍ୱାସ ...ନ କରୁ । ଏହି ଆଧ୍ୟାତ୍ମିକ ପ୍ରେରଣାର ଅଭାବରେ ...ଏହି ବୈଜ୍ଞାନିକ ଜଡ଼ ସଭ୍ୟତାର ଏହି ...—ଏହି ସଭ୍ୟତା ମନୁଷ୍ୟର ଅଭାବ ପୂରଣ ...ଦୂରରେ ଥାଉ, ଏହା ଶକ୍ତିଶାଳୀ ହସ୍ତରେ ...କୁ ନିଷ୍ପେଷିତ କରିବାର ଏକ ଯନ୍ତ୍ର ସ୍ୱରୂପ ହୋଇ ...। ଆଧୁନିକ ବିଜ୍ଞାନର ଶିକ୍ଷା ସହିତ ଆମ ...ଆଧ୍ୟାତ୍ମିକ ଜ୍ଞାନ ଓ ମାନବ ପ୍ରତି ପ୍ରୀତି ...ଦୟା ଇତ୍ୟାଦି ସଦ୍‌ଗୁଣରାଜି ବିକଶିତ ନ ହେଲେ, ...ତୁଳନାରେ କ୍ଷତି ଅଧିକ ହେବ । ଗୀତାର ...ଶ୍ଳୋକରେ ଶ୍ରୀକୃଷ୍ଣ କହିଛନ୍ତି ଯେ, କ୍ଷାତ୍ରଶକ୍ତି ସହିତ ଆଧ୍ୟାତ୍ମିକ ଶକ୍ତିର ସମନ୍ୱୟ ସାଧିତ ନ ହେଲେ ଶ୍ରୀ, ବିଜୟ, ଭୂତ ଓ ନୀତି ଦେଶରେ ପ୍ରତିଷ୍ଠିତ ହୁଏ ନାହିଁ । ଶିକ୍ଷାଲାଭ ସହିତ ଏହି ଶିକ୍ଷାର ସଦୁପଯୋଗ କରିବା ସମ୍ବନ୍ଧରେ ମଧ୍ୟ ଆମମାନଙ୍କୁ ଜାଣିବାକୁ ହେବ । ବିଷଧର ସର୍ପର ବିଷଦାନ୍ତ ବାହାର ନ କରି ତାହାକୁ ଦୁଧ ପିଆଇ ପୁଷ୍ଟ କଲେ ଫଳ କଣ ହେବ ସମସ୍ତେ ଜାଣନ୍ତି । ଭାରତର ଇତିହାସରେ କେବେହେଲେ ବୁଦ୍ଧିବାଦୀ ମନୀଷୀମାନେ ଆମର ଆଧ୍ୟାତ୍ମିକ ସମ୍ପଦ ବିଷୟରେ ଏତେ ଅଜ୍ଞ ନ ଥିଲେ, ଯେତେ ପରିମାଣରେ ଆମେ ଆଜିକାଲି ଦେଖିବାକୁ ପାଉ । ଜାତୀୟ ଉନ୍ନୟନର କୌଣସି ପରିକଳ୍ପନା ଆମେ ଜନସାଧାରଣଙ୍କ ପ୍ରତି ସହାନୁଭୂତି ସମ୍ପନ୍ନ ନ ହେଲେ, କାର୍ଯ୍ୟକାରୀ ହେବ ନାହିଁ । ସ୍ୱାମୀଜୀ ଏହି ସହାନୁଭୂତିର କଥା ବାରମ୍ବାର କହି ଯାଇଛନ୍ତି । ଯିଶୁ ମଧ୍ୟ କହିଛନ୍ତି—Out of the fullness of heart the mouth speaketh, କେବଳ ମାତ୍ର ଜ୍ଞାନ ବା ଶିକ୍ଷାଲାଭ ଦ୍ୱାରା ଆମେ ଜନସେବାମୂଳକ କର୍ମ ପାଇଁ ପ୍ରେରଣା ପାଉ ନାହିଁ ବରଂ ଏହି ପ୍ରେରଣା ଆମେ ସହାନୁଭୂତିରୁ ହିଁ ଲାଭ କରି ଥାଉ ।

ସାଂସାରିକ ଉନ୍ନତି ପ୍ରତି ଉଦାସୀନ ରହି ଆଧ୍ୟାତ୍ମ ସାଧନ କରିବା ଆମର ଜାତୀୟ ଆଦର୍ଶ କେବେ ହେଲେ ନ ଥିଲା । ଭାରତ ଯେତେବେଳେ ଆଧ୍ୟାତ୍ମିକ କ୍ଷେତ୍ରରେ ଅତି ଉନ୍ନତି ଥିଲା ସେତେବେଳେ ତାର ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥା ମଧ୍ୟ ଉତ୍ତମ ଥିଲା । ବ୍ୟକ୍ତିଗତ ଭାବରେ ଦୟା, ଅହିଂସା ଓ ଆତ୍ମସଂଯମ ହିଁ ଆମର ଆଦର୍ଶ । ବହୁ କ୍ଷେତ୍ରରେ ଭାରତ ଜାଗତିକ ସମତାସାଧନ ତୁଳନାରେ ଆଧ୍ୟାତ୍ମିକ ସତ୍ୟ ସମୂହକୁ ଅଧିକ ମୂଲ୍ୟ ଦେଇଛି—ସାଂସାରିକ ଜ୍ଞାନ ଅପେକ୍ଷା ଆତ୍ମଜ୍ଞାନ ଉପରେ ଅଧିକ ଦୃଷ୍ଟି ଦେଇଛି । ଭାରତୀୟ ସାଧୁ ଓ ମହାପୁରୁଷଗଣ କିପରି ଭାବରେ ଆମେ ଭୋଗ ଓ ଯୋଗର ସ୍ତରରେ ଉନ୍ନତ ହୋଇ ପାରିବା ସେହି ପଥ ଦେଖାଉଛନ୍ତି—ଆମର ଆଦର୍ଶ ଭୋଗ ନୁହେଁ—ତାହା ତ୍ୟାଗ । ଅର୍ଥ ଓ କାମ ଧର୍ମରେ ପ୍ରତିଷ୍ଠିତ ହେଲେ ଜୀବର ମୋକ୍ଷସାଧନ କରିଥାଏ । ଭୋଗସର୍ବସ୍ୱ ଜୀବନରେ ଆମେ କୌଣସି ଶାନ୍ତି ପାଉ ନାହିଁ ।

କ୍ରମବିକାଶର ଗୋଟିଏ ସ୍ତରରେ ମାନବମନ ସୀମିତ ଜ୍ଞାନ ଓ ଆନନ୍ଦରେ ଅତୃପ୍ତ ହୋଇ ଅନନ୍ତ ଓ ଅସୀମ ସତ୍ତାର ସନ୍ଧାନରେ ପ୍ରବୃତ୍ତ ହୁଏ, ଯେପରିକି ଉପନିଷଦରେ ବର୍ଣ୍ଣିତ ଅଛି—'ଭୂମୈବ ସୁଖଂ ନାଲ୍ପେ

ଘୁମାଉଛି' । ପାଶ୍ଚାତ୍ୟ ଜଗତ ସାଂସାରିକ ସୁଖରେ ବୀତସ୍ପୃହ ହୋଇ ଯେତେବେଳେ ଅଧ୍ୟାତ୍ମିକ ଆଲୋକ ପାଇଁ ଭାରତର ଶରଣାପନ୍ନ ହେବ, ସେତେବେଳେ ଯେପରିକି ତାଙ୍କୁ ହତାଶ ନ କରି ଏହି ଗୁରୁ ଦାୟିତ୍ୱ ଭାରତକୁ ହିଁ ବହନ କରିବାକୁ ହେବ ସ୍ୱାମିଜୀ ତାହା ଜାଣିଥିଲେ । ତେଣୁ ସେ ଚିକାଗୋ ଧର୍ମ ମହାସଭାରେ ଘୋଷଣା କରିଥିଲେ, 'ପୂର୍ବ ଗଗନରେ ନକ୍ଷତ୍ର ଉଠିଥିଲା—କେତେବେଳେ ଉଜ୍ଜ୍ୱଳ ଓ କେତେବେଳେ ଅସ୍ପଷ୍ଟ ହୋଇ ଏହା ପଶ୍ଚିମ ଦିଗକୁ ଘୁଞ୍ଚିବାକୁ ଲାଗିଲା । କ୍ରମେ ସମସ୍ତ ଜଗତ ପରିଭ୍ରମଣ କରି ପୂର୍ବାପେକ୍ଷା ସହସ୍ର ଗୁଣ ଉଜ୍ଜ୍ୱଳ ହୋଇ ପୁନର୍ବାର ପୂର୍ବଗଗନରେ ସ୍ୟାନ୍ପୋ... ସୀମାନ୍ତରେ ଏହା ଉଦିତ ହୋଇଛି' ।

ସ୍ୱାମୀ ବିବେକାନନ୍ଦଙ୍କ ସ୍ମୃତି ଉଦ୍ଦେଶ୍ୟରେ ଦେଶ... ସର୍ବତ୍ର ବିଭିନ୍ନ ଧରଣର ଅନୁଷ୍ଠାନ ପ୍ରତିଷ୍ଠିତ ହୋ... କିନ୍ତୁ ଆମର ଉଦ୍ଦେଶ୍ୟ କେବଳ ସେତେବେଳେ... ପୂର୍ଣ୍ଣ ହେବ, ଯେତେବେଳେ ଆମେ ଭାରତର ସାଧା... ମାନବର କଲ୍ୟାଣ ପାଇଁ ନିଜ ଜୀବନକୁ ଉ... କରି ପାରିବୁ—ଏବଂ ବୀରେଶ୍ୱର ସ୍ୱାମୀ ବିବେକାନନ୍ଦ... ବ୍ୟକ୍ତିତ୍ୱର କିଂଚିତ ହେଲେ ସ୍ଫୁରଣ ଆମ ହୃଦୟ... ଘଟାଇ ପାରିବୁ ।

୧ । ବ୍ରହ୍ମପୁତ୍ର ନଦୀର ତିବ୍ବତୀ ନାମ ସ୍ୟାନ୍‌ପୋ ।

ରାମକୃଷ୍ଣ ମଠ
ବିବେକାନନ୍ଦ ମାର୍ଗ
ଭୁବନେଶ୍ୱର—୨

●



# ଆର୍ଯ୍ୟ ହରିହର ଓ ଗୋପବନ୍ଧୁ

ଶ୍ରୀ ବ୍ରଜେନ୍ଦ୍ର କୁମାର ମହାନ୍ତି

ଯୁଗେ ଯୁଗେ ଓଡ଼ିଆ ଜାତି କେବଳ ଭାରତବର୍ଷରେ ନୁହେଁ, ସମଗ୍ର ବିଶ୍ୱରେ ଗୋଟିଏ ପ୍ରତିଭା ଦୀପ୍ତ ବୀରଜାତି ରୂପରେ ପ୍ରତିଷ୍ଠା ଅର୍ଜନ କରି ଆସିଛି । ଭାଗ୍ୟର ବିଡ଼ମ୍ବନା ହେତୁ ଆଜି ସେହି ଗୌରବଦୀପ୍ତ ଜାତି ହୀନବଳ ହୋଇ ଯାଇଛି ସତ କିନ୍ତୁ ତା'ର ପ୍ରତିଭା ଚେତନା ବିଲୁପ୍ତ ହୋଇ ନାହିଁ । ଏ ଜାତି ଉପରେ ଗୋଟିଏ ପରେ ଗୋଟିଏ କେତେ ଆକ୍ରମଣ ହୋଇଯାଇଛି । ପୁଣି ଏ ଜାତିକୁ ପଙ୍ଗୁ କରିଦେବା ପାଇଁ ଇଂରେଜି ଅମଳରୁ ଏପର୍ଯ୍ୟନ୍ତ ତଥା ରାଜନୀତିକ ଦୃଷ୍ଟିକୋଣରୁ କେତେ ଅବହେଳା ହୋଇ ଆସିଛି । ରାଜନୈତିକ ଘଟାଟୋପଦ୍ୱାରା ଇତିହାସ ପ୍ରସିଦ୍ଧ ଉତ୍କଳ ଜନନୀ ଆଜି ବିଖଣ୍ଡିତ କଳେବର, ଶ୍ରୀହୀନା ତଥା ଛିନ୍ନମସ୍ତା । ତଥାପି ଏ ଜାତି ବଞ୍ଚିଛି । ଏ ଜାତିର ମହାପୁରୁଷଙ୍କ ଆଶୀର୍ବାଦ ନେଇ ଏ ଜାତି ବଞ୍ଚିବ ଯୁଗ ଯୁଗ ଧରି । ଆର୍ଯ୍ୟ ହରିହର ଦାସ ସେହି ମହାପୁରୁଷମାନଙ୍କ ମଧ୍ୟରୁ ଅନ୍ୟତମ ।

ସତ୍ୟବାଦୀର ପଞ୍ଚସଖା ଗୋଷ୍ଠୀର ପଞ୍ଚସଖା ହେଲେ ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ କୃପାସିନ୍ଧୁ ମିଶ୍ର ଓ ଆର୍ଯ୍ୟ ହରିହର ଦାସ । ସେମାନଙ୍କ ମଧ୍ୟରୁ ପଣ୍ଡିତ ନୀଳକଣ୍ଠ ଦାସ ଓ ପଣ୍ଡିତ ଗୋଦାବରୀଶ ମିଶ୍ର ଦେଶର ସ୍ୱାଧୀନତା ପରେ ଓ ପୂର୍ବେ ଶାସନ କ୍ଷମତାରେ ଥିଲେ । କିନ୍ତୁ ଅନ୍ୟ ତିନିଜଣ କ୍ଷମତା ରାଜନୀତିର ବହୁଦୂରରେ ଥିଲେ । ଏହି ପଞ୍ଚସଖାଙ୍କ ମଧ୍ୟରେ ଆର୍ଯ୍ୟ ହରିହର ଜ୍ୟେଷ୍ଠ ଥିଲେ ଓ ଓଡ଼ିଶାର ସୌଭାଗ୍ୟକୁ ତାଙ୍କର ମହାପ୍ରୟାଣ ସମସ୍ତଙ୍କ ପରେ ଘଟିଥିଲା । ତେଣୁ ତାଙ୍କର ଜୀବଦଶା ମଧ୍ୟରେ ଓଡ଼ିଶାର ଜାତୀୟ ଜୀବନର ବିଭିନ୍ନ ବିଭାଗରେ ସେ ଯେଉଁ ଦାନ ଦେଇ ଯାଇଛନ୍ତି ତାହା ଅବିସ୍ମରଣୀୟ ।

ଓଡ଼ିଶାର ଓଡ଼ିଆଙ୍କର ସୌଭାଗ୍ୟକୁ ପଣ୍ଡିତ ଗୋପବନ୍ଧୁ ଦାସଙ୍କର ଜନ୍ମଶତବାର୍ଷିକ ଉତ୍ସବ ମଧ୍ୟରେ ଆର୍ଯ୍ୟ ହରିହରଙ୍କ ଜନ୍ମଶତବାର୍ଷିକ ଉତ୍ସବ ପଡ଼ିଅଛି । ବୋଧହୁଏ ଏହା ଭଗବାନଙ୍କର ଇଚ୍ଛା । କାରଣ ଦୁଇଜଣ ଥିଲେ ଏକ ଓ ଅଭିନ୍ନ ଆତ୍ମା । ଦୁଇଜଣଯାକଙ୍କର ଉଦ୍ଦେଶ୍ୟ ଥିଲା ଗୋଟିଏ—ଗରିବ ଓ ଅସହାୟକୁ ସାହାଯ୍ୟ କରିବା ଏବଂ ଦୁର୍ବଳକୁ ଦରକାର ବେଳେ ସାହାଯ୍ୟ ଦେବା ।

ପଣ୍ଡିତ ଗୋପବନ୍ଧୁ ଦାସ ୯-୧୦-୧୮୭୭ ମସିହାରେ ସୁଆଣ୍ଡୋ ଗ୍ରାମରେ ଏକ କୁଳୀନ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ସେହିପରି ଆର୍ଯ୍ୟ ହରିହର ୨୭-୨-୧୮୭୮ ମସିହାରେ ଶ୍ରୀରାମଚନ୍ଦ୍ରପୁର ଶାସନରେ ଏକ କୁଳୀନ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ "ହରି ଆର୍ଯ୍ୟ" ନାମରେ ଓଡ଼ିଶାର ପୁରପଲ୍ଲୀରେ ସୁପରିଚିତ । ଖାଲି "ଆର୍ଯ୍ୟ" ନାମ ଉଚ୍ଚାରଣ କଲେ ଓଡ଼ିଶାରେ ଲକ୍ଷ ଲକ୍ଷ ଆର୍ଯ୍ୟ ଥିବା ସତ୍ତ୍ୱେ ଲୋକେ ତାଙ୍କୁ ହିଁ ବୁଝନ୍ତି । କିନ୍ତୁ ତାଙ୍କ ସମସାମୟିକ ବ୍ୟକ୍ତିମାନେ ତାଙ୍କୁ ହରି ଭାଇନା ନାମରେ ଡାକୁଥିଲେ । ତାଙ୍କ ଗୁଣମୁଗ୍ଧ ଓଡ଼ିଆମାନଙ୍କ ମଧ୍ୟରେ ସେଥିଲେ "ଆର୍ଯ୍ୟ ମହାଶୟ" ।

ନିଜ ଗୁଣରେ ତୁଳସୀ ଦୁଇପତ୍ରରୁ ଜଣାପଡ଼ିଲା ଭଳି ହରିହର ଯେ ଜଣେ ସମାଜ-ସେବକ ହେବେ ଏହା ତାଙ୍କ ବାଲ୍ୟ ଜୀବନରୁ ପ୍ରତୀତ ହୋଇଥିଲା । ପୁରୀ ଜିଲ୍ଲା

ସ୍କୁଲରେ ଗୋପବନ୍ଧୁ ଓ ହରିହର ସମସାମୟିକ ଥିଲେ । ଜନସେବା ଥିଲା ତାଙ୍କ ଜୀବନର ପ୍ରଥମ ବ୍ରତ । ଜନତା ଭିତରେ ସେ ଜନାର୍ଦ୍ଦନଙ୍କୁ ଦେଖି ପାରୁଥିଲେ । ଏକାଧାରରେ ସେ ଥିଲେ ବିପ୍ଳବୀ, ସଂସ୍କାରକ ଓ ଆଦର୍ଶ ଶିକ୍ଷକ । ଜଗତର ନାଥ ଜଗନ୍ନାଥ ମହାପ୍ରଭୁଙ୍କ ପବିତ୍ର ରଥଯାତ୍ରାରୁ ଫେରି ଯେଉଁ ଯୁଗରେ ହଜାର ହଜାର ଲୋକ ପଥରେ ନିଃସ୍ୱ ହଇଜା ରୋଗରେ ମୃତ୍ୟୁ ବରଣ କରିଥିଲେ, ସେ ଯୁଗରେ ଆଚାର୍ଯ୍ୟ ମହାଶୟଙ୍କୁ ଦେଖିଲେ ମନେ ହେଉଥିଲା ଯେପରି ସେ ଅସହାୟର ଉଦ୍ଧାର ଲାଗି ଉତ୍କଳରେ ଜନ୍ମ ଗ୍ରହଣ କରିଅଛନ୍ତି । ସେଥିପାଇଁ ଗୋପବନ୍ଧୁ ଓ ହରିହର ପୁରୀରେ ଗୋଟିଏ ସ୍ୱେଚ୍ଛାସେବକ ଦଳ ଗଠନ କରି ଏହି ହଇଜା ରୋଗୀଙ୍କର ସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ସେମାନେ ବ୍ରାହ୍ମଣ ହେଲେ ବି ସମସାମୟିକ କୁସଂସ୍କାରର ଉର୍ଦ୍ଧ୍ୱକୁ ଯାଇ ଯେ କୌଣସି ହଇଜା ରୋଗୀର ସେବା, ମୃତ ବ୍ୟକ୍ତିର ଶବ ସଂସ୍କାର ବିଷୟରେ ତିଳେମାତ୍ର ଇତସ୍ତତ ହେଉ ନଥିଲେ ।

ହରିହର ଜଣେ ଦରିଦ୍ର ବ୍ରାହ୍ମଣ ସନ୍ତାନ ଥିଲେ । ତେଣୁ ବେଶୀ ପାଠ ପଢ଼ିବା ତାଙ୍କ ପକ୍ଷରେ ସମ୍ଭବପର ହୋଇନଥିଲା । ସେ କେବଳ ଏଫ୍. ଏ. ପାଶ୍ କରିଥିଲେ । କିନ୍ତୁ ଯେତେବେଳେ ଗୋପବନ୍ଧୁ ଦାଶଙ୍କୁ ପ୍ରସ୍ତାବିତ ନୀଳଗିରି ଉଚ୍ଚ ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକତା ଉମାଚରଣ ଦାସଙ୍କ ପରେ ଗ୍ରହଣ କରିବାକୁ ପଡ଼ିଲା ସେତେବେଳେ ସେ ହରିହର ଦାସଙ୍କୁ ନିଜର ସହକର୍ମୀ-ରୂପେ ଗ୍ରହଣ କରିନେଇଥିଲେ । ଗୋପବନ୍ଧୁ ଥିଲେ ପ୍ରଧାନ ଶିକ୍ଷକ ଓ ଆଚାର୍ଯ୍ୟ ହରିହର ସହକାରୀ ଶିକ୍ଷକ । ବିଦ୍ୟାଳୟ ପରିସର ମଧ୍ୟରେ ସେମାନେ ଯେ କେବଳ ଅଧ୍ୟାପନ ଓ ଅଧ୍ୟୟନ କରୁଥିଲେ ତାହା ନୁହେଁ, ସେମାନଙ୍କର ମୁଖ୍ୟ କାର୍ଯ୍ୟ ଥିଲା ବିଦ୍ୟାଳୟ ପରିସର ବାହାରେ । ସେମାନେ ଗୋଟିଏ ସ୍ୱେଚ୍ଛାସେବକ ବାହିନୀ ଗଠନ କରି ଆର୍ତ୍ତ ସେବାରେ ନିଜକୁ ନିୟୋଜିତ କରିଥିଲେ । ଥରେ ଜଣେ ପଶ୍ଚିମା ମହିଳା ଯାତ୍ରୀ ନିଜ ରୁଗ୍ଣ ପୁଅକୁ ସାଙ୍ଗରେ ଧରି ଜଗନ୍ନାଥ ସଡ଼କରେ ଘରକୁ ଫେରୁଥିଲେ । ରାସ୍ତା ମଧ୍ୟରେ ପୁଅର ଅବସ୍ଥା ସାଂଘାତିକ ହେଲା । ସାନ୍ଧ୍ୟ ଭ୍ରମଣବେଳେ ଏହି ଦୁଇଶିକ୍ଷକ ବୁଢ଼ୀର ନିରାଶ୍ରୟ ଅବସ୍ଥା ଦେଖି ରୋଗୀର ସେବା କଲେ, କିନ୍ତୁ ସେ ମରିଗଲା । ଦୁଇଜଣ ଶିକ୍ଷକ ଶବକୁ ଉଠାଇ ସଂସ୍କାର କରିବାକୁ ଉଦ୍ୟତ ହୁଅନ୍ତେ ଦୁଇଜଣ ବିଜାତୀୟ ଲୋକେ ତା ପୁଅକୁ ସ୍ପର୍ଶ କରିବା ଉଚିତ ନୁହେଁ ବୋଲି ବୁଢ଼ୀ ପ୍ରତିବାଦ କରି ସେମାନଙ୍କୁ ଶବକୁ ଛୁଇଁ ଦେଲା ନାହିଁ ।

କିନ୍ତୁ ବୁଢ଼ୀର ଏହି ଅବସ୍ଥାରେ ଏକ ପକ୍ଷରେ ଜାତିର ଅହମିକା ଓ ଅନ୍ୟପକ୍ଷରେ ନିରାଶ୍ରୟ ଅବସ୍ଥାରେ ପଡ଼ି ଆସିବା ଲାଗି ଦୁଇ ଶିକ୍ଷକ କାଠ ଯୋଗାଡ଼ କରି ଆଣି ଏବଂ ଶବରେ ଅଗ୍ନି ସଂଯୋଗ କରିବା ଲାଗି ବୁଢ଼ୀକୁ କହିଲେ । ଶବଦାହ ହୋଇଗଲା । କିନ୍ତୁ ଏହାର ପ୍ରତିକ୍ରିୟା ପ୍ରବଳ ସେ ଅଞ୍ଚଳରେ ସୃଷ୍ଟି ହେଲା । ନୀଳଗିରି ସହରରେ ଓ ଆଖପାଖରେ ବହୁ ନୈଷ୍ଠିକ ବ୍ରାହ୍ମଣ ପରିବାର ବାସ କରନ୍ତି । ବ୍ରାହ୍ମଣ ଶିକ୍ଷକ ସେମାନଙ୍କ ପିଲାମାନଙ୍କୁ ବ୍ରାହ୍ମଣବିରୋଧୀ ଭାବଧାରାରେ ଅନୁପ୍ରାଣିତ କରୁଥିବା ହେତୁ ସେମାନେ ଯେ କେବଳ ସେ ଦୁହିଁଙ୍କୁ ବାସନ୍ଦ କଲେ, ସେତିକି ନୁହେଁ, କ୍ରମେ ନିଜ ପିଲାମାନଙ୍କୁ ବିଦ୍ୟାଳୟରୁ ନେଇଗଲେ । ଫଳରେ ଦୁଇଜଣ ଶିକ୍ଷକ ନିଜ ଜୀବନର ଉଦ୍ଦେଶ୍ୟ ବିଫଳ ହେଉଥିବା ଦେଖି ସେମାନେ ନୀଳଗିରି ବିଦ୍ୟାଳୟ ପରିତ୍ୟାଗ କଲେ । ଗୋପବନ୍ଧୁ ଓକିଲାତି କଲେ ଓ ହରିହର ପ୍ୟାରିମୋହନ ଏକାଡେମୀରେ ଶିକ୍ଷକତା ଆରମ୍ଭ କଲେ ।

ଗୋପବନ୍ଧୁ ଓ ହରିହର ପିଲାଦିନୁଁ ଦେଶ ସେବା କରିବା ଲାଗି ମନସ୍ଥ କରିଥିଲେ । ସେଥିପାଇଁ ନୀଳକଣ୍ଠ, ହରିହର ଓ ଅନନ୍ତ ମିଶ୍ର ଗୋପବନ୍ଧୁଙ୍କ ସହିତ ପରୀକ୍ଷା ଅବସରରେ ସୁଆଣ୍ଡୋ ଗ୍ରାମରେ ବହିଯାଉଥିବା ଭାର୍ଗବୀ ନଦୀ କୂଳରେ ବସି ଦେଶସେବା ବ୍ରତ ଗ୍ରହଣ କରିବେ ବୋଲି ସଂକଳ୍ପ କରିଥିଲେ । ଗୋପବନ୍ଧୁ ପାଠ ପଢ଼ିବା ବେଳେ ଗୋଟିଏ ସ୍ୱେଚ୍ଛାସେବକ ବାହିନୀ ଗଠନ କରିବା ପାଇଁ ଏକ ନାମ ତାଲିକା ଗଠନ କରିଥିଲେ । ତାଙ୍କର ମୂଳ ଉଦ୍ଦେଶ୍ୟ ଥିଲା ଏହି ସ୍ୱେଚ୍ଛାସେବକ ମାନଙ୍କୁ ଗ୍ରାସାଚ୍ଛାଦନ ଦେଇ ଅଳ୍ପ ବ୍ୟୟରେ ସେମାନଙ୍କୁ ବିଭିନ୍ନ ସ୍କୁଲ ପ୍ରତିଷ୍ଠା କରି ସେଥିରେ ନିଯୁକ୍ତି ଦେବା, ଏହି ଆଦର୍ଶରେ ସେ ୧୯୦୯ ମସିହାରେ ଭକ୍ତକବି ମଧୁସୂଦନଙ୍କ ପରାମର୍ଶରେ ସାକ୍ଷୀଗୋପାଳ ବନବିଦ୍ୟାଳୟ ଆରମ୍ଭ କରିଥିଲେ । ଏହି ବିଦ୍ୟାଳୟ ଆରମ୍ଭ ହେବା ମାତ୍ରକେ ହରିହର ପ୍ୟାରୀମୋହନ ଏକାଡେମୀର ଶିକ୍ଷକତା ତ୍ୟାଗ କରି ନିଜ ଗ୍ରାମ ସମୀପବର୍ତ୍ତୀ ଏହି ଅନୁଷ୍ଠାନରେ ଶିକ୍ଷକତା ଆରମ୍ଭ କଲେ ।

ହରିହର ଜଣେ ନୈଷ୍ଠିକ ଓ ଶୃଙ୍ଖଳା ପ୍ରିୟ ଶିକ୍ଷକ ଥିଲେ । ଛାତ୍ରମାନେ ବିଦ୍ୟାଳୟରେ ଅଧ୍ୟୟନ କରନ୍ତି ସତ୍ୟ, କିନ୍ତୁ ଛାତ୍ରାବାସରେ ସେମାନଙ୍କ ଚରିତ୍ର ଗଠିତ ହୁଏ । ହରିହରଙ୍କ ଶୃଙ୍ଖଳାପ୍ରିୟତା ଯୋଗୁଁ ଗୋପବନ୍ଧୁ ତାଙ୍କୁ ଛାତ୍ରାବାସରେ ତତ୍ତ୍ୱାବଧାରକ ବା ଆଚାର୍ଯ୍ୟରୂପେ ନିଯୁକ୍ତ କଲେ । କାଳକ୍ରମେ ଜ୍ୟେଷ୍ଠତାନୁଯାୟୀ ଆଚାର୍ଯ୍ୟ ହରିହର ବନବିଦ୍ୟାଳୟର ପ୍ରଧାନଶିକ୍ଷକ ପଦ ଅଳଙ୍କୃତ

ରେମ । ଆଚାର୍ଯ୍ୟ ହରିହର ସ୍କୁଲର ପ୍ରତ୍ୟେକ କାର୍ଯ୍ୟରେ ଗୋପବନ୍ଧୁଙ୍କ ପରାମର୍ଶ ଗ୍ରହଣ କରୁଥିଲେ । ତାଙ୍କ ଭାଷାରେ "ହାରେଣ ଆପଣେ ଯେଉଁଠି ଅଛନ୍ତି ସେଠି ମୁଁ ଛାର ମୁଁ" ଅପରିଣତ ବୟସରେ ଗୋପବନ୍ଧୁଙ୍କ ମହାପ୍ରୟାଣ ହୋଇଗଲା କିନ୍ତୁ ଶେଷ ପର୍ଯ୍ୟନ୍ତ ହରିହର ସେହିଠାରେ ମାଟି କାମୁଡ଼ି ରହିଲେ । ଶେଷରେ ଗୋପବନ୍ଧୁଙ୍କ ସହିତ ସେ କଂଗ୍ରେସ ଆନ୍ଦୋଳନରେ ଝାସ ଦେଲେ । ୧୯୨୮ରେ ଗୋପବନ୍ଧୁଙ୍କର ମୃତ୍ୟୁହେଲା । ତତ୍ପରେ ତାଙ୍କ ଉପରେ କଂଗ୍ରେସର ଦାୟିତ୍ୱ ପଡ଼ିଲା । ସେ ୧୯୩୦ରେ ଲୁଣମରା ଆନ୍ଦୋଳନରେ ନେତୃତ୍ୱ ନେଇଥିଲେ । ଦେଶ ସ୍ୱାଧୀନତା ପରେ ସେ ଗଠନାତ୍ମକ କାର୍ଯ୍ୟରେ ଯୋଗ ଦେଇଥିଲେ ଓ ତାଙ୍କର ମହାପ୍ରୟାଣ ହୋଇଥିଲା ୧୯୬୧ ମସିହାରେ ।

ଆଚାର୍ଯ୍ୟ ହରିହର ଓ ପଣ୍ଡିତ ଗୋପବନ୍ଧୁ ସମସାମୟିକ ଜାତୀୟ ଚେତନାର ଦୁଇଟି ମାଇଲ୍ ଖୁଣ୍ଟ । ଦୁଇଜଣଙ୍କର ଚରିତ୍ରରେ ଅନେକ ସାମଞ୍ଜସ୍ୟ ଦେଖାଯାଏ । ଦୁଇଜଣ-ଯାକ ବିନୟର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ । ପ୍ରତ୍ୟେକଙ୍କର ଲକ୍ଷ୍ୟ ହେଲା ନିରାଶ୍ରୟ ଓ ଅସହାୟଙ୍କର ସେବା । ସେହି ଉଦ୍ଦେଶ୍ୟରେ ହିଁ ସେମାନେ ଜୀବନସାରା ତାହାର ପ୍ରଚେଷ୍ଟା କରିଥିଲେ । ସେଥିପାଇଁ ଶେଷ ଜୀବନରେ ଆଚାର୍ଯ୍ୟ ହରିହରଙ୍କଠାରୁ କେହି ଯଦି କିଛି ଉପଦେଶ ଗ୍ରହଣ କରିବାକୁ ଆସୁଥିଲେ ସେମାନଙ୍କୁ ସେ କେବଳ କହୁଥିଲେ "ଭଲ ମଣିଷ ହୁଅ" । ଗୋପବନ୍ଧୁଙ୍କର ଜୀବନରେ ମଧ୍ୟ ସେହି ଗୋଟିଏ ଆଦର୍ଶ ଥିଲା । ପ୍ରଥମେ ପ୍ରତ୍ୟେକ ଜଣେ ଭଲ ମଣିଷ ହେବା ଉଚିତ । ଆଚାର୍ଯ୍ୟ ହରିହର ପଣ୍ଡିତ ଗୋପବନ୍ଧୁଙ୍କୁ ନିଜର ଅଗ୍ରଜ ତୁଲ୍ୟ ଭକ୍ତି ଓ ସ୍ନେହ କରୁଥିଲେ । ସେ କହୁଥିଲେ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ପାଖରେ ସେ କିଛି ନୁହଁନ୍ତି । କିନ୍ତୁ ସୁବର୍ଣ୍ଣ ପାଖରେ ରହିଲେ ଯେପରି ସୁବର୍ଣ୍ଣର ରୂପ ଓ ଗୁଣ ବୃଦ୍ଧି ପାଏ ସେହିପରି ଆଚାର୍ଯ୍ୟ ମହାଶୟ ଓ ଗୋପବନ୍ଧୁଙ୍କ ପାଖରେ ଯିଏ ରହୁଥିଲେ, ସେମାନେ ତାଙ୍କ ଦ୍ୱାରା ଅନୁପ୍ରାଣିତ ହେଉଥିଲେ । ସେମାନେ ଦୁହେଁ ଥିଲେ ଅଭିନ୍ନ ଆତ୍ମା । ତେଣୁ ଗୋପବନ୍ଧୁଙ୍କ ଜୀବାବସାନ ପରେ ଅନେକଦିନ ପର୍ଯ୍ୟନ୍ତ ଆଚାର୍ଯ୍ୟ ହରିହର ଦୁଃଖରେ ମୁହ୍ୟମାନ ହୋଇପଡ଼ିଥିଲେ ।

ଆଚାର୍ଯ୍ୟ ହରିହର ଓ ଗୋପବନ୍ଧୁ ଓଡ଼ିଶାର ଦୁଇଟି ଉଜ୍ଜ୍ୱଳ ଜ୍ୟୋତିଷ୍କ । ଯେଉଁମାନେ ନିଜର ଉଜ୍ଜ୍ୱଳତାରେ ଚିର ଭାସ୍ୱର, ସେମାନଙ୍କର ସେହି ଆଲୋକରେ ଆଲୋକିତ ହୋଇ ପ୍ରତ୍ୟେକ ଓଡ଼ିଆ ତାଙ୍କର ଜନ୍ମଶତବାର୍ଷିକୀରେ ନିଜକୁ ଗୋଟିଏ ପ୍ରଶ୍ନ ପଚାରିବା ଉଚିତ—"ମୁଁ ଜଣେ ଭଲ ମଣିଷ ତ ?" ତାହାହେଲେହିଁ ସେମାନଙ୍କର ଜନ୍ମ ଶତବାର୍ଷିକୀ ଉତ୍ସବ ପାଳନ କରିବାରେ ସାର୍ଥକ ରହିବ ।

ଜୟ ଜଗନ୍ନାଥ

ସମ୍ପାଦକ ଆଚାର୍ଯ୍ୟ ହରିହର
ସ୍ମୃତି ସଂସଦ, ଭୁବନେଶ୍ୱର



# ମୁଁ ତା'ର ବନ୍ଦନା ଗାଏ

ରାମକୁମାର ଅଗ୍ରୱାଲ

୧

## ମୁଁ ତା'ର ବନ୍ଦନା କରେ

**

ଆଖିର ଆକାଶେ ଯିଏ,
ଦେଇଗଲା, ଉଷାର ନୂତନ ସକାଳ,

ମନର ଅଂଧାର କକ୍ଷେ,
ଜାଳିଲା ଯେ ଅଲିଭା ପ୍ରଦୀପ ।

ସେ ତ ଖାଲି ଫୁଲ ନୁହେଁ,
ଶରୀର ଆଘ୍ରାଣ ।

ବ୍ୟଥା ଆଉ ବେଦନାର ବୋଝ ବୋହି
ଗାଇଲା ଯେ—ଶୁଭଙ୍କରୀ-ଗାନ,

ଦୁଃଖର ଅଗାଡେ ସିଏ ନିତି ଲଭେ—
ନୂତନ ଜୀବନ ।

ଗୋପବନ୍ଧୁ ଦାସ ସେତ
ଅମୃତ-ସଂତାନ .... ॥

ମାଟିର ମଣିଷ କରେ ଆର୍ତ୍ତକଣ୍ଠେ ତାହାରି ବଂଦନା!
ମୁଁ ତା'ର ବଂଦନା କରେ ଶତକଣ୍ଠେ ....

ତା' ଦୃଷ୍ଟି ସଂଘରେ.....
ଚୁଆଣ୍ଡୋରୁ ସତ୍ୟବାଦୀ କେତେ ଦୂର ....

ବାଂଧିଲା ଯେ, ସନାତନ ସେତୁବଂଧ,—
ମଣିଷ ମନରେ,

ପର ସେବା ଆବୋରିଲ୍ ଏକାନ୍ତ ନିଜରେ
ଆପଣାକୁ ନିଃସ୍ୱ କରି ଅନ୍ୟ ମୁଖେ—

ଦେଲ୍ ଯିଏ ହସ ଓ ଆହାର,
ବଂଚିବାର ନୂଆ ମନ୍ତ୍ର—ନୂତନ ସ୍ୱାକ୍ଷର ।

ଆଜିବି ସେ ଏ ଦେଶର ସିଂହଦ୍ୱାର ପାଶେ ଠିଆ,
ଜାଗ୍ରତ ପ୍ରହରୀ ପରି ଦେଉଅଛି ନୂତନ ନିର୍ଦ୍ଦେଶ ଆଉ ପୁଣ୍ୟ ବରାଭୟ ।

ହେ ସାରଥି !
ପ୍ରଗତିର ରଥଚକ୍ର ଥମିଗଲ୍ ବେଳେ,

ଶୀଥିଳ ପ୍ରାଣରେ ଦିଅ—
ପ୍ରଗତିର ନିତ୍ୟ ପ୍ରଚ୍ଛେଦନା ।

ତୁମ କୀର୍ତ୍ତି ଜନ୍ମ ଲଭେ,
ପ୍ରତିଟି ସକାଳେ,

ତୁମ ସ୍ମୃତି ରୂପ ନିଏ.....
ଦୁର୍ଗତି ପ୍ରହରେ.....

ତୁମ କଥା ମନେ ପଡ଼େ.....
ମହାମାରୀ.....ନଈ ବଢ଼ି ଗୋଳିଆ ପାଣିରେ ।

କର୍ମ-କ୍ଳାନ୍ତ.... ବିଷର୍ଣ୍ଣ ବେଳାରେ.....
ତୁମ କଣ୍ଠୁ ଭଗବତ ଶୁଣିବାକୁ ଥରେ ।

ହେ ଦେବତା, ତୁମ ପୂଜା କରିବି କିପରି,
ଏ ସ୍ଥବିର ଜାତି ପ୍ରାଣେ

ନବ ଅଭିଷେକ ଆଜି,—
କରିବି ତୁମରି ॥
ସମଗ୍ର ଓଡ଼ିଆ ଜାତି ହେଉ ଯେହ୍ନେ ଗୋପବନ୍ଧୁ ମୟ ।

୨

## ତୁମ ଆଖି

**

ସେ ଆଖିର ନିମନ୍ତ୍ରଣ,
ସେ ଆଖିର ନୀରବ ଆହ୍ୱାନ;

ମୋତେ କରେ ନିର୍ବାକ ....ଅଧୀର..... ।
କେତେଦିନ ଲୁଚିଥିବ ପ୍ରଶ୍ନେ, ।

ଆଲୁଅ ଓ ଅନ୍ଧାରର ଲୁଚକାଳି ଖେଳ,
ପାପ-ପୁଣ୍ୟ ବଜାରରେ ବିକ୍ରି ହୁଏ—

ସମାନ ଦରରେ,
ସତ୍ୟର ନିଲାମ ହୁଏ ବିଚ୍ ବଜାରରେ,
ତୁମରି ସାମ୍ନାରେ ଆଉ ଅଖି ପିଛୁଳାରେ..... ।

ମନ୍ଦିର ଭିତରେ ଯିଏ ତୁମ ପଛ ପଟେ—
ହାତ ନାହିଁ । ପାଦ ନାହିଁ,
ତା'ର ବଡ଼ା ଆଖି ଡୋଳା—,
କି ଦେଖୁଛି ଯୁଗ-ଯୁଗାନ୍ତରେ,
ଯୁଗର ଯନ୍ତ୍ରଣା ଆଜି ରୂପ ନିଏ,—
ଅରୂପ ଦେହରେ ।

ମନର ଅକୁହା କଥା କିଏ କୁହେ—
ଅବ୍ୟକ୍ତ ଭାଷାରେ ?

ରୂପ ଓ ଅରୂପ ଦୁହେଁ ଏକାକାର ହୋଇଯାଏ,
ସମାନ୍ତରାଳ ଗତିରେ
କେନ୍ଦ୍ରବିନ୍ଦୁ—ପରିଧି ଭିତରେ,
କି ଦେଖୁଛ ପ୍ରଶ୍ନେ ତୁମେ ।
ଏ ଅସତ୍ୟ-ସହରର ଜନଗହଳିରେ ।

ତା' ହାତର ନଟୁ ପରି ମନ ମୋର ସ୍ଥିର ନୁହେଁ,
ସମୟର ଆମଳରେ ହୁଏ ଗତିଶୀଳ
ବିଗତ କାଲିର ମୁହିଁ,
ମରି ଅଛି । ଆଜି ପାଇଁ ।

ଅସନ୍ତା କାଲିର ପାଇଁ,
ଖୋଜୁଅଛି ନୂଆ ରୂପ, ନୂଆ ନୂଆ ଖୋଳ ।
ଖୋଲ ଭିତରର ମୁଖା,
କାହିଁକି ଚିହ୍ନ ମୋତେ ।

ମୁଁ କ'ଣ ଗାଇବି ନାହିଁ
ମୁଁ କ'ଣ କହିବି ନାହିଁ
ମୁଁ କ'ଣ ଜାଣିବି ନାହିଁ
କିଏ ମୁହିଁ ?

ମୁଁ କି ସତେ ଜାଣେ ନାହିଁ ମୋହରି ସ୍ୱାକ୍ଷର,
ପ୍ରତିଦିନ ନୂଆରୂପ ଦେଉଅଛି—,
ମୋର ହସ୍ତାକ୍ଷର ।

ସ୍ଥିର ଓ ନିର୍ବାକ ଆଖି—
ଇସାରା କି ଦେଉଅଛି ଆଗାମୀ କାଲିର ....
ନୂଆ ସୂର୍ଯ୍ୟ ଉଦେ ହେବେ ....
ମୋ ରୂପଠୁଁ ଅରୂପକୁ କରିବାକୁ ଦୂର ....
ମୋ ମନ ଓ ଅନ୍ତରାତ୍ମା ପରସ୍ପର.....
ହେବେ ଏକାକାର..... ।।

କଳ୍ପନା ଭବନ, ବଲାଙ୍ଗିର

ବେଶ୍ ଦୀର୍ଘ ଶରୀର—ବୟସ ଷାଠିଏରୁ ଖୁବି-କମ୍—ଦେହ ରହିଛି ଆଜି ସୁଦ୍ଧା ସରଳ, କର୍ମଠ, ସୁସ୍ଥ ଓ ସବଳ । ନାକତଳେ ଖୁବ୍ ସରୁ ଧଳେ ନିଶ । କପାଳରେ ସାମାନ୍ୟ ସିନ୍ଦୁର । ମଦନପୁର-ରାମପୁର ମନ୍ଦିରର ଗଭାରେ ସଂପୂଜିତା ଡାକେଶ୍ୱରୀ ଠାକୁରାଣୀଙ୍କ ଆଶୀର୍ବାଦି ସିନ୍ଦୁର ପ୍ରସାଦ । ଫୁଲପ୍ୟାଣ୍ଟ ଓ ହାଉଁାଇ ସାର୍ଟ ପିନ୍ଧା ଏହି ଯୁବାପ୍ରୌଢ଼ ବ୍ୟକ୍ତିଙ୍କୁ ଆପଣ ଦେଖିବେ କଳାହାଣ୍ଡି ଜିଲ୍ଲାର ମଦନପୁର-ରାମପୁର ଗ୍ରାମରେ । ଚେହେରା ଖୁବ୍ ଉଜ୍ଜ୍ୱଳ ଦ୍ରବ୍ୟଙ୍କ 'ଏଵଂ' ଆଦେଶ ଦେଲାଭଳି । ଚଷମା ପଛପଟେ ଆଖିର ଚାହାଣୀ ଖୁବ୍ ଦୃଢ଼ ଆକର୍ଷଣୀୟ ଓ ଜୀବନଶକ୍ତି ପରିପୂର୍ଣ୍ଣ । ଚଟାପଟ କଥା କହିବା ଶୈଳି—ସିଧାସଳଖ କଥା ।



# ସେ କାଳର ଜମିଦାର ଆଜି ଜଣେ ଭଲ କୃଷକ

ଶ୍ରୀ ଯୋଗେଶ ଚନ୍ଦ୍ର ସିଂହଦେଓ

ସେଦିନ ତାଙ୍କ ସଙ୍ଗେ ଭେଟ ହେଲା ମଦନପୁର-ରାମପୁର-ଠାରେ ଅନୁଷ୍ଠିତ ହୋଇଥିବା ଜିଲ୍ଲାସ୍ତରୀୟ ଶ୍ରୀଅରବିନ୍ଦ ସମ୍ମିଳନୀରେ । ସେ ଥିଲେ ସେଥିରେ ମୁଖ୍ୟ ଉଦ୍ୟୋକ୍ତା ଓ ଅଭ୍ୟର୍ଥନା ସଙ୍ଘରେ ସଭାପତି । ପ୍ରାୟ ଦେଢ଼ଶତ ପ୍ରତିନିଧି ଜିଲ୍ଲାର ଭିନ୍ନଭିନ୍ନ ଅଞ୍ଚଳରୁ ଆସିଥାନ୍ତି । ତିନିଦିନ ରହିବେ । ସେମାନଙ୍କ ଭିତରେ ନାରୀ, ପୁରୁଷ, ବାଳକ, ବାଳିକା ସମସ୍ତେ ଅଛନ୍ତି । ସେମାନଙ୍କର ରହିବା, ଖାଇବା, ଶୋଇବା ଓ ସଭାରେ ଯୋଗଦେବା ଆଦି ସମସ୍ତ ଝଞ୍ଜାଳ ବୁଝୁଥାନ୍ତି ସେଇ ଜଣକ ଯୋଗେଶ ବାବୁ । ଅବଶ୍ୟ ଏ ସବୁ କଥା ଖୁବ୍ ଶୃଙ୍ଖଳିତ କେତେଜଣ କର୍ମୀଙ୍କ ଉପରେ ନ୍ୟସ୍ତ ଥାଏ । ମାତ୍ର ଯୋଗେଶ ବାବୁ ସବୁ କଥାର ଆଗରେ ଓ ଶେଷରେ । ତାଙ୍କ ମନରେ ମହାଚିନ୍ତା ଯେମିତି ଅତିଥି ଚର୍ଚ୍ଚା ବା ସଭା ଆୟୋଜନ ବ୍ୟବସ୍ଥାରେ ଏମିତି କିଛି ତ୍ରୁଟି ନ ହୁଏ, ଯଦ୍ଦ୍ୱାରା ମଦନପୁର-ରାମପୁର ଅଞ୍ଚଳର ଦୁର୍ନାମ ହୋଇଯିବ ।

ସେଇଠି ତାଙ୍କୁ ଭେଟିଲି । ସାମାନ୍ୟ ଉଚ୍ଚତା ବି

ହେବ । ବେଶ୍ ସରଳ ସ୍ୱଚ୍ଛନ୍ଦ ବ୍ୟକ୍ତି । ସେ ମଦନପୁର-ରାମପୁର ଜମିଦାର ବଂଶର ବଂଶଧରଙ୍କ ଭିତରୁ ଜଣେ । ତାଙ୍କ ପିତାମହ ହରିହର ସିଂଦେଓ ନଅଙ୍କ ଦୁର୍ଭିକ୍ଷ ବେଳେ ଦଶୁରି ଏକର ପରିମିତି ଏକ ଦୀର୍ଘିକା ଖୋଳାଇ ଥିଲେ । ସେ ଦୀର୍ଘିକା ବର୍ତ୍ତମାନ ପାଣି ଭରପୁର ହୋଇ ରହିଛି । ନାଁ ତା'ର ହରିହର ସାଗର । ତାଙ୍କର ସାନଭାଇ ସ୍ୱନାମଧନ୍ୟ ଶରତଚନ୍ଦ୍ର ସିଂଦେଓ ଥିଲେ କେତିଙ୍ଗ ନିର୍ବାଚନ ମଣ୍ଡଳୀର ଏମ୍. ଏଲ୍. ଏ. । ସେ ବର୍ଷକ ତଳେ ଅଳ୍ପବୟସରେ ଦେହତ୍ୟାଗ କରିଛନ୍ତି । ଯୋଗେଶ ବାବୁ ନିଜେ ଥିଲେ ଓଡ଼ିଶା ବିଧାନସଭାର ସଦସ୍ୟ ୧୯୫୨ ଠାରୁ ୧୯୫୬ ପର୍ଯ୍ୟନ୍ତ । ଗଣା ଆନ୍ଦୋଳନ ଉପଲକ୍ଷେ ସେ ଇସ୍ତଫା ଦେଇଥିଲେ ।

"ବର୍ତ୍ତମାନ ଆପଣ ରାଜନୀତି କରୁନାହାନ୍ତି କାହିଁକି ?" ଏତିକି ପଚାରନ୍ତେ ସେ ସାମାନ୍ୟ ହସି କହିଲେ—ନା ରାଜନୀତି ଛାଡ଼ିଦେଲି—ବର୍ତ୍ତମାନ କୃଷି-ନୀତିକୁ ଧରିଛି । ମୁଁ ଏ ଅଞ୍ଚଳର ବର୍ତ୍ତମାନେ ଜଣେ ବଡ଼ ସଫଳ କୃଷକ । କୃଷିଠାରୁ ଚମତ୍କାର ଧନ୍ଦା ଆଉ ନାହିଁ । ଓକିଲା, ଡେପୋର, ରାଜନୀତି—ଏ ସବୁ ଦେଖିଛି । କୃଷି-ଭଳି ଏତେ ଚମତ୍କାର ସୃଜନଶୀଳ ଧନ୍ଦା ଆଉ ନାହିଁ । ଏଥିରେ ଲାଗେ ସତେକି ସବୁ ପରିଶ୍ରମ ସଫଳ ହୁଏ । ଉତ୍ପାଦନର ଆନନ୍ଦ କାଣ କମ୍ ଆନନ୍ଦ । ମାଟିଖୋଳ—ମଞ୍ଜି ପୋତ—ଗଛ ଉଠିଲା—ଫୁଲ ଧରିଲା—ଫଳ ଫଳିଲା—ଫେର୍ ସେଇ ଫଳ ହେଲା ମଞ୍ଜି । ଚାଷରୁ ଚାଷ—ପୁଣି ଚାଷରୁ ଚାଷ ।

ସେଦିନ ମଧ୍ୟାହ୍ନରେ ସେ ମୋତେ ଓ ମୋର ଦୁଇଜଣ ବନ୍ଧୁଙ୍କୁ ତାଙ୍କ ଘରକୁ ଡାକିନେଲେ । ବିରାଟ ଘର—ବିରାଟ ହତା । ମାତ୍ର ସବୁ ଯେମିତି ଭାଙ୍ଗିରୁଜି । ଏତେବଡ଼ ସଂସାରକୁ ବର୍ତ୍ତମାନର ଆର୍ଥିକ ପରିସ୍ଥିତିରେ ସମ୍ଭାଳିବା ମୁସ୍କିଲ । ଗୋଟାଏ ଅପେକ୍ଷାକୃତ ଅର୍ବାଚୀନ ହଲ୍‌ରେ ଆମେ ଠୁଳହୋଇ ଗପସପ କଲୁ । ହଲ୍‌ଟି ବଡ଼ ସୌଖୀନ ଢଙ୍ଗରେ ତିଆରି ହୋଇଥିଲା । ଅଧାରେ ସେମିତି ରହିଯାଇଛି । ଗୋଟାଏ ବିରାଟ ବାଘର ଚମଡ଼ା ମୁଣ୍ଡ ଟଙ୍ଗାଯାଇଛି ହଲ୍‌ର ପ୍ରବେଶ ପଥରେ । ସେ ଆଗନ୍ତୁକ-ମାନଙ୍କୁ ସ୍ୱାଗତ କରେ । ବାଇସନ୍ ମୃଗ ହରିଣ ଇତ୍ୟାଦିଙ୍କ ମୁଣ୍ଡ ଟଙ୍ଗା ହୋଇଛି । ଏସବୁ ପୂର୍ବେ ଜମିଦାରମାନେ ଜଙ୍ଗଲରୁ ଶିକାର କରିଥିଲେ । ସେତେବେଳେ ମୃଗୟା (ଶିକାର) ଥିଲା ଗୋଟାଏ ଅଭିଜାତ ସାମନ୍ତବାଦୀ ବିଳାସ । ମାତ୍ର ବର୍ତ୍ତମାନ ବନ୍ୟଜନ୍ତୁ ଶିକାର ଗୋଟାଏ ବେଆଇନ୍ ପାପକର୍ମ ବୋଲି ବିବେଚିତ । ବନଜନ୍ତୁ ହତ୍ୟାକଲେ ଜେଲ୍ ହେବ ।

ଯୋଗେଶ ବାବୁ କିନ୍ତୁ କଥା ପ୍ରସଙ୍ଗରେ କହିଲେ—ଆଗେ ରାଜା ଜମିଦାରମାନେ ବର୍ଷକେ ଥରେ ଅଧେ ଗୋଟେ ଦି'ଟା ଜନ୍ତୁ ମାରୁଥିଲେ । ବାଘ ମଣିଷଖିଆ ହେଲେ, କି ଉପଦ୍ରବ କଲେ, ମରା ହେଉଥିଲେ । ମାତ୍ର ଏବେ ଲୁଚେଇ ଛପେଇ ମାଂସ ଖାଇବା ଲୋଭରେ, ଚମଡ଼ା ଲୋଭରେ, ହାଡ଼ ଓ ଦାନ୍ତ ଲୋଭରେ ଯେଉଁଭଳି ଭାବେ ବନ୍ୟଜନ୍ତୁଙ୍କୁ ମରାହେଉଛି ଏବଂ ଯେପରି କିଛି ଲୋକେ ବହୁଳଭାବେ ଏଇ ଜନ୍ତୁମରା କାମ କରୁଛନ୍ତି, ସେଥିରେ ବନ୍ୟଜନ୍ତୁଙ୍କ ସଂଖ୍ୟା କମିବ ନାହିଁତ ଆଉ କଣ ବଢ଼ିବ ? ରାଜା ଜମିଦାରମାନେ ଲକ୍ଷ୍ୟସିଦ୍ଧି ଲାଗି, ବୀରତ୍ୱ ଦେଖାଇବା ଲାଗି, ଭୟ ଭାଙ୍ଗିବା ଲାଗି ଗୋଟେ ଅଧେ ଶୀକାର କରୁଥିଲେ । ମାତ୍ର ଏବେ ? ଛି ଛି ଛି ଛି ।

ଯୋଗେଶ ବାବୁଙ୍କ ଆଖିର ଚାହାଣୀରେ ଓ କଣ୍ଠସ୍ୱରରେ ନିଜମନା, ଲୁବ୍‌ଧକସ୍ୱଭାବ, ନୃଶଂସ ଜନ୍ତୁମରାମାନଙ୍କ ବିରୋଧରେ ଘୃଣା ଓ ବିଦ୍ୱେଷ ଫୁଟି ଉଠିଲା । ମୁଁ ପ୍ରସଙ୍ଗ ବଦଳାଇ କହିଲି—ଦେଖନ୍ତୁ ଯୋଗେଶ ବାବୁ । ଆପଣ ଯେ କହୁଥିଲେ ଚାଷ କରୁଛନ୍ତି ବୋଲି—ମାନେ, କ'ଣ କେମିତି ଏଠି ଚାଷ ଆପଣ କରୁଛନ୍ତି ସେକଥା ମୁଁ ଜାଣିବାକୁ ଚାହୁଁଛି । ଆମେ ଉପକୂଳ ବାସିନ୍ଦାମାନେ ଗତ ଦଶ ବର୍ଷ ହେଲା ଶୁଣୁଛୁ ଯେ କଳାହାଣ୍ଡିରେ ବର୍ଷ ବର୍ଷ ମରୁଡ଼ି, ଶସ୍ୟହାନୀ ଆଉ ଦୁର୍ଭିକ୍ଷ ଲାଗି ରହିଛି ।

ଯୋଗେଶବାବୁ ଖଣ୍ଡିଏ ୧୨୦ ନମ୍ବର ଗୋପାଳ ଜର୍ଦ୍ଦା ପାନ ମୋ ହାତକୁ ବଢ଼ାଇ ଦେଇ ଅନ୍ୟମାନଙ୍କ ପାଖେ ଖୁଆର ବସନ୍ଦ କଲେ । କହିଲେ—ଆପଣ ତ ବେଶ୍ ପାନ ରସିକ—ଖା'ନ୍ତୁ ଦେଖି ଏ ଖଣ୍ଡକ ।

ପାନଖଣ୍ଡିକ ପାଟିକୁ ନେଇ ତା'ର ସ୍ୱାଦ ଉପଭୋଗ କରୁଛି ଯୋଗେଶବାବୁ ଆରମ୍ଭ କଲେ—

କଳାହାଣ୍ଡିରେ ଦୁର୍ଭିକ୍ଷ ହଉଛି ଆପଣମାନଙ୍କ ଯୋଗୁଁ । କଳାହାଣ୍ଡିର ସବୁ ଜଙ୍ଗଲ ତ ଆପଣମାନେ କାଟିନେଲେ, ଜାଳିଦେଲେ । ଆଉ ନୂଆ ଗଛ ତ ଲଗା ଗଲା ନାହିଁ । ଗଛ ନ ରହିଲେ ବର୍ଷା ବନ୍ଦ—ବର୍ଷା ବନ୍ଦ ହେଲେ ସମସ୍ତ ମରୁଭୂମି କିମ୍ବା ଶୁଖିଲା ଟାଙ୍ଗରା ମାଳଭୂମି ହିଁ ହବ—ପ୍ରଧାନମନ୍ତ୍ରୀଙ୍କ କୋଡ଼ିଏ ଦଫା ସାଙ୍ଗକୁ ଯେଉଁ ପାଞ୍ଚଦଫା ଯୋଗ ହେଲା ସେଥିରେ ବୃକ୍ଷରୋପଣକୁ ଯେ ଅଗ୍ରସ୍ଥାନ ଦିଆ ଯାଇଛି—ମୁଁ ସେଥିରେ ଭାରି ଖୁସି । ଚାଷ କଥା ପଚାରୁଛନ୍ତି ପରା ? ଶୁଣନ୍ତୁ—

ସିଙ୍ଗ୍ ଧାର୍ଯ୍ୟ ପରେ ମୋତେ ସବୁ ମିଶିମାଣି ପ୍ରାୟ ଛତିଶି ଏକର ଜମି ଚାଷ କରିବାକୁ ପଡ଼ୁଛି । ଏତକ ଜମି କେବଳ ମୋର ଏକାନୁହେଁ—ମାତ୍ର ମୁଁ ଚାଷ

ରୁଛି । ଏତେକ ଜମିରେ ମୁଁ ଧାନ, ଆଖୁ, ଆଳୁ ଚାଷ କରେ । ପାହାଡ଼ରୁ ପାଣି ବହି ଆସି କେତୋଟି କଟା (ପାଣି ଭଣ୍ଡାର) ହୋଇଛି । ମୁଁ ଶେଷ ଶିକ୍ଷାଙ୍କ ବିଶିଷ୍ଟ ପାଣି ପମ୍ପଟିଏ ରଖିଛି । ତା' ହେତୁ ପାଣି ସଂଗ୍ରହ କରି ବିଲରେ ମଡାଏ ।

ଯୋଗେଶବାବୁଙ୍କ କଥାରୁ ବୁଝିଲି—ସେ ଅନ୍ୟ ଋଷିମାନଙ୍କଠାରୁ କେବଳ ତେଲ ଖର୍ଚ୍ଚା ନେଇ ପମ୍ପଟି ଜଳସେଚନ ଉଦ୍ଦେଶ୍ୟରେ ସେମାନଙ୍କୁ ଧାର ଦିଅନ୍ତି । କିନ୍ତୁ ଯୋଗେଶବାବୁ କେବଳ ଜଣେ ପାରମ୍ପରିକ ଋଷି ନୁହନ୍ତି । ସେ ମଧ୍ୟ ଜଣେ ଉଦ୍ଭାବକ । ଧାନ ଉପରେ ତାଙ୍କର ମୌଳିକ ଗବେଷଣା ଅଛି । ବୈଜ୍ଞାନିକ ପଦ୍ଧତିରେ ଗବେଷଣା କରି ସେ ଦୁଇ ପ୍ରକାରର ଧାନ ଉଦ୍‌ଭାବନ କରିଛନ୍ତି ଏବଂ ତା'ର ପରୀକ୍ଷା ଲାଗି ସେ କୃଷିବିଶ୍ୱବିଦ୍ୟାଳୟକୁ ପଠାଇଛନ୍ତି । ଉଦ୍‌ଭାବିତ ଧାନ ଦୁଇଟିର ସେ ନିଜେ ନାଁ ଦେଇଛନ୍ତି—ଗୋଟିକର ସ୍ଥାନୀୟ ନାମ ଧଳା ଗୋଷ୍ଠ—ଏବଂ ଟେକିନିକାଲ ନାମ 'ଏମ୍ ଆର ୧'' । ଯୋଗେଶବାବୁ ୧୪୧ ଧାନ ସଙ୍ଗେ ନାଲି ପକ୍ଷୀରାଜ ଧାନର ସଙ୍ଗମ କରାଇ ଏ ନୂଆ ଧାନଟିକୁ ପାଇଲେ । ତଳୁଆ ଅଞ୍ଚଳ ପାଇଁ ଏହା ଭଲ । ଦରକାର ପଡ଼ିଲେ ୪ ଫୁଟ ପାଣି ଏହା ସହ୍ୟ କରିବ । ଝଡ଼ବାତ୍ୟାରେ ଗଛ ନଇଁ ପଡ଼ିବ ନାହିଁ । ଏହାର ନଡ଼ା ପ୍ରାୟ ଏକ ଇଞ୍ଚ ମୋଟା । ଏକରକୁ ଫଳିବ ବାର କୁଇଣ୍ଟାଲ । ଜୁଲାଇରେ ବୁଣା ହେବ—କଟା ହେବ ନଭେମ୍ବରରେ ।

ଆଉ ଗୋଟିଏ ବିଚିତ୍ର ଧାନ ମଧ୍ୟ ଆବିଷ୍କାର କରିଛନ୍ତି ଯୋଗେଶ ବାବୁ । ତା'ର ଟେକିନିକାଲ ନାଁ ରଖିଛନ୍ତି "ଏମ୍ ଆର ୩'' । ଏ ଧାନ କୁଆଡ଼େ ୬୦—୭୦ ବର୍ଷ ତଳେ ଏ ମୁଲକରେ ଚାଷ ହେଉଥିଲା । ଏ ଧାନ ଛଅ ଇଞ୍ଚ ପାଣିରେ ବି ହେବ । ଏହାର ନଡ଼ା ଶକ୍ତ ନୁହେଁ । ଜୁଲାଇରେ ଲଗାଇଲେ ନଭେମ୍ବରରେ ଅମଳ ହେବ । କିନ୍ତୁ ଏ ଧାନ ସମ୍ବନ୍ଧେ ବିଚିତ୍ର କଥା ହେଉଛି—ଗୋଟିଏ ଧାନରୁ ଛଂପ୍ରତ କଲାପରେ ଦୁଇ ବା ତିନୋଟି ଚାଉଳ ବାହାରି ଥାଏ । ମୁଁ କହିଲି—ଆଜ୍ଞା । ଏ ଧାନ ନାଁ ଦିଅନ୍ତୁ ବହୁଉଦରୀ କା ଗର୍ଭିଣୀ'' । ମୋ କଥା ଶୁଣି ଯୋଗେଶ ବାବୁ ଓ ଅନ୍ୟମାନେ ବେଶ୍ ପରସ୍ତେ ହସି ଉଠିଲେ ।

ଯୋଗେଶ ବାବୁ ଜଣେ ଶିକ୍ଷିତ ଓ ସଚେତନ ଋଷୀ । ଋଷ ପ୍ରତି ତାଙ୍କର ହାର୍ଦ୍ଦିକ ପ୍ରବଣତା ରହିଛି । କିନ୍ତୁ କେବଳ ଋଷ ଛଡ଼ା ତାଙ୍କର ଆହୁରି ଅନେକ ବିଷୟ ପ୍ରତି ସଉକ ଓ ଉତ୍ସୁକତା ରହିଛି । ସେ ହୋମିଓ-ପାଥି ଚିକିତ୍ସା କରନ୍ତି । ଦରିଦ୍ର ବ୍ୟକ୍ତିମାନଙ୍କ ମାଗଣାରେ ଔଷଧ ଦିଅନ୍ତି । ନିକଟସ୍ଥ ବନ ପାହାଡ଼ରୁ ବହୁ କନ୍ଦା, ଚେର, ମୂଳ, ଛେଲି ଓ ଗଛ ସଂଗ୍ରହ କରି ସେଗୁଡ଼ିକର ଔଷଧ ହିସାବରେ ପ୍ରୟୋଗ କରନ୍ତି । ତାଙ୍କ ପ୍ରଦର୍ଶିତ ପରଶୁକେଦାର ଗଛର ଚଳ ବିଷଧର ସର୍ପ କ ମୁଦାର ମହୌଷଧ ରୂପେ ବ୍ୟବହୃତ ହେଉଛି । ଉପକୂଳ ଅଞ୍ଚଳର ବହୁ ବନ୍ଧୁଙ୍କୁ ସେ ଗଛଗଣ୍ଡ ଦେଇଛନ୍ତି ।

କିଶୋର ବୟସରେ ଯୋଗେଶ ବାବୁ ସିଂହଭୂମର ଛଉ ପ୍ରତିଷ୍ଠାନରେ ସାତବର୍ଷ ଛଉନାଚ ଶିକ୍ଷା କରିଥିଲେ । ତା'ପରେ ପ୍ରଖ୍ୟାତ ଅଭିନେତା ଓ ନିର୍ଦ୍ଦେଶକ ବଳେଇ ବାନାର୍ଜିଙ୍କର ଶିଷ୍ୟତ୍ୱ ଗ୍ରହଣ କରି ଅଭିନୟ ମଧ୍ୟ ଶିକ୍ଷା କରିଥିଲେ । ଜୀବନରେ ସେ ବହୁ ନାଟକରେ ଅଭିନୟ କରିଛନ୍ତି । ମଦନପୁର-ରାମପୁରରେ ଗୋଟିଏ ଭଲ ରଙ୍ଗମଞ୍ଚ ଥିଲା । ସେଥିରେ ସେ ମେକବ୍ ଫ୍ଲେଚର, ଅର୍ଜୁନ, ଟିପୁସୁଲତାନ, ହାଇଦର ଅଲ୍ଲି ଆଦି ଭୂମିକାରେ ଅଭିନୟ କରି ହଜାର ହଜାର ଦର୍ଶକଙ୍କ ମନ ମୋହିଛନ୍ତି ।

ଏତଦ୍‌ବ୍ୟତୀତ ଯୋଗେଶ ବାବୁ ଆଡ଼ିଶୁକା ରାଜ୍ୟ ଓ ଦେଶର ବହୁ ଅନୁଷ୍ଠାନ ପ୍ରତିଷ୍ଠାନ ସଙ୍ଗେ ବିବିଧ ସୂତ୍ରରେ ସମ୍ପୃକ୍ତ ଅଛନ୍ତି । ଭାରତ ସରକାରଙ୍କ ଏଗ୍ରିକଲ୍‌ଚର ପାନେଲର ପ୍ଲାନିଂ କମିସନ୍‌ରେ ସେ ୧୯୬୪-୬୫ ରେ ସଭ୍ୟ ଥିଲେ । ୧୯୬୬-୬୭ ରେ ଭାରତ ସରକାରଙ୍କ ଧାନ୍ୟ ବିକାଶ କାଉନ୍‌ସିଲର ସଭ୍ୟ ଥିଲେ । ୧୯୬୬-୬୭ ରେ ଭାରତ ସରକାରଙ୍କ କୃଷକ ପାନେଲର ଦର ନିର୍ଦ୍ଧାରକ କମିସନ୍‌ର ସଭ୍ୟ ଅଛନ୍ତି । ଉତ୍କଳ କୃଷି ମହାବିଦ୍ୟାଳୟର ବୋର୍ଡ ଅଫ୍ ମାନେଜମେଣ୍ଟର ସେ ଜଣେ ପ୍ରତିଷ୍ଠାତା ସଭ୍ୟ । ଭାରତ କୃଷକ ସମାଜର ଆଜୀବନ ସଭ୍ୟ ଏବଂ ଉତ୍କଳ କୃଷକ ସମାଜର ଉପ-ସଭାପତି ।

ଯୋଗେଶ ବାବୁ ଆମେରିକା ଓ ଇଉରୋପର ବହୁ ସ୍ଥାନ ବୁଲି ଦେଖିଛନ୍ତି ଏବଂ ଦେଶ ବିଦେଶରେ କୃଷି-ପ୍ରଣାଳୀ ଉପରେ ଲକ୍ଷ୍ୟ ରଖି ଫେରିଛନ୍ତି । ତାଙ୍କଭଳି ଜଣେ କର୍ମଦକ୍ଷ, ନିରଳସ, ଆଶାବାଦୀ ଓ ବିଜ୍ଞ କୃଷକ ସାରା ଓଡ଼ିଶାରେ ଖୁବ୍ କମ୍ ମିଳିବେ । ତାଙ୍କର ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର ସହଜରେ ଭୁଲି ହେବ ନାହିଁ । ତାଙ୍କୁ ଦେଖିଲେ ତାଙ୍କର ଜୀବନ ପ୍ରତି ଅନୁରକ୍ତି, ବିଶ୍ୱାସ ଓ ପ୍ରଗାଢ଼ତା ବେଶ୍ ବୁଝା ପଡ଼ିଯାଏ ।

ମହାପାତ୍ର ନୀଳମଣି ସାହୁ

ଆଜିର ଓଡ଼ିଶା



# ଶିକ୍ଷା ସମୀକ୍ଷାର ଆବଶ୍ୟକତା

'ତୃତୀୟ ଅଖିଳ ଭାରତ ଶିକ୍ଷାସମୀକ୍ଷା' ଅନୁକୂଲ୍ୟରେ ଗଞ୍ଜାମ ଓ ଫୁଲବାଣୀ ଜିଲ୍ଲାର ଶ୍ରେଷ୍ଠ ବିବେଚିତ ଶିକ୍ଷାବିତ୍‌ମାନଙ୍କୁ ମାନପତ୍ର ପ୍ରଦାନ ନିମନ୍ତେ ଓଡ଼ିଶା ସରକାରଙ୍କଦ୍ୱାରା ଆୟୋଜିତ ସଭାରେ ଯୋଗଦେଇ ତଦାନୀଂତନ ଅର୍ଥମନ୍ତ୍ରୀ ଓ ଆଜିର ମୁଖ୍ୟମନ୍ତ୍ରୀ ଶ୍ରୀ ବିନାୟକ ଆଚାର୍ଯ୍ୟ ଅର୍ଥନୈତିକ ଦୁରବସ୍ଥା ଶିକ୍ଷାର ବାଞ୍ଛିତ ପ୍ରଗତିକୁ ବ୍ୟାହତ କରୁଛି ବୋଲି ମତବ୍ୟକ୍ତ କରିଥିଲେ । ବ୍ରହ୍ମପୁରରେ ଅନୁଷ୍ଠିତ ଏକ ସଭାରେ ଗତ ଜୁନ ୨୩ ତାରିଖ ଦିନ ଭାଷଣ ଦେଇ ସେ କହିଥିଲେ ଯେ କର୍ମାଭିମୁଖୀ ଗବେଷଣାମୂଳ ଓ ସମୟୋପଯୋଗୀ ଶିକ୍ଷାର ପ୍ରବର୍ତ୍ତନ ସଙ୍ଗେ ସଙ୍ଗେ ଶିକ୍ଷା ବିଭାଗର ପ୍ରଶାସନିକ ବ୍ୟବସ୍ଥାର ଉନ୍ନତିସାଧନ କରାଯିବା ଉଚିତ । ଏହାଦ୍ୱାରାହିଁ ଶିକ୍ଷାର ପ୍ରକୃତ ଲକ୍ଷ୍ୟ ହାସଲ ହୋଇ ପାରିବ ବୋଲି ସେ ମତବ୍ୟକ୍ତ କରିଥିଲେ ।

ଭାଷଣ ଆରମ୍ଭରେ ଶିକ୍ଷାବିଭାଗର ଡିରେକ୍ଟର ମହୋଦୟଙ୍କୁ ତାଙ୍କର ନିମନ୍ତ୍ରଣ ପାଇଁ ଧନ୍ୟବାଦ ଜ୍ଞାପନ କରି ଶ୍ରୀ ଆଚାର୍ଯ୍ୟ କହିଥିଲେ ଯେ ଗଞ୍ଜାମ ଓ ଫୁଲବାଣୀ ଜିଲ୍ଲା ଶିକ୍ଷାବିଭାଗର କୃତିକ୍ଷେତ୍ର ହାକିମମାନଙ୍କ ଗହଣରେ ରହି ମୁଁ ଆନନ୍ଦିତ ମନେ କରୁଛି । ଏହି ଶିକ୍ଷାବିତ୍‌ମାନେ ୧୯୭୪-୭୫ରେ ରାଜ୍ୟସରକାରଙ୍କ ଦ୍ୱାରା ପରିଚାଳିତ ତୃତୀୟ ସର୍ବଭାରତୀୟ ଶିକ୍ଷା ସମୀକ୍ଷା କାର୍ଯ୍ୟରେ ବିଶେଷ ଯୋଗ୍ୟତା ପ୍ରଦର୍ଶନ କରିଥିବାରୁ ସେମାନଙ୍କୁ ଏହି ମାନପତ୍ର ପ୍ରଦାନ କରାଯାଇଛି ।

ବର୍ତ୍ତମାନର ଶିକ୍ଷା ସମସ୍ୟାକୁ ଅନୁଶୀଳନ କଲେ ଆମେ ବୁଝିପାରିବା ଯେ ଅଧିକରୁ ଅଧିକ ବର୍ଗ ଶିକ୍ଷାଗତ ସୁବିଧା ସୁଯୋଗ ଗ୍ରହଣ କରିବାପାଇଁ ଆଗ୍ରହ ... ଶିକ୍ଷାଦ୍ୱାରାହିଁ ସମାଜର ସାମୂହିକ ଉନ୍ନତି ସାଧନ କରିହେବ ବୋଲି ସମସ୍ତେ ହୃଦୟଙ୍ଗମ କରିଛନ୍ତି । ଫଳରେ ଆମକୁ ସମୟୋପଯୋଗୀ ଶିକ୍ଷା ସମୀକ୍ଷା, ସମସ୍ୟାନୁସାରୀ ସ୍ୱତନ୍ତ୍ରଶିକ୍ଷା ଓ କର୍ମାଭିମୁଖୀ ଶିକ୍ଷା ତଥା ଗବେଷଣା ଉପରେ ଅଧିକ ଗୁରୁତ୍ୱ ଦେବାକୁ ପଡ଼ୁଛି । ଏହା ଭବିଷ୍ୟତର ଲକ୍ଷ୍ୟପୂରଣ ଦିଗରେ ବିଶେଷ ସହାୟକ ହେବ ।

ଶ୍ରୀ ଆର୍ଯ୍ୟ କହିଲେ, ପୂର୍ବାପେକ୍ଷା ସାଂପ୍ରତିକ ପରିପ୍ରେକ୍ଷୀରେ ଶିକ୍ଷାକ୍ଷେତ୍ରରେ ସାମୟିକ ସର୍ଭେ ଓ କର୍ମାଭିମୁଖୀ ଗବେଷଣା ବ୍ୟବସ୍ଥାକୁ କିଭଳି ପ୍ରଚଳିତ କରାଯାଇ ପାରିବ, ସେଥିପାଇଁ ଗୁରୁତ୍ୱ ସହିତ ଚିନ୍ତା କରିବାର ସମୟ ଆସିଛି । ତେଣୁ ଶିକ୍ଷାଗତ ପରିକଳ୍ପନା ଗୁଡ଼ିକର ସଫଳ ରୂପାୟନ ପାଇଁ ଏକନିଷ୍ଠ ଉଦ୍ୟମ ଆବଶ୍ୟକ ବୋଲି ଶ୍ରୀ ଆର୍ଯ୍ୟ କହିଥିଲେ । ସେ କହିଲେ ଯେ ଆଞ୍ଚଳିକ ବୈଷମ୍ୟ ଯୋଗୁଁ ଅନେକ ଉନ୍ନୟନ ଯୋଜନା ଆଶାନୁରୂପ ଭାବରେ କାର୍ଯ୍ୟକାରୀ ହୋଇ ପାରୁନାହିଁ । ଉତ୍କଳର ଶିକ୍ଷାର ନିର୍ଦ୍ଦେଶକ ଶିକ୍ଷା କ୍ଷେତ୍ରରେ ଅନଗ୍ରସର ଥିବା କେତେକ ଜିଲ୍ଲା ନିମନ୍ତେ ଶିକ୍ଷା ସମୀକ୍ଷା କାର୍ଯ୍ୟକ୍ରମ ଗ୍ରହଣ କରିଥିବାରୁ ସମସ୍ତ ଜିଲ୍ଲାରେ ଶିକ୍ଷା ଉନ୍ନୟନ ଯୋଜନା ସୁଷ୍ଠୁରୂପେ କାର୍ଯ୍ୟକାରୀ ହୋଇପାରିବ ବୋଲି ବିଶ୍ୱାସ ।

ଶ୍ରୀ ଆର୍ଯ୍ୟ କହିଲେ, ମୁଁ ନିଶ୍ଚିତ ଯେ ଜିଲ୍ଲା ଶିକ୍ଷାଯୋଜନା କାର୍ଯ୍ୟକାରୀ କରାଗଲେ ଶିକ୍ଷାକ୍ଷେତ୍ରରେ ହେଉଥିବା ବ୍ୟୟବହୁଳତା ହ୍ରାସ ପାଇବ—ତଥା ଶିକ୍ଷା ସୁଯୋଗରୁ ବଞ୍ଚିତ ହେଉଥିବା ଦୁର୍ବଳ ଶ୍ରେଣୀର ଛାତ୍ର ଛାତ୍ରୀମାନେ ଅଧିକ ଉପକୃତ ହେବେ । ଏହାଦ୍ୱାରା ଶିକ୍ଷା ମାଧ୍ୟମରେ ଆମେ ଏକ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ହାସଲ କରିପାରିବା ଏବଂ ସମାଜର ସାମୂହିକ କଲ୍ୟାଣ ସାଧନ ଦିଗରେ ପ୍ରଭାବଶାଳୀ ପଦକ୍ଷେପ ଗ୍ରହଣ କରିବାକୁ ସକ୍ଷମ ହେବ ।

ଓଡ଼ିଶାଭଳି ଏକ ଅନଗ୍ରସର ରାଜ୍ୟରେ ସର୍ବାଙ୍ଗୀନ ଅର୍ଥନୈତିକ ବିକାଶ ସାଧନ ଲାଗି ଆବଶ୍ୟକ ଯୋଜନାମାନ ପ୍ରସ୍ତୁତ କରାଯାଇଥିବାରୁ ରାଜ୍ୟରେ ଶିକ୍ଷା ବ୍ୟବସ୍ଥାକୁ ସୁସମନ୍ୱିତ କରିବା ଉଦ୍ଦେଶ୍ୟରେ ଶିକ୍ଷା ସଂକ୍ରାନ୍ତୀୟ ପରିସଂଖ୍ୟାନକୁ ଏକ ଗୁରୁତ୍ୱପୂର୍ଣ୍ଣ ବ୍ୟବସ୍ଥାରୂପେ ଗ୍ରହଣ କରାଯାଇଛି । ଏଥିନିମନ୍ତେ ଆବଶ୍ୟକ ନୀତି, ଆଭିମୁଖ୍ୟ ଓ କାର୍ଯ୍ୟକ୍ରମ ନିର୍ଦ୍ଧାରଣ ଦିଗରେ ଶିକ୍ଷା ସଂକ୍ରାନ୍ତୀୟ ପରିସଂଖ୍ୟାନର ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ । ଯଦିଓ ଏ ଦିଗରେ ରାଜ୍ୟ ପରିସଂଖ୍ୟାନ ଓ ଅର୍ଥନୀତି ବିଭାଗ ଆବଶ୍ୟକୀୟ ତଥ୍ୟ ସଂଗ୍ରହ ଦିଗରେ ବିଶେଷ ଉଦ୍ୟମ କରୁଛନ୍ତି, ତଥାପି ସଂପୃକ୍ତ ନୀତି ନିର୍ଦ୍ଧାରଣ, ଶିକ୍ଷା ଓ ଯୁବ କଲ୍ୟାଣ ବିଭାଗର ଉଦ୍ଦେଶ୍ୟ ସାଧନ କରିବା ଭଳି ଉକ୍ତ ତଥ୍ୟମାନ ବିଶେଷ ପର୍ଯ୍ୟାପ୍ତ ଓ ସୁବୋପଯୋଗୀ ନୁହେଁ ବୋଲି ମୋର ଧାରଣା । ଜିଲ୍ଲା ଶିକ୍ଷା ସଂକ୍ରାନ୍ତୀୟ ଯୋଜନା କାର୍ଯ୍ୟ ଆରମ୍ଭ ହୋଇଥିବା ଦୃଷ୍ଟିରୁ ସାମୟିକ ଶିକ୍ଷା, ସର୍ଭେ ଓ ସ୍ୱତନ୍ତ୍ର କର୍ମାଭିମୁଖୀ ଶିକ୍ଷା ପ୍ରବର୍ତ୍ତନ କରିବା ନିମନ୍ତେ ଉକ୍ତ ଶିକ୍ଷା ଆଭିମୁଖ୍ୟ ବିଶେଷ ଗୁରୁତ୍ୱପୂର୍ଣ୍ଣ । ବର୍ତ୍ତମାନର ଶିକ୍ଷାପଦ୍ଧତିକୁ ବଦଳାଇବା ପାଇଁ ଶ୍ରୀ ଆର୍ଯ୍ୟ ବିଶେଷ ଗୁରୁତ୍ୱ ଆରୋପ କରିଥିଲେ । ଚଳିତ ଶିକ୍ଷା ପଦ୍ଧତି ସକାଶେ ଯେଉଁ ପରିମାଣର ବ୍ୟୟ ବହନ କରୁଛି ତାହାକୁ ଆଖି ଆଗରେ ରଖି ଶିକ୍ଷା ପଦ୍ଧତି ପରିବର୍ତ୍ତନ ହେବା ବାଞ୍ଛନୀୟ ବୋଲି ସେ ମତ ବ୍ୟକ୍ତ କରିଥିଲେ ।

ସେ କହିଥିଲେ, ଯଥେଷ୍ଟ ଆର୍ଥିକ ସମ୍ବଳ ବିନା କୌଣସି ଯୋଜନା କାର୍ଯ୍ୟକାରୀ କରାଯାଇ ପାରିବ ନାହିଁ ବୋଲି ଭାବିବା ଭୁଲ । ଶ୍ରୀ ଆର୍ଯ୍ୟ କହିଲେ ବର୍ତ୍ତମାନ ଶିକ୍ଷାନିମନ୍ତେ ଯେଉଁ ପରିମାଣରେ ଅର୍ଥବ୍ୟୟ କରାଯାଉଛି ତାହାକୁ ଉତ୍ତମରୂପେ ବିନିଯୋଗ କରାଗଲେ ଶିକ୍ଷା ପଦ୍ଧତିର ମାନ ପରିବର୍ତ୍ତନ କରାଯାଇ ପାରିବା ସଙ୍ଗେ ସଙ୍ଗେ ବିଶେଷ ଅର୍ଥର ଆବଶ୍ୟକତା ପଡ଼ିବ ନାହିଁ । ସେ କହିଲେ ଜରୁରୀ କାଳୀନ ପରିସ୍ଥିତିର ସୁଯୋଗ ନେଇ ପ୍ରଶାସନିକ କର୍ତ୍ତୃପକ୍ଷ ସମାଜର ଦୁର୍ବଳ ଶ୍ରେଣୀର ଲୋକମାନେ ଯେପରି ବିଶେଷ ପରିମାଣରେ ଉପକୃତ ହେବେ ସେଥିପ୍ରତି ବିଶେଷ ଦୃଷ୍ଟି ଦେବା ସଙ୍ଗେ ସଙ୍ଗେ ଶିକ୍ଷାର ମାନବୃଦ୍ଧି ଶାସନ କଳକୁ ସୁସମନ୍ୱିତ କରିବା ଏକାନ୍ତ ବାଞ୍ଛନୀୟ । ଶ୍ରୀ ଆର୍ଯ୍ୟ କହିଲେ, "ମୁଁ ଆଶା ଓ ବିଶ୍ୱାସ କରେ ଯେ ଆଜି ଏଠାରେ ଉପସ୍ଥିତ ଥିବା ବ୍ଳକ ସ୍ତରର ଶିକ୍ଷା କର୍ତ୍ତୃପକ୍ଷ ଶିକ୍ଷା ବିଭାଗର ପ୍ରଶାସକଙ୍କ ସମେତ ଯେଉଁମାନେ ଏହି ଆଲୋଚନାରେ ଅଂଶ ଗ୍ରହଣ କରିଛନ୍ତି ସେମାନେ ସମସ୍ତେ ବ୍ୟକ୍ତିଗତଭାବେ ସମାଜର ଦୁର୍ବଳ ଶ୍ରେଣୀର ଲୋକମାନଙ୍କର ଉନ୍ନତି ନିମନ୍ତେ ଶିକ୍ଷାଯୋଜନାକୁ କାର୍ଯ୍ୟକାରୀ କରିବା ବାଞ୍ଛନୀୟ । କାରଣ ଚଳିତ ୫ମ ପଞ୍ଚବାର୍ଷିକ ଯୋଜନାରେ ଶିକ୍ଷା ନିମନ୍ତେ ସ୍ୱତନ୍ତ୍ର ବଜେଟର ବ୍ୟୟ ବରାଦ କରାଯାଇଛି ।"



# ଓଡ଼ିଶା ଭୂ-ସଂସ୍କାର ଆଇନ

ଓଡ଼ିଶା ଭୂ-ସଂସ୍କାର ଆଇନ୍‌ର ୩୬-କ ଧାରାର ସୁବିଧା ନେଇ କେତେକ ନକଲି ରୟତ ନିଜକୁ ଭାଗ ଚାଷୀ ରୂପେ ଦାବୀ କରୁଥିବା ବିଷୟରେ କେତେକ ମହଲରେ ଅଭିଯୋଗ ହୋଇଛି । ଭୂ-ସଂସ୍କାର ଆଇନ୍‌ର ବ୍ୟବସ୍ଥା ଅନୁଯାୟୀ ପ୍ରକୃତ ଭାଗ ଚାଷୀଙ୍କୁ ନ୍ୟାଯ୍ୟ ଦାବୀରୁ ବଞ୍ଚିତ କରିବା ପାଇଁ କେତେକ ଜମି ମାଲିକ ନକଲି ରୟତଙ୍କୁ ଏ ଦିଗରେ ଉତ୍ସାହିତ କରିବା ଏବଂ ସରକାରଙ୍କ ଠାରେ ସିଲିଂ ବହିର୍ଭୂତ ବଳକା ଜମିର ବିବରଣୀ ଫାଙ୍କିବା ପାଇଁ ଉଦ୍ୟମ କରୁଥିବା ବିଷୟ ମଧ୍ୟ ଜଣା ପଡ଼ିଛି । ଓଡ଼ିଶାରେ ଭୂ-ସଂସ୍କାର ଆଇନ କାର୍ଯ୍ୟକାରୀ କରିବା ବିରୁଦ୍ଧରେ ହେଉଥିବା ଏସବୁ ଉଦ୍ୟମକୁ ବ୍ୟର୍ଥ କରିବା ପାଇଁ ସରକାର ଦୃଢ଼ ପ୍ରତିଜ୍ଞ ।

ପ୍ରକୃତ ରୟତ ସଂପୃକ୍ତ ଜମି ଚାଷ କରୁଥିବାରୁ ଜମିଜମାର ବନ୍ଦୋବସ୍ତ ସମୟରେ ସେଗୁଡ଼ିକୁ ସେମାନଙ୍କ ନାମରେ କରାଇବାପାଇଁ ଓଡ଼ିଶା ଭୂ-ସଂସ୍କାର ଆଇନର ୩୬-କ ଧାରା ଉଦ୍ଦିଷ୍ଟ । ରୟତମାନଙ୍କଠାରୁ ଆବେଦନପତ୍ର ମିଳିବା ପରେ କିମ୍ବା ରାଜସ୍ୱ ଅଫିସରଙ୍କ ଦ୍ୱାରା, ସ୍ୱତଃପ୍ରବୃତ୍ତ ଭାବେ ଉକ୍ତ ଧାରା ଅନୁଯାୟୀ ଏ ଦିଗରେ କାର୍ଯ୍ୟାନୁଷ୍ଠାନ ହୋଇଥାଏ । ଏଭଳି ମାମଲା ନିଷ୍ପତ୍ତି କରିବା ସମୟରେ ଉକ୍ତ ଧାରାର ବ୍ୟବସ୍ଥା ଅନୁଯାୟୀ ଯେପରି ପ୍ରକୃତ ରୟତ ସୁବିଧା ସୁଯୋଗ ପାଆନ୍ତି, ସେଥି ନିମନ୍ତେ ରାଜସ୍ୱ ଅଫିସରମାନେ ସମସ୍ତ ସତର୍କତା ଅବଲମ୍ବନ କରିଥାନ୍ତି । ଏଭଳି କାର୍ଯ୍ୟାନୁଷ୍ଠାନ ସମୟରେ ଜମି ସହିତ ସଂଶ୍ଳିଷ୍ଟ ପକ୍ଷଗୁଡ଼ିକୁ ସେମାନଙ୍କ ଦାବୀ ଉପସ୍ଥାପିତ କରିବା ନିମନ୍ତେ ସୁଯୋଗ ଦେଇଥାନ୍ତି । ପ୍ରାୟ ସବୁ କ୍ଷେତ୍ରରେ ରାଜସ୍ୱ ଅଧିକାରୀ ସ୍ଥାନ ଉପରକୁ ଯାଇ ଘଟଣା ଅନୁସନ୍ଧାନ କରିଥାନ୍ତି ଓ ସେମାନଙ୍କର ଦାବୀ ବିଶେଷକରି ଭାଗଚାଷୀମାନଙ୍କର ଜମି ଦଖଲ ଓ ଫସଲ ଉତ୍ପାଦନ ସମ୍ପର୍କରେ ଅନୁସନ୍ଧାନ କରିବାଲାଗି କ୍ୟାମ୍ପ କୋର୍ଟ କରନ୍ତି । ଏହା ବ୍ୟତୀତ ହରିଜନ ଓ ଆଦିବାସୀ ସଭ୍ୟ ସମେତ ବେସରକାରୀ ସଭ୍ୟଙ୍କୁ ନେଇ ପ୍ରତ୍ୟେକ ରାଜସ୍ୱ ନିରୀକ୍ଷକ ମଣ୍ଡଳରେ ସ୍ଥାନୀୟ କମିଟିମାନ ଗଠନ କରାଯାଇଛି । ଓଡ଼ିଶା ଭୂ-ସଂସ୍କାର ଆଇନର ୩୬-କ ଧାରା ଅନୁଯାୟୀ ଭାଗଚାଷୀଙ୍କ ଦାବୀର ଚୂଡ଼ାନ୍ତ ନିଷ୍ପତ୍ତି କରିବା ପୂର୍ବରୁ ରାଜସ୍ୱ ଅଧିକାରୀ ଏଭଳି କମିଟିର ସଭ୍ୟମାନଙ୍କ ସହିତ ପରାମର୍ଶ କରିବାପାଇଁ ଆଇନତଃ ବାଧ୍ୟ । ଏଭଳି ବ୍ୟବସ୍ଥା ଅନୁସରଣ କରାଯିବା ଫଳରେ ଏପରିକି ଜମିମାଲିକଙ୍କ ଦ୍ୱାରା ନିଯୁକ୍ତ ନକଲି ରୟତ ଉପରୋକ୍ତ ଆଇନ୍ ଅନୁଯାୟୀ ବେନିୟମ୍ ଭାବେ ସୁବିଧା ସୁଯୋଗ ପାଇ ପାରନ୍ତି ନାହିଁ ।

ଏ ସଂକ୍ରାନ୍ତ ବିବାଦର ଚୂଡ଼ାନ୍ତ ନିଷ୍ପତ୍ତି ହୋଇ ନଥିବା ସମୟରେ ଜମିରେ ଥିବା ଫସଲର ତତ୍ତ୍ୱାବଧାନ ନେବାପାଇଁ "ରିସିଭର" ନିଯୁକ୍ତି କରିବା କିମ୍ବା ଜମି ଚାଷ କରିବା ସକାଶେ ରାଜସ୍ୱ ଅଧିକାରୀ ଅସ୍ଥାୟୀ ଆଦେଶ ଦେଇ ପାରିବେ ବୋଲି ଓଡ଼ିଶା ଭୂ-ସଂସ୍କାର ଆଇନ୍‌ରେ ବ୍ୟବସ୍ଥା ରହିଛି— ଏହି ବ୍ୟବସ୍ଥା କାର୍ଯ୍ୟକାରୀ କରିବାକୁ ଯାଇ ରାଜସ୍ୱ ଅଧିକାରୀ ସାଧାରଣତଃ ଯେଉଁ ରୟତ ଜମିରେ ବିହନ ବୁଣିଥାଏ କିମ୍ବା, ଫସଲ ଉତ୍ପନ୍ନ କରିବାପାଇଁ ପଦକ୍ଷେପ ନେଇଥାଏ, କେବଳ ସେହି ରୟତଙ୍କୁ "ରିସିଭର" ରୂପେ ନିଯୁକ୍ତ କରିଥାନ୍ତି । ବିବାଦୀୟ ଘଟଣାମାନଙ୍କରେ ଜମିରେ ଥିବା ଫସଲ ଜମିର ଦାୟିତ୍ୱ ନେବା ସ୍ଥଳେ ରାଜସ୍ୱ ନିରୀକ୍ଷକଙ୍କ ଭଳି ନିରପେକ୍ଷ ବ୍ୟକ୍ତିଙ୍କୁ "ରିସିଭର" ରୂପେ ନିଯୁକ୍ତ କରାଯାଇଥାଏ ।

ଆଇନ୍‌ର ଏସବୁ ବ୍ୟବସ୍ଥାର କେବଳ ଗୋଟିଏ ଅଭିମୁଖ୍ୟ ରହିଛି, ତାହାହେଲା—ଜମି ଚାଷକରୁଥିବା ରୟତ ଯେପରି ସେହି ଜମି ପାଇବେ, ତାହାର ନିଶ୍ଚିତ ବ୍ୟବସ୍ଥା କରିବା । ଜମି ମାଲିକମାନେ ନକଲି ରୟତ ନିଯୁକ୍ତ କରି ଯୁଗ ଯୁଗ ଧରି ଭାଗଚାଷୀ ବ୍ୟବସ୍ଥାର ଯେଉଁ ସୁବିଧା ପାଇ ଆସୁଥିଲେ ତାହାକୁ ପ୍ରତିହତ କରିବାପାଇଁ ଏହି ଆଇନ୍‌ର ୩୬-କ ଧାରା ଉଦ୍ଦିଷ୍ଟ । ଏହା ବ୍ୟତୀତ ଓଡ଼ିଶା ଭୂ-ସଂସ୍କାର ଆଇନ୍‌ର ବ୍ୟବସ୍ଥା ଅନୁଯାୟୀ ତିନି ଷ୍ଟାଣ୍ଡାର୍ଡ ଏକର ପର୍ଯ୍ୟନ୍ତ ଜମିଥିବା ପ୍ରତ୍ୟେକ କ୍ଷୁଦ୍ରଚାଷୀ, ବିଧବା, ନାବାଳକ ଓ ଯେଉଁମାନେ ନିର୍ଦ୍ଦିଷ୍ଟ ଭାବେ ଶାରୀରିକ ଅସମର୍ଥ, କେବଳ ସେମାନେ ନିଜର ଜମି ଭାଗ ଦେଇ ପାରିବେ । ଏସବୁ ଆଇନ କାର୍ଯ୍ୟକାରୀ ହେବା ଫଳରେ ଆମର ଜନସାଧାରଣଙ୍କୁ ସାମାଜିକ ନ୍ୟାୟ ମିଳିବ ।

# ରେଙ୍ଗାଲି ବହୁମୁଖୀ ଯୋଜନା

ବ୍ରାହ୍ମଣୀ ଓଡ଼ିଶାର ଦ୍ୱିତୀୟ ବୃହତ୍ତମ ନଦୀ । ଓଡ଼ିଶାରେ ପ୍ରବାହିତ ହେଉଥିବା ନଦୀମାନଙ୍କରେ ବୋହି ଯାଉଥିବା ଜଳ ପରିମାଣର ପ୍ରାୟ ଏକ ସପ୍ତମାଂଶ ଏହି ନଦୀରେ ବୋହିଯାଏ । କେବଳ ବର୍ଷା ତିନିମାସରେ ଶତକଡ଼ା ୯୦ ଭାଗ ଜଳ ନଦୀରେ ପ୍ରବାହିତ ହେଉଥିବାରୁ ଏହି ବିସ୍ତୀର୍ଣ୍ଣ ଜଳ ସମ୍ପଦର କୌଣସି ଉପଯୋଗ ହୋଇପାରେ ନାହିଁ । ଅଧିକନ୍ତୁ ସୁବିସ୍ତୀର୍ଣ୍ଣ ଅବବାହିକାର ଜଳ ଧାର ପ୍ରତିବର୍ଷ ଓଡ଼ିଶା ଉପକୂଳବର୍ତ୍ତୀ ଅଞ୍ଚଳରୁ ପ୍ରାୟ ୨,୬୦୦ ବର୍ଗ କିଲୋମିଟର ଅଞ୍ଚଳ ବନ୍ୟା ପ୍ଳାବିତ କରି ବହୁ ପରିମାଣରେ ଦୁର୍ଗତି ଘଟାଏ । ସମୀକ୍ଷା କରି ଜଣା ଯାଇଛି ଯେ, ଏହି ବନ୍ୟାର ପ୍ରକୋପ ଦ୍ୱାରା ବାର୍ଷିକ ପ୍ରାୟ ସାଢ଼େ ଛଅକୋଟି ଟଙ୍କାର ସମ୍ପତ୍ତି କ୍ଷୟ କ୍ଷତି ହୁଏ । ବ୍ରାହ୍ମଣୀ ଅବବାହିକାର ରେଙ୍ଗାଲି ଠାରେ ଜଳ ଭଣ୍ଡାର ସୃଷ୍ଟିକରି ଏହି ନଦୀର ଜଳକୁ ଆବଦ୍ଧ ରଖି ବନ୍ୟା-ନିୟନ୍ତ୍ରଣ, ବିଦ୍ୟୁତ୍ ଉତ୍ପାଦନ ଓ ଜଳ ସେଚନ କାର୍ଯ୍ୟମାନ ସମ୍ପାଦନ କରିବା ପାଇଁ ଏକ ବହୁମୁଖୀ ଯୋଜନା ଭାରତ ସରକାରଙ୍କର ଯୋଜନା କମିଶନଙ୍କ ଦ୍ୱାରା ଗତ ତା ୫-୬-୧୯୭୩ ମସିହାରେ ସ୍ୱୀକୃତି ଲାଭକଲା ଏବଂ ରାଜ୍ୟ ସରକାରଙ୍କ ଦ୍ୱାରା ଗତ ତା ୬-୧୨-୧୯୭୩ରେ ପ୍ରଶାସନିକ ସ୍ୱୀକୃତି ଲାଭ କରିବା ପରେ ୧୯୭୩ ମସିହା ଡିସେମ୍ବର ତା ୨୩ ରିଖ ଦିନ ପ୍ରଧାନ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଏହି ଯୋଜନାର ଶିଳାନ୍ୟାସ କଲେ ।

ଏହି ବହୁମୁଖୀ ଯୋଜନା ପୂର୍ଣ୍ଣାଙ୍ଗପ୍ରାପ୍ତ ହେଲେ ପ୍ରଥମ ପର୍ଯ୍ୟାୟରେ ୨,୬୦୦ ବର୍ଗ କିଲୋମିଟର ଉର୍ବର ଉପକୂଳବର୍ତ୍ତୀ ଅଞ୍ଚଳ ବନ୍ୟା ପ୍ରକୋପରୁ ମୁକ୍ତ ପାଇବ, ଏବଂ ୧୦୦ ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ରାଜ୍ୟର ସମୃଦ୍ଧ ଉନ୍ନତିରେ ବିନିଯୋଗ ହେବ । ଦ୍ୱିତୀୟ ପର୍ଯ୍ୟାୟରେ ତାଳଚେର ନିକଟ ସମଲଠାରେ ବ୍ୟାରେଜ୍ ଓ ଉଭୟ ପାର୍ଶ୍ୱରେ କେନାଲ କାର୍ଯ୍ୟ ସରିଲେ ଉଭୟ ପାର୍ଶ୍ୱସ୍ଥିତ ଢେଙ୍କାନାଳ, କଟକ ଓ କେଉଁଝର ଜିଲ୍ଲାର ସର୍ବମୋଟ ୪·୨୩ ଲକ୍ଷ ହେକ୍ଟର କୃଷି ଜମି ସେଚନ କରାଯାଇ-ପାରିବ ।

ଶଂଖ ଓ କୋଏଲ୍ ନାମକ ଦୁଇଟି ନଦୀ ବିହାରର ଛୋଟନାଗପୁର ମାଳଅଞ୍ଚଳରୁ ବାହାରି ଓଡ଼ିଶା ପ୍ରଦେଶ ସୁନ୍ଦରଗଡ଼ ଜିଲ୍ଲାର ପାନପୋଷ ନିକଟସ୍ଥ ବେଦବ୍ୟାସ ଠାରେ ମିଳିତ ହୋଇଅଛି । ଏହିଠାରୁ ମିଳିତ ଧାର ବ୍ରାହ୍ମଣୀ ନାମରେ ପରିଚିତ ହୋଇ ତାଳଚେର ପର୍ଯ୍ୟନ୍ତ ପୂର୍ବାଭିମୁଖୀ ହୋଇ ପ୍ରବାହିତ ହୋଇ ସେହିଠାରୁ ତ୍ରିକୋଣ ଭୂମି ସୃଷ୍ଟି କରିଛି । ରେଙ୍ଗାଲିଠାରେ ଏହାର ଅବବାହିକାର ଆୟତନ ୨୫,୨୫୦ ବର୍ଗ କିଲୋମିଟର ।

ରେଙ୍ଗାଲି ଗ୍ରାମ ତାଳଚେର ଠାରୁ ୨୫ କିଲୋମିଟର ଉପରକୁ ଅବସ୍ଥିତ । ରେଙ୍ଗାଲିଠାରେ ବ୍ରାହ୍ମଣୀ ନଦୀର ବାମ ପାର୍ଶ୍ୱରେ ମାଛଖଣ୍ଡି ଓ ଦକ୍ଷିଣ ପାର୍ଶ୍ୱରେ ସାଲେମୁଣ୍ଡା ପର୍ବତ ବିଦ୍ୟମାନ ।

ଏହି ଦୁଇ ପର୍ବତକୁ ଯୋଗକରି ୧,୦୪୦ ମିଟର ଲମ୍ବ ବିଶିଷ୍ଟ ପଥର ଓ ସିମେଣ୍ଟର ବନ୍ଧ ନିର୍ମାଣ କରାଯାଉଛି । ଏହାର ହାରାହାରି ଉଚ୍ଚତା ୪୫ ମିଟର ଏବଂ ନଦୀର ଗଭୀର ସ୍ଥଳରେ ବନ୍ଧର ଉଚ୍ଚତା ୬୮·୫ ମିଟର । ଏହି ବନ୍ଧ ସଂପୂର୍ଣ୍ଣ ହେଲେ ସର୍ବମୋଟ ୬ ଲକ୍ଷ ୧୫ ହଜାର ହେ: ମିଟର ଜଳ ସଞ୍ଚିତ ହୋଇ-ପାରିବ । ତନ୍ମଧ୍ୟରୁ ୪୮ ହଜାର ୮ ଶହ ହେକ୍ଟର ମିଟର ଜଳ ଜଳାଶୟର ସର୍ବନିମ୍ନ ଭଣ୍ଡାରିକ ଆୟତନରେ ଅଚଳ ହୋଇ ରହିବ । ୩ ଲକ୍ଷ ୪୩ ହଜାର ୨ ଶହ ହେକ୍ଟର ମିଟର ଜଳ ବିଦ୍ୟୁତ ଓ ଜଳ ସେଚନ ପାଇଁ ବିନିଯୋଗ ହୋଇ ପାରିବ ଏବଂ ୭୩ ହଜାର ହେକ୍ଟର ମିଟର ଜଳ ସାମୟିକଭାବେ ଗଚ୍ଛିତ ହୋଇ ବନ୍ୟା ନିୟନ୍ତ୍ରଣ କରାଯାଇ ପାରିବ । ବନ୍ୟା ଜଳର ନିୟନ୍ତ୍ରିତ ନିଷ୍କାସନ କରିବାପାଇଁ ବନ୍ଧର ମଧ୍ୟ ସ୍ଥଳରେ ୨୪ ଗୋଟି ୧୫·୫୦ ମିଟର ଲମ୍ବ ଓ ୧୪·୮୦ ମିଟର ଉଚ୍ଚତା ବିଶିଷ୍ଟ ବର୍ତ୍ତୁଳାକାର ଲୁହା ଫାଟକ ରହିବ । ବନ୍ଧର ବାମପାର୍ଶ୍ୱରେ ଅର୍ଥାତ୍ ନଦୀର ଗଭୀର ସ୍ଥଳକୁ ଲାଗି ୪ ଗୋଟି ବିଦ୍ୟୁତ୍ ଉତ୍ପାଦକ ଟରବାଇନ୍ ସ୍ଥାପିତ ହେବାର ବ୍ୟବସ୍ଥା ଅଛି । ଏଥିରୁ ପ୍ରଥମ ପର୍ଯ୍ୟାୟରେ ୨ ଗୋଟି ୫୦ ମେଗାଓ୍ୱାଟ ଶକ୍ତି ବିଶିଷ୍ଟ ଯନ୍ତ୍ର ୧୯୮୨ ମସିହା ଜୁନ୍ ମାସରେ ଚାଲୁ କରାଯିବ । ଅବଶିଷ୍ଟ ଦୁଇଟି ଭବିଷ୍ୟତରେ ସଂଯୋଗ କରାଯିବ ।

ଜଳ ଭଣ୍ଡାରର ସର୍ବୋଚ୍ଚ ଜଳପତନ ସମୁଦ୍ର ପତ୍ତନରୁ ୧୨୫·୪୦ ମିଟର ଉଚ୍ଚ ସୀମାରେଖାରେ ଅବଦ୍ଧ ରହିବ । ଏହାଫଳରେ ସର୍ବମୋଟ ୪୧,୫୦୦ ହେକ୍ଟର ଜମି ଜଳମଗ୍ନ ହେବ । ଏହି ବୁଡ଼ି ଅଞ୍ଚଳ ମଧ୍ୟରେ ସମ୍ବଲପୁର ଜିଲ୍ଲାର ଦେବଗଡ଼ ସବ୍‌ଡିଭିଜନ-ରେ ୧୮୮ ଖଣ୍ଡ ଗ୍ରାମରେ ୨୬,୩୦୦ ହେକ୍ଟର ଜମି ଓ ଢେଙ୍କାନାଳ ଜିଲ୍ଲାର ପାଲଲହଡ଼ା ସବ୍‌ଡିଭିଜନରେ ୭୩ ଖଣ୍ଡ ଗ୍ରାମରେ ୧୩,୦୦୦ ହେକ୍ଟର ଜମି ଓ ତାଳଚେର ସବ୍‌ଡିଭିଜନରେ ଗୋଟିଏ ଗ୍ରାମରେ ୪୦୦ ହେକ୍ଟର ଜମି ଜଳମଗ୍ନ ହେଉଅଛି । ଏହା-ଛଡ଼ା ସଂରକ୍ଷିତ ଜଙ୍ଗଲର ୯୦୦ ହେକ୍ଟର ଜମି ଜଳମଗ୍ନ ହେଉଅଛି । ସର୍ବମୋଟ ୨୬୨ ଗ୍ରାମରୁ ୫୪ ଗୋଟି ଗ୍ରାମ ବେଚିରାପୁରୀ ବା ଗୃହଶୂନ୍ୟ ଅଟେ । ଏହି ୨୬୨ଟି ଗ୍ରାମରୁ ୭୪ଟି ସମ୍ପୂର୍ଣ୍ଣ ଏବଂ ଅବଶିଷ୍ଟ ୧୮୮ଟି ଆଂଶିକ ଜଳମଗ୍ନ ହେବ । ଜଳମଗ୍ନ ହେଉ-ଥିବା ମୋଟ ୪୧,୫୦୦ ହେକ୍ଟର ଜମିରୁ ଆବାଦି ଜମି ୯,୮୦୦ ହେକ୍ଟର ଏବଂ ଅବଶିଷ୍ଟ ଜଙ୍ଗଲ ବା ପତିତ ଜମି ।

ବୁଡ଼ି ଅଞ୍ଚଳର ସମସ୍ତ ଜମି ଉପଯୁକ୍ତ ମୂଲ୍ୟାୟନ କରି ଭୂମ୍ୟାଧିକାରୀମାନଙ୍କୁ ଉଚିତ ମୂଲ୍ୟ ଦିଆଯାଉ-ଅଛି । ଏହାଛଡ଼ା ବୁଡ଼ି ଅଞ୍ଚଳର ସମଗ୍ର ପ୍ରକାର ଗୃହ ଓ ତତ୍‌ସଂଲଗ୍ନ କୂପ, ପୁଷ୍କରିଣୀ ଓ ବୃକ୍ଷସମୂହର ହାଲ ଦରରେ ମୂଲ୍ୟାୟନ କରି ସେମାନଙ୍କର ଉଚିତ ମୂଲ୍ୟ ଦିଆଯାଉଅଛି । ବୁଡ଼ି ଅଞ୍ଚଳର ଲୋକମାନେ ଗୃହୋପକରଣ ଯଦି ନୂତନ ଗୃହରେ ବିନିଯୋଗ କରିବାକୁ ଚାହିଁବେ; ତେବେ ବିନା ଖର୍ଚ୍ଚରେ ସରକାର ସେଗୁଡ଼ିକ ସେମାନଙ୍କ ନୂତନ ବସତି ସ୍ଥାନରେ ଯୋଗାଇ ଦେବେ ।

ବୁଡ଼ି ଅଞ୍ଚଳର ସମସ୍ତ ପରିବାରଙ୍କୁ ଆଧୁନିକ ସୁବିଧା-ସମ୍ପନ୍ନ ନୂତନ ବସତି ସ୍ଥାପନ କରିବାର ସମସ୍ତ ସୁବିଧା ଦିଆଯିବ । ବୁଡ଼ି ଅଞ୍ଚଳର ଚତୁଃପାର୍ଶ୍ୱରେ ସୁବିଧା ଦେଖି ୧୦୦ ପରିବାର ବିଶିଷ୍ଟ ନୂତନ ଗ୍ରାମମାନ ପ୍ରତିଷ୍ଠା କରାଯିବ । ଯେଉଁଠି ପ୍ରତ୍ୟେକ ପରିବାର ୧ ଏକର କରି ଜଳ ସେଚିତ ଚାଷୋପଯୋଗୀ ଜମି ସର୍ବୋଚ୍ଚ ୩୦୦ ଟଙ୍କା ସଲାମୀ ଦେଇ ପାଇପାରିବେ । ପ୍ରତି ପରିବାରର ବସବାସ ପାଇଁ ୩୦ ଡେସିମିଲ୍ ବାସଗୃହ ଜମି ଯୋଗାଇ ଦିଆଯିବ, ଏବଂ ଭୂମିହୀନ-ମାନଙ୍କୁ ବିନା ସଲାମୀରେ ଉପରୋକ୍ତ ସମସ୍ତ ସୁବିଧା ଦିଆଯିବ । ଏହାଛଡ଼ା ସର୍ବସାଧାରଣଙ୍କର ଦୈନନ୍ଦିନ ସୁବିଧା ପାଇଁ ପାନୀୟ ଜଳ ସକାଶେ ପକ୍କା କୂପ ଏବଂ ସର୍ବସାଧାରଣ ବ୍ୟବହାର ପାଇଁ ପୋଖରୀ ସରକାରଙ୍କ ତରଫରୁ କରାଯିବ । ପ୍ରତି ଗ୍ରାମରେ ପ୍ରାଥମିକ ସ୍କୁଲ ଏବଂ ସର୍ବସାଧାରଣ ଗୃହ ନିର୍ମାଣ କରାଯିବ । ପ୍ରତି ଗ୍ରାମକୁ ଗମନାଗମନର ସୁବିଧା ପାଇଁ ରାସ୍ତା ତିଆରି କରାଯିବ । ୨୦ରୁ ୨୫ଟି ଗ୍ରାମକୁ ନେଇ ଗୋଟିଏ ଉଚ୍ଚ ଇଂରାଜୀ ବିଦ୍ୟାଳୟ, ଗୋଟିଏ ପ୍ରାଥମିକ ଚିକିତ୍ସା କେନ୍ଦ୍ର ଓ ଗୋଟିଏ ପଶୁ-ଚିକିତ୍ସା କେନ୍ଦ୍ର ଖୋଲାଯିବ । ରାଜ୍ୟ ବିଦ୍ୟୁତ୍ ବୋର୍ଡ ତରଫରୁ ପ୍ରତି ଗ୍ରାମକୁ ବିଜୁଳି ଶକ୍ତି ଯୋଗାଇ ଦେବାର ଯୋଜନା ଅଛି । ପ୍ରତ୍ୟେକ ପରିବାର ନିଜ ନିଜର ନୂତନ ଗୃହ ନିର୍ମାଣ ପାଇଁ ଆବଶ୍ୟକ ପଡୁଥିବା ଜଙ୍ଗଲ ଜାତ ଦ୍ରବ୍ୟ ସାଧାରଣ ସଲାମୀଠାରୁ ଶତକଡ଼ା ୭୦ ଭାଗ ରିହାତିରେ ପାଇ ପାରିବେ । ଅଗ୍ନିରୋଧକ ବାସଗୃହ ନିର୍ମାଣ କରିବା ପାଇଁ ବାସଚ୍ୟୁତ ଲୋକଙ୍କ ଉତ୍ଥାନ ପାଇଁ ଆବଶ୍ୟକୀୟ ପରାମର୍ଶ ଓ ସାହାଯ୍ୟ ଦିଆଯାଇ ପାରିବ ଏବଂ ଗୃହ ନିର୍ମାଣ ସମବାୟ ସମିତି ଓ ପ୍ରାଥମିକ ଗୃହ ନିର୍ମାଣ ସଂସ୍ଥା ତରଫରୁ ସାହାଯ୍ୟ ପାଉଥିବା ଲୋକମାନଙ୍କୁ ଋଣ ଯୋଗାଇ ଦିଆଯିବାର ବ୍ୟବସ୍ଥା କରାହେବ । ନୂତନ ବସତି ପାଇଁ ଘର ତିଆରି ସରକାର ଯୋଗାଇ ଦେବା ପରେ

ବ୍ୟକ୍ତିମାନେ ନିଜ ନିଜର ଗୃହ ନିଜେ ନିର୍ମାଣ କରିବାର ସୁଯୋଗ ପାଇବେ କିନ୍ତୁ ଆଧୁନିକ ରୁଚି ସମ୍ପନ୍ନ ନୂତନ ବସତିର ସୌନ୍ଦର୍ଯ୍ୟ ରକ୍ଷା ପାଇଁ ପ୍ରତ୍ୟେକ ପରିବାର ସମନ୍ବିତ ଭାବରେ ଗୃହ ନିର୍ମାଣ କରିବାପାଇଁ ଯୋଜନା ହୋଇଅଛି ।

ବନ୍ଧନିର୍ମାଣ ସହିତ ସମନ୍ୱୟ ରକ୍ଷାକରି ବାସଚ୍ୟୁତ ପରିବାରମାନଙ୍କର ଆଶୁ ଥଇଥାନ ପାଇଁ ସମସ୍ତ କାର୍ଯ୍ୟ ଆଗେଇ ଚାଲିଛି । ବନ୍ଧ-ନିର୍ମାଣ ଅଗ୍ରଗତିରେ ୧୯୭୮ ମସିହାରେ ଜଳଭଣ୍ଡାର ନିମ୍ନସ୍ତରରୁ ୩,୭୫୦ ହେକ୍ଟର, ୧୯୭୯ ମସିହାରେ ୪,୦୦୦ ହେକ୍ଟର, ୧୯୮୦ ମସିହାରେ ୧୪,୩୦୦ ହେକ୍ଟର, ୧୯୮୧ ମସିହାରେ ୨୬,୦୦୦ ହେକ୍ଟର ଏବଂ ୧୯୮୨ ମସିହାରେ ୪୧,୫୦୦ ହେକ୍ଟର ଭୂମି ଜଳମଗ୍ନ ହେବ । ଏହି ଅନୁପାତରେ ବୁଡିଅଞ୍ଚଳ ପରିବାରମାନଙ୍କର ଥଇଥାନ ବ୍ୟବସ୍ଥା ପାଇଁ ସମସ୍ତ କାର୍ଯ୍ୟ ଆଗେଇ ଚାଲିଛି । ରେଙ୍ଗାଲୀ ବେଢ଼ା ଅଞ୍ଚଳରେ ପୁନର୍ବସତି ପାଇଁ କୃଷୋପଯୋଗୀ ଜମି ତିଆରି ଚାଲିଛି ଏବଂ କୂଅ, ପୋଖରୀ ଓ ସ୍କୁଲ ଗୃହ ଆଦି ନିର୍ମାଣ କରାଯାଉଛି । ଜଳସେଚନ ସୁବିଧା ପାଇଁ ୪ କୋଟି ୮୯ ଲକ୍ଷ ଟଙ୍କା ବ୍ୟୟରେ ଗୋହିରା ନଦୀ ଉପରେ ଏକ ଜଳ ଭଣ୍ଡାର ସୃଷ୍ଟି କରାଯାଉଛି । ଏହି ଯୋଜନା ୧୯୭୯ ମସିହାରେ ପୂର୍ଣ୍ଣାଙ୍ଗ ପ୍ରାପ୍ତ ହେବ ଏବଂ ୨,୭୦୦ ପରିବାରଙ୍କର ଥଇଥାନ ବ୍ୟବସ୍ଥା ହେବ । ଏହା ବ୍ୟତୀତ ରେଙ୍ଗାଲି ବନ୍ଧ ଜଳ ଭଣ୍ଡାରର ଚତୁଃପାର୍ଶ୍ୱରେ କ୍ଷୁଦ୍ର ଜଳସେଚନଯୋଜନା ଏବଂ ପାଲଲହଡ଼ା ନିକଟରେ ସମାକୋଇ ମଧ୍ୟମ ଜଳସେଚନଯୋଜନା ନିରୀକ୍ଷଣ କରାଯାଉଅଛି । ଏହି ଜଳସେଚନଯୋଜନା ଗୁଡ଼ିକ ନିର୍ମାଣ କରି ସମସ୍ତ ବାସଚ୍ୟୁତ ପରିବାରଙ୍କୁ ଜଳସେଚିତ କୃଷୋପଯୋଗୀ ଜମି ଯୋଗାଇ ଦିଆଯିବ । ଏହିସବୁ ଥଇଥାନ ବ୍ୟବସ୍ଥା ଏବଂ ବାସଚ୍ୟୁତ ପରିବାରମାନଙ୍କର ଉଚିତ କ୍ଷତିପୂରଣ ପାଇବା ପାଇଁ ଉତ୍ତରାଞ୍ଚଳ କମିଶନଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏକ ସ୍ୱତନ୍ତ୍ର ସଂଗଠନ ଗଢ଼ାଯାଇଛି ।

ଏହି ସଂଗଠନରେ ଆଠଜଣ ସରକାରୀ ଏବଂ ବାରଜଣ ବେସରକାରୀ ସଦସ୍ୟ ଅଛନ୍ତି । ବୁଡିଅଞ୍ଚଳସ୍ଥ ପ୍ରତ୍ୟେକ ଗ୍ରାମପଞ୍ଚାୟତରେ ସରପଞ୍ଚ, ସ୍ଥାନୀୟ ଲୋକ ପ୍ରତିନିଧି ହିସାବରେ ସମସ୍ତ ବିଷୟ ବୁଝନ୍ତି ଏବଂ ଆବଶ୍ୟକ ସ୍ଥଳେ ସରକାରଙ୍କ ସଙ୍ଗେ ପରାମର୍ଶ କରି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରନ୍ତି ।

ଏହି ବହୁମୁଖୀ ଯୋଜନା ସମ୍ପାଦନ କରିବା ପାଇଁ ପ୍ରଥମ ପର୍ଯ୍ୟାୟରେ ୫୬ କୋଟି ୯୩ ଲକ୍ଷ ଟଙ୍କାର ବ୍ୟୟ ଅଟକଳ କରାଯାଇଛି । ଏହାଦ୍ୱାରା ବନ୍ୟା ନିୟନ୍ତ୍ରଣ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ, ମତ୍ସ୍ୟଚାଷ ଓ ପର୍ଯ୍ୟଟନର ସୁବିଧା ମିଳିପାରିବ । ଏବଂ ଦ୍ୱିତୀୟ ପର୍ଯ୍ୟାୟରେ ୧୪୫ କୋଟି ଟଙ୍କାର ଅଟକଳ କରାଯାଇ ସରକାରଙ୍କ ପ୍ରଶାସନିକ ସ୍ୱୀକୃତି ପାଇଁ ପଠାଯାଇଛି । ଏହା ଦ୍ୱାରା ତାଳଚେର ନିକଟସ୍ଥ ସମଲଠାରେ ବ୍ରାହ୍ମଣୀ ନଦୀ ଉପରେ ଏକ ସ୍ଥାୟୀ ବ୍ୟାରେଜ୍ ନିର୍ମାଣ କରାଯାଇ ଉଭୟ ପାର୍ଶ୍ୱସ୍ଥିତ ଜଳସେଚନ ଉପଯୋଗୀ କୃଷି ଜମିକୁ ଜଳସେଚନ ଯୋଗାଇ ଦିଆଯାଇ ପାରିବ । ପ୍ରଥମ ପର୍ଯ୍ୟାୟର କାମ ଠିକ୍ ସମୟରେ ଶେଷ କରିବା ପାଇଁ ରେଙ୍ଗାଲିଠାରେ ସମସ୍ତ ପ୍ରକାର ପ୍ରାରମ୍ଭିକ କାର୍ଯ୍ୟ ଯଥା କର୍ମଚାରୀମାନଙ୍କ ପାଇଁ ବାସଗୃହ, ରେଙ୍ଗାଲିକୁ ପକ୍କାରାସ୍ତା ଦ୍ୱାରା ସଂଯୋଗ, ପାନୀୟଜଳ, ବିଦ୍ୟୁତ୍‌ଶକ୍ତି, ସ୍ୱାସ୍ଥ୍ୟକେନ୍ଦ୍ର, ଶିକ୍ଷାକେନ୍ଦ୍ର ଆଦି ଶେଷ ହୋଇଅଛି । ବର୍ତ୍ତମାନ ବିଭିନ୍ନ ପାହ୍ୟାରେ ୯୦ ଜଣ ଇଞ୍ଜିନିୟର ଓ ୧୫୦ ଜଣ ସବ୍-ଆସିଷ୍ଟାଣ୍ଟ ଇଞ୍ଜିନିୟର ଏହି ଯୋଜନା କାର୍ଯ୍ୟକୁ ରୂପ ଦେଉଛନ୍ତି ।

ବିଭିନ୍ନ ସ୍ତରରେ ପ୍ରାୟ ୬,୦୦୦ ଶ୍ରମିକ କାର୍ଯ୍ୟରେ ଲାଗିଛନ୍ତି । ଏତଦ୍ ବ୍ୟତୀତ ଏହି କାର୍ଯ୍ୟ ସହିତ ସଂପୃକ୍ତ ଅର୍ଥ ବିଭାଗ, କର୍ମ ଯୋଗାଣ ବିଭାଗ, ସ୍ୱାସ୍ଥ୍ୟ ଓ ଶିକ୍ଷା ବିଭାଗ, ଲୋକସମ୍ପର୍କ ବିଭାଗ, ବନ ବିଭାଗ, ରାଜସ୍ୱ-ବିଭାଗ, ପୋଲିସ୍ ବିଭାଗ, ଓ ଡାକ ତାର ବିଭାଗ କର୍ମଚାରୀମାନେ ସମନ୍ୱୟ ଓ ସଂହତି ରକ୍ଷାକରି କାର୍ଯ୍ୟ କରୁଅଛନ୍ତି । ସରକାର ବୁଡିଅଞ୍ଚଳର ବହୁ ଯୁବକଙ୍କୁ ସେମାନଙ୍କର ଯୋଗ୍ୟତା ବିବେଚନା କରି ବିଭିନ୍ନ ଶ୍ରେଣୀରେ ନିଯୁକ୍ତି ଦେଉଛନ୍ତି ।

ଏହି ସବୁ ଆନୁସାଙ୍ଗିକ କାର୍ଯ୍ୟ ଛଡ଼ା ମୌଳିକ ବନ୍ଧ-ନିର୍ମାଣକାର୍ଯ୍ୟ ମଧ୍ୟ ଆଗେଇ ଚାଲିଛି । ଦୈନନ୍ଦିନ ପ୍ରାୟ ୩୦୦ ପଥର ବନ୍ଧତାଡ଼ା ମିସ୍ତ୍ରୀ ଏବଂ ସେମାନଙ୍କର ସହକାରୀ ଶ୍ରମିକ ପ୍ରାୟ ୨,୫୦୦ ଜଣ ବନ୍ଧ ନିର୍ମାଣ କାର୍ଯ୍ୟରେ ଲାଗିଛନ୍ତି । ନଦୀର ଗଭୀର ଅଂଶରେ ବନ୍ଧ କାମ କରିବା ପାଇଁ ନଦୀର ପ୍ରାକୃତିକ ଜଳଧାର ବଦଳାଇବାକୁ ହୋଇଥାଏ । ତେଣୁ ଅନ୍ୟ ଏକ ଅସ୍ଥାୟୀ ନାଳ ନଦୀର ପଥର ତଟାଣ ଉପରେ ଖୋଳାଯାଇ ଦୁଇଟି ଫୁଙ୍କାର ବିଶିଷ୍ଟ ସ୍ଲୁଇସ୍ କରାଯାଉଛି । ନଦୀର ଗଭୀର ଅଂଶର ଜଳ ଏହି ଧାରରେ ଛାଡ଼ିବା ପାଇଁ ବନ୍ଧର ସାମାନ୍ୟ ଉପର ଶଯ୍ୟାରେ ଏକ ଅସ୍ଥାୟୀ ବନ୍ଧ ନିର୍ମାଣ ଚାଲିଛି । ଏଠାରେ ନଦୀର ପ୍ରସ୍ଥ ୬୦ ମିଟର ଏବଂ ଖରାଦିନେ ପ୍ରାୟ ୨୫ ମିଟର ଗଭୀର ଜଳ ରହେ ।

ଏହି ଅସ୍ଥାୟୀ ବନ୍ଧ ନଦୀ ଶଯ୍ୟାରେ ଥିବା ପଥର ଓ ସିମେଣ୍ଟ ଗୋଡ଼ିର ତୁଳ ଦ୍ୱାରା ବନ୍ଧ କରାଯାଉଛି । ସମ୍ପୂର୍ଣ୍ଣ ଜଳନିରୋଧ ପାଇଁ ମାଟି ଓ ଶାଲିଟ୍ରର ଆଚ୍ଛାଦନ କରି ଲୁହା ସିଟ୍ ପାଇଲ୍ ଦିଆଯିବ । ସେହିପରି ବନ୍ଧର ନିମ୍ନ ସ୍ରୋତରେ ମଧ୍ୟ ଏତାଦୃଶ ଏକ ବନ୍ଧ ନିର୍ମାଣ କରାଯିବ । ୧୯୮୮ ମସିହା ଡିସେମ୍ବର ମାସ ଶେଷ ସୁଦ୍ଧା ଏହି ଅସ୍ଥାୟୀ ବନ୍ଧ କାର୍ଯ୍ୟ ଶେଷକରି ଜଳ ନିଷ୍କାସନ କରାଯାଇ ନଦୀର ଗର୍ଭର ଅଂଶର ବନ୍ଧ କାର୍ଯ୍ୟ ଆରମ୍ଭ ହେବ । ଏହି ଅସ୍ଥାୟୀ ବନ୍ଧ ବିଶ୍ୱସ୍ତ ଇଞ୍ଜିନିୟରମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏବଂ ସ୍ଥାୟୀ ବନ୍ଧର ନିଅଁ ଖୋଳା ଏବଂ ବନ୍ଧର ପଥର ଯୋଡ଼େଇ ଓ କଂକ୍ରିଟ୍ କାର୍ଯ୍ୟ ଓଡ଼ିଶା ନିର୍ମାଣ ନିଗମ ସଂସ୍ଥା ଦ୍ୱାରା କରାଯାଉଅଛି ।

ରେଙ୍ଗାଲି ବହୁମୁଖୀ ଯୋଜନା ଅତି ସୁଦୂର ପ୍ରସାରୀ । ଏହି ସୁପରିକଳ୍ପିତ ଯୋଜନା ସମ୍ପୂର୍ଣ୍ଣ ହେଲେ ବିଶୁଦ୍ଧ ପ୍ରାକୃତିକ ଜଳ ସମ୍ପଦର ବିନିଯୋଗ ହେବ । ପର୍ଯ୍ୟାୟ କ୍ରମେ ୧୦୦ ମେଗାୱାଟରୁ ୨୪୦ ମେଗାୱାଟ୍ ପର୍ଯ୍ୟନ୍ତ ବିଦ୍ୟୁତ୍ ଶକ୍ତି ଉତ୍ପାଦିତ ହୋଇପାରିବ ଏବଂ ୨,୬୦୦ ବର୍ଗ କିଲୋମିଟର ଚିରବନ୍ୟା ପ୍ରପୀଡ଼ିତ ଅଞ୍ଚଳ ବନ୍ୟା ପ୍ରକୋପରୁ ରକ୍ଷା କରାଯାଇପାରିବ । ଦ୍ୱିତୀୟ ପର୍ଯ୍ୟାୟରେ ୨ ଲକ୍ଷ ୬୦ ହଜାର ହେକ୍ଟରରୁ ୪ ଲକ୍ଷ ୨୩ ହଜାର ହେକ୍ଟର ପର୍ଯ୍ୟନ୍ତ ଜମି ଜଳସେଚିତ ହୋଇ ପାରିବ ।

ଏହା ବ୍ୟତୀତ ଏହି ଜଳଭଣ୍ଡାରରେ ମଧ୍ୟ ମତ୍ସ୍ୟ ଚାଷ କରାଯାଇପାରିବ । ଏହି ଦୃଷ୍ଟିରୁ ଜଳ ଭଣ୍ଡାରରେ ଜଳ ସଂଗୃହୀତ ହେବା ପୂର୍ବରୁ ସମସ୍ତ ଜଙ୍ଗଲ ସଫା କରିବାର ବ୍ୟବସ୍ଥା ହେଉଛି । ଏହି କୃତ୍ରିମ ହ୍ରଦ ଏକ ପ୍ରାକୃତିକ ପରିବେଷ୍ଟନୀ ମଧ୍ୟରେ ଅବସ୍ଥିତ ଥିବାରୁ ଏହା ଭବିଷ୍ୟତରେ ଏକ ପର୍ଯ୍ୟଟନ କେନ୍ଦ୍ରସ୍ଥଳୀ ହୋଇ ବହୁ ଦେଶ ବିଦେଶାଗତ ପର୍ଯ୍ୟଟକମାନଙ୍କର ଚିତ୍ତ ବିନୋଦନ କରିବ ଏଥିରେ ସନ୍ଦେହ ନାହିଁ । ଏହି ହ୍ରଦର ଚାରି ପାଖରେ ବହୁ ଅରଣ୍ୟାନୀ ପର୍ବତମାଳା ଘେରି ରହିଅଛି । ଏହାର ଅନତି ଦୂରରେ ଜନାକୀର୍ଣ୍ଣ ତାଳଚେର ଖଣି ଓ ଶିଳ୍ପାଞ୍ଚଳ ସମ୍ବଲପୁରର ଘନ ଜନବସତି ଅଞ୍ଚଳ ଏବଂ କେନ୍ଦୁଝରର ଖଣି ସମ୍ପଦ ଅଞ୍ଚଳ ଘେରି ରହିଅଛି । ତେଣୁ ଜନାକୀର୍ଣ୍ଣ ଶବ୍ଦ ବହୁଳ ଅଞ୍ଚଳ ସହିତ ଏହି ପ୍ରାକୃତିକ ଶୋଭା ସମ୍ପଦ ଭରା ହ୍ରଦଟି ତାର ଶାନ୍ତ, ସ୍ନିଗ୍ଧ, ନୀରବତାର ସମନ୍ୱୟତା ରକ୍ଷା କରି ଜୀବ ଜଗତରେ ଅପାର ଆନନ୍ଦ ଦେବା ସଙ୍ଗେ ସଙ୍ଗେ ଦେଶକୁ ସମୃଦ୍ଧିଶାଳୀ କରିପାରିବ ।

ମୁଖ୍ୟ ନିର୍ମାଣ ଯନ୍ତ୍ରୀ
ରେଙ୍ଗାଲୀ ବହୁମୁଖୀ ବନ୍ଧ ଯୋଜନା



# [illegible]

କଳାହାଣ୍ଡି ଜିଲ୍ଲାର ସେ ଗୋଟିଏ ମନୋରମ ସ୍ଥାନ—ମଦନପୁର-ରାମପୁର । ଦୁଇପଟେ ପାହାଡ଼, ବୃକ୍ଷଲତାରେ ପରିପୂର୍ଣ୍ଣ । ପାହାଡ଼ତଳକୁ ଉର୍ବର ଶସ୍ୟ ଜମିମାନ—ଛିଡ଼ାରେ ଭିତରେ ଉତ୍ତୁଙ୍ଗ ଶାଳଗଛମାନେ ଠିଆହୋଇଛନ୍ତି । ଗଛ ବୃକ୍ଷ ସନ୍ଧିରେ ଅଣଓସାରିଆ ନଇଟିଏ କୁଳୁ କୁଳୁ ହୋଇ ବହିଯାଉଛି । ପାହାଡ଼ିଆ ଝରଣାଟିଏ—ନଈ ଆଖ୍ୟା ପାଉନାହିଁ । ନାଁ ତାର ଉତେଇ । ତା' ଭିତରେ ପଥର ମୂର୍ତ୍ତିଅମାନ ଅମାନିଆ ପଣରେ ଠିଆହୋଇ ରହିଛନ୍ତି—ଆଉ ଉତେଇ ନଈର ଉଚ୍ଛଳ ପାଣିସୁଅ ସେଇ ସବୁ ମୂର୍ତ୍ତିଅମାନଙ୍କୁ ଚାରିପଟୁ ଘେରି ଥରି ଥରି କୁଳୁ କୁଳୁ ସ୍ୱନରେ ବଣଭୂଇଁର ନିର୍ଜନତାକୁ ମୁଖରିତ କରୁଛନ୍ତି । ନଈଠାରୁ ୧କ କିଲୋମିଟର ଦୂରରେ ଦୀର୍ଘିକାଟିଏ—ନାଁ ତା'ର ହରିହର ସାଗର । ମଦନପୁର-ରାମପୁରର ପିଲାମାନେ ଭୂଗୋଳ ପଢ଼ିଲା ବେଳେ ଯୋଉଦିନ ନଦୀ ଓ ସାଗର ବିଷୟ ପଢ଼ନ୍ତି ଓ ବୁଝନ୍ତି.....ସେଦିନେ ମନେ ମନେ ଏଇ ଉତେଇ ନଈକୁ ଓ ହରିହର ସାଗରକୁ ନଈ ସମୁଦ୍ର ବୋଲି କଳ୍ପନା କରିଥାନ୍ତି । ପ୍ରାୟ ସତୁରୀ ଏକର ନିମ୍ନ ଭୂମିରେ ଜମି ରହିଥିବା ଜଳଭଣ୍ଡାରଟି ଏଇ ହରିହର ସାଗର ମଦନପୁରଗ୍ରାମ ରାମପୁରଠାରୁ ପ୍ରାୟ ୨-୩ କିଲୋମିଟର ଦୂର କଳାହାଣ୍ଡି ଜିଲ୍ଲାର ଆଉ ଗୋଟିଏ ରାମପୁରଠାରୁ ସ୍ୱତନ୍ତ୍ର କରିବା ଲାଗି ଏହାର ନାମ ଏପରି ଯୋଡ଼ାହୋଇଛି ।

ଫେବୃଆରୀ ମାସ ବାର-ତେର ତାରିଖ ଦୁଇଦିନ ଏଠି ରହିଥିଲି । ରାମପୁରରେ କଳାହାଣ୍ଡି ଜିଲ୍ଲାର ଜିଲ୍ଲାସ୍ତରୀୟ ଶ୍ରୀ ଅରବିନ୍ଦ ପାଠଚକ୍ର ସମ୍ମିଳନୀ ହେଉଥାଏ । ମୋତେ ସେଠିକି ଶ୍ରୀଅରବିନ୍ଦଙ୍କ ସମାଜଦର୍ଶନ ଉପରେ ବକ୍ତୃତା ଦେବାକୁ ନିମନ୍ତ୍ରଣ କଲେ । ସେତେବେଳେ କଟକ ଭୁବନେଶ୍ୱର ଦିନସାରି ବସନ୍ତ ଋତୁର ସ୍ପର୍ଶରେ ସୁଖ-ବିହ୍ୱଳ ମାତ୍ର ମଦନପୁର-ରାମପୁରରେ ଦିନଭାଗ ବସନ୍ତର ସ୍ପର୍ଶରେ ଉଷ୍ମଶୀତଳ—କିନ୍ତୁ ରାତିରେ ବେଶ୍ ଥଣ୍ଡା ପଡ଼ିଥାଏ । ଶୀତଋତୁ ଏତେ ଚଞ୍ଚଳ ଏ ଅଞ୍ଚଳରୁ ବିଦାୟ ନେବାକୁ ନାରାଜ । ମାତ୍ର ଖୁବ୍ ଚମତ୍କାର ଲାଗୁଥାଏ ପାଗଟି ସେଠି । ଛୋଟ ବଜାରଟିଏ । ଗ୍ରାମର ଶେଷ ମୁଣ୍ଡରେ ଏ ଅଞ୍ଚଳର ପୂର୍ବକାଳୀନ ଜମିଦାରଙ୍କ ବିରାଟ ପ୍ରାଚୀର ଘେରା ସୌଧ । ଏଠି କହନ୍ତି ଉଆସ । ପ୍ରଜାମାନଙ୍କ ଆଖିରେ ଜମିଦାର ଥିଲେ ରାଜା ।

ସାଧାରଣ ଲୋକେ ଏଠି ଖୁବ୍ ଗରୀବ । ଆତମାଧ୍ୟ ଅଳସୁଆ । ନିଶ୍ଚିନ୍ତ ଓ ନିଦକ ଜୀବନ ଯାପନ କରିବା ଏଠାର ଅଧିବାସୀମାନଙ୍କ ଆଦର୍ଶ । ଖୁବ୍ ସରଳ ଲୋକ ଏମାନେ—ମାତ୍ର ଜଡ଼ତାର ଅନ୍ଧକାର ଭିତରେ ଲୋକଙ୍କ ପ୍ରାଣଶକ୍ତି ବନ୍ଦୀ ହୋଇ ରହିଛି । ଉତେଇ ନଦୀ ଅଛି । ହରିହର ସାଗର ଅଛି । ଗୋଡ଼ିଏ ପରିଶିଷ୍ଟ ଖୋଳିଦେଲେ କୂଅ ଭିତରେ ପାଣି ପଡ଼ୁଛି । ଅଥଚ

ଲୋକେ ଏଠି ଯାହିତାହି ଧାନରୁଷ ଗଣ୍ଡିଏ କରିଦେଉ ନିଶ୍ଚିତ । ଏ ଜମି ଏତେ ଉର୍ବର ଯେ ଏଠି ନାନାଦି ପନିପରିବା ମଧ୍ୟ ସୁପହୋଇ ପାରନ୍ତା । ମାତ୍ର ଭାତରେ କଖାରୁ ଠାରୁ ଜହ୍ନୀକୋଟି ପର୍ଯ୍ୟନ୍ତ ସବୁ ଆସେ ଭଞ୍ଜନଗର ଆଡୁ । ଲୋକେ ଡାଲି, ତରକାରି ଖାଇବାକୁ ଅଭ୍ୟସ୍ତ ଦେଖାନ୍ତି ନାହିଁ । ତେଣୁ ମାଡରେ ପରିବା ଦୋକାନଟିଏ ମଧ୍ୟ ବଜାରରେ ନାହିଁ । ହୁଟିହେବ ସାତର ସୁବିପଟେ ତାମନ ନହିଥ ଜଳ ଅନ୍ୟୂନ ହଜାରେ ଲଗାଯାଇ ପାରନ୍ତା, କଦଳୀବୃକ୍ଷ କରାଯାଇପାରନ୍ତା, ପାଖାପାଖି ତମଳା ବଣଟିଏ ବି ହୋଇ ପାରନ୍ତା, କୋଡ଼ିଏ ପଚିଶିଫୁଟ ଖୋଳିଦେଲେ— କୂଅରେ ଝର୍ ଝର ପାଣି ପଡୁଛି । ତାକୁ ମଟାଇ କେତେ ଜଣ ଉପକୃତ ନହୁଅନ୍ତା କିନ୍ତୁ ନା ଏ ଲୋକେ କିଛି କରିବେ ନାହିଁ, ଏମାନେ କିଛି କରନ୍ତୁ ବୋଲି ମଧ୍ୟ ଏମାନଙ୍କୁ ପ୍ରବର୍ତ୍ତାଇବାକୁ କେହି ନାହିଁ । ଦେଶଟାଯାକର ବାଳ, ବୃଦ୍ଧ, ଯୁବା ସମସ୍ତେତ ଆଜ ରାଜନୀତିରେ ମାତିଛନ୍ତି । ଲୋକଙ୍କ ପାଖକୁ ଯାଉଛି କିଏ ? ଲୋକଙ୍କୁ ଜୀବନର ଭଲ ମନ୍ଦ କଥା ଶୁଣାଉଛି ବା କିଏ ?

ଏଠି ହାଇସ୍କୁଲଟିଏ ଅଛି, ବାଳିକା ସ୍କୁଲଟିଏ ଅଛି, ତହସିଲ ଅଫିସ ଓ ବି· ଡି· ଓ· ଅଫିସମାନ ଅଛି । ଅଛି ମଧ୍ୟ ଡାକ୍ତରଖାନାଟିଏ । ପ୍ରାଇମେରି ହେଲ୍‌ଥ ସେଣ୍ଟରଟିଏ । ଗାଁଟିର ପ୍ରାକୃତିକ ପରିବେଶ ଭାରି ସୁନ୍ଦର, ଏଠୁ ରାସ୍ତା ପଡ଼ିଛି କଳାହାଣ୍ଡିକୁ, ଫୁଲବାଣୀକୁ, ଭୁବନେଶ୍ୱରକୁ, ବଲାଙ୍ଗୀରକୁ । ମାତ୍ର ଏଇଭଳି ପେଣ୍ଡଛାପାଟିରେ ଯୋଉ ବିଶ୍ୱର୍ଯା ରହିବା କଥା ତା' ନାହିଁ ।

ଏଠାର ପ୍ରଧାନ ଅସୁବିଧା ଜଳସେଚନ ବ୍ୟବସ୍ଥା କରାଯାଇନାହିଁ । ଅବଶ୍ୟ ଏବେ ସରକାର ଉତେଇ ନଦୀର ଖଇରଭେଲ୍ଲ ପାଖେ ଡ୍ୟାମ୍‌ଟିଏ କରି ଉତେଇ ଜଳସେଚନ ଯୋଜନା କାର୍ଯ୍ୟ ହାତକୁ ନେଇଛନ୍ତି । ବର୍ତ୍ତମାନ ପାଇଁ ଡାଇଭରସନ୍ ଓଅର୍ କରି ରିସ୍ତା ପର୍ଯ୍ୟନ୍ତ କିଛି କିଛି ପାଣି ବର୍ଷା ଋତୁରେ ଓ ଶରତ ଋତୁରେ ମଡାଯାଇ ପାରୁଛି । ଏ ଡାମ୍‌ଟି ସଂପୂର୍ଣ୍ଣ ଭାବେ ସଂପନ୍ନ ହୋଇଗଲେ ନକ୍ସୁଲ, ସମପୁର, କଲମ୍ପ-ମୁଣ୍ଡା ବ୍ଳକ୍ ଓ ବୁଡଭେଲି ଅଂଚଳ ଜଳସେଚିତ ହୋଇ-ପାରିବ । ଏହାଛଡା ବିଭିନ୍ନ ସ୍ଥାନରେ ବହୁ କୂଅ ମଧ୍ୟ ଖୋଳା ହେବା ଦରକାର । କିଛି କିଛି କୂଅ ଖୋଳା କାମ ଚାଲିଛି ମଧ୍ୟ । ସ୍ଥାନୀୟ ସରପଞ୍ଚ ଶ୍ରୀ ବାସୁଦେବ ସିଂହ ଓ ଭୂତପୂର୍ବ ଜମିଦାର ବଂଶର ଭୂତପୂର୍ବ ଏମ୍. ଏଲ୍. ଏ. ଶ୍ରୀ ଯୋଗେଶଚନ୍ଦ୍ର ସିଂହ ଦେଓଙ୍କ ସଙ୍ଗେ କଥାବାର୍ତ୍ତା ହେଉଥିବେଳେ ସେମାନେ କହିଲେ—

ଜଳସେଚନ ବ୍ୟବସ୍ଥା ସାଙ୍ଗକୁ ଆଉ କିଛି ରାସ୍ତା-ଘାଟ ମଧ୍ୟ ଦରକାର । ରାମପୁରଠାରୁ ଅମାଟ ଯାଏ ଭଲ ସଡକଟିଏ ପଡନ୍ତା । ଏଣେ ଉତେଇବ୍ରିଜ୍ ଓ ଦୁଇ ତିନିଟା ନାଳ ଉପରେ ବ୍ରିଜ୍ ହୋଇଗଲେ କେସିଙ୍ଗା ଓ ଟିଟିଲାଗଡକୁ ସବୁଦିନିଆ ରାସ୍ତା ପଡିଯାନ୍ତା । ପୁଣି ରିସଡା ରାସ୍ତାରେ ତେଲ ନଦୀର ପୋଲ କରିଦେଲେ ବଲାଙ୍ଗୀରକୁ ବି ସବୁଦିନିଆ ରାସ୍ତା ହୋଇଯାନ୍ତା । ସରପଞ୍ଚ ବାସୁଦେବ ବାବୁ କହିଲେ—ମଦନପୁର ଓ ରିସଡାରେ ଏପର୍ଯ୍ୟନ୍ତ ବିଦ୍ୟୁତ ଶକ୍ତି ଆସିନି । ଯଦି ବିଦ୍ୟୁତ ଶକ୍ତି ଯୋଗାଇ ଦିଆଯାନ୍ତା, ତେବେ ରାଉଲ ନଦୀରୁ ଉଠା-ଜଳସେଚନ ଯୋଜନା ମଧ୍ୟ ହୋଇ ପାରନ୍ତା ।

ଯୋଗେଶ ବାବୁ କହିଲେ—ଏଠି ସବ୍-ଟ୍ରେଜେରୀଟିଏ ଦରକାର । ଏବଂ ବର୍ତ୍ତମାନ ଷ୍ଟେଟ୍‌ବ୍ୟାଙ୍କର ଯୋଉ ସବ୍-ଅଫିସଟି ହୋଇଛି, ତାହା ଯଦି ବ୍ରାଞ୍ଚ ଅଫିସ ହୁଅନ୍ତା ତେବେ କୃଷକମାନଙ୍କ ପକ୍ଷେ କୃଷି-ଋଣ ପାଇବା ସହଜ ଓ ସୁବିଧା ହୁଅନ୍ତା ।

ଏ ଅଂଚଳଟି ବର୍ତ୍ତମାନ ଏତେ ଦରିଦ୍ର ସତ—ମାତ୍ର ଅନେକଙ୍କୁ ବୋଧେ ଜଣାନଥିବ ଯେ ମଦନପୁର-ରାମପୁର ଅଂଚଳର ଶାଳ ଜଂଗଲ ପୂର୍ବତନ ଗଡଜାତ ଏରିଆରେ ପ୍ରଥମ ସ୍ଥାନ ଅଧିକାର କରିଥିଲା ଓ ଭାରତରେ ତୃତୀୟ ସ୍ଥାନ ଅଧିକାର କରିଥିଲା । ମାତ୍ର ସରକାର ଯେଉଁ ଭାବେ ଶାଳ କଟା ନିଲାମ ଦଉଛନ୍ତି—ସେଥିରେ ଏ ଜଂଗଲ କ୍ରମଶଃ ପଦା ହୋଇ ଯିବାକୁ ବସିଲାଣି । କଣ୍ଟ୍ରାକ୍ଟରମାନେ ଆଗ ଜାଳେଣୀ କାଠ ହିସାବରେ ଡାଳ ବାହିମାନ ନେଇଯାଉଛନ୍ତି ଓ ତା'ପରେ ନେଉଛନ୍ତି ଟିମ୍ବର । ଏହା ଫଳରେ କାଠ ଚୋରୀ ଲାଗି ସୁବିଧା ହୋଇଯାଉଛି ।

ଏଠି ବର୍ତ୍ତମାନ ପଞ୍ଚାୟତ ଶିଳ୍ପ ସଂସ୍ଥା ହିସାବରେ କରତ କଳ ଅଛି । ଏଠି ଚେଲବାଲ ଫର୍ନିଚର, ଚୌକି ଟେବୁଲ, ଦୁଆର ଆଦି ତିଆରି ହୋଇପାରେ । ଏଠା ଆଉ ଗୋଟିଏ ବଡ ବ୍ୟବସାୟ କେନ୍ଦୁପତ୍ର, ତାଛଡ଼ା ନିକଟସ୍ଥ ପାହାଡ଼ମାନଙ୍କରେ ଲୁହା, ମାଙ୍ଗାନିଜ୍, ଗ୍ରାଫାଇଟ୍ ଆଦି ଧାତୁ ରହିଛି ବୋଲି କୁହାଯାଏ ।

ମଦନପୁର-ରାମପୁର, ଲାଂଜିଗଡ ତହସିଲ ଅନ୍ତର୍ଗତ । ଏହାର ମୋଟ ଗ୍ରାମ ସଂଖ୍ୟା—୬୬୩ । ମୋଟ ଲୋକ ସଂଖ୍ୟା—୧୬୧,୫୩୦ (୧୯୬୧ ଜ:ଗ; ଅନୁଯାୟୀ) ।

ହରିଜନ ସଂଖ୍ୟା ୩୦,୨୫୪ ଓ ଆଦିବାସୀଙ୍କ ସଂଖ୍ୟା
ହେଲେ ସଂଖ୍ୟା ୩୦,୨୫୪ ଓ ଆଦିବାସୀଙ୍କ ସଂଖ୍ୟା ୮୭,୧୯୮ ଅଟେ । ୨୨,୦୫୮, ଅନ୍ୟାନ୍ୟ ସଂଖ୍ୟା ୮୭,୧୯୮ ଅଟେ । ୟ ତହସିଲରେ ରହିଛି ସାତଟି କ୍ଷୁଦ୍ର ଜଳସେଚନ ଯୋଜନା । ସେଥିରୁ ଦୁଇଟିରେ ପାଣି ମାଡୁନାହିଁ । ଚିଂ ବହିର୍ଭୂତ ୩,୬୯୩·୪୨ ଏକର ଜମି ୧,୯୬୨ ଜଣଙ୍କୁ ବଣ୍ଟା ଯାଇଛି । ସେଥି ମଧ୍ୟରୁ ହରିଜନ ୬୬୫ ଜଣ ପାଇଛନ୍ତି ୧,୨୨୦·୯୧ ଏକର । ଆଦିବାସୀ ୭୧୭ ଜଣ ୧,୪୧୪·୦୨ ଏକର ଏବଂ ଅନ୍ୟ ଜାତିର ୫୮୦ ଜଣ ପାଇଛନ୍ତି ୧,୦୫୮·୪୪ ଏକର ଜମି ।

ଏହାବ୍ୟତୀତ ଖେଦଖ୍ ଜମି ୩୭୪·୧୨ ଏକର ଜମିରୁ ୨୩୭ ଜଣ ହରିଜନ, ୨୫୦ ଜଣ ଆଦିବାସୀ ଓ ଅନ୍ୟ ଜାତିର ୧୪୭ ଜଣ ଜମିହୀନ ବ୍ୟକ୍ତିଙ୍କୁ ଯଥାକ୍ରମେ ୧୦୮·୮୭ ଏକର, ୧୬୨·୫୨ ଏକର ଓ ୭୮·୭୩ ଏକର ଜମି ଦିଆଯାଇଛି । ପୁଣି ସରକାରୀ ଅନାବାଦୀ ୨,୧୦୭·୯୨ ଏକର ଜମି ୨୫୭ ଜଣ ହରିଜନ, ୩୨୪ ଜଣ ଆଦିବାସୀ, ଓ ଅନ୍ୟ ଜାତିର ୧୮୭ ଜଣଙ୍କୁ ଦିଆଯାଇଛି ।

ଗୃହହୀନଙ୍କୁ ଗୃହ ଓ ଘରଡିହ ଯୋଗାଣ ଯୋଜନାରେ ୩୧୯ ଜଣ ହରିଜନ, ୨୪୭ ଜଣ ଆଦିବାସୀ, ଓ ଅନ୍ୟ ଜାତିର ୨୫୦ ଜଣ ବ୍ୟକ୍ତି ପ୍ରାୟ ୩୩·୪୪ ଏକର ଜମି ପାଇଛନ୍ତି । ତହସିଲଦାରଙ୍କଠାରୁ ଜାଣିବାକୁ ମିଳିଲା ଯେ ଏହି ତହସିଲର ୧୭୯ ଜଣ ଓଡ଼ିଶା ଭୂସଂସ୍କାର ଅଇନ୍‌ର ଧାରା ୩୬ (କ) ଅନୁଯାୟୀ ଦରଖାସ୍ତ କରିଥିଲେ । ସେଥି ମଧ୍ୟରୁ ୭୬ ଜଣଙ୍କ ନାମରେ ଉକ୍ତ ଅଇନ୍ ଅନୁଯାୟୀ ଜମି ବନ୍ଦୋବସ୍ତ କରାଯାଇଛି । ଏହି ଜମିର ପରିମାଣ ହେବ ୧୩୮·୫୬ ଏକର ।

ମଦନପୁର-ରାମପୁର ଅଂଚଳ ସମେତ ସମଗ୍ର ଲାଂଜିଗଡ଼ ତହସିଲଟି ନିଶ୍ଚିତ ଭାବେ ଏକ ବିଶ୍ୱର୍ଯ୍ୟମଣ୍ଡିତ ଅଂଚଳରେ ପରିଣତ ହେବାର ସମ୍ଭାବନାରେ ପରିପୂର୍ଣ୍ଣ । ମାତ୍ର ଏଠାର ଅଧିବାସୀ ଓ ନେତୃବୃନ୍ଦ ସଚେତନ ନ ହେଲେ ଏଠାର ଅସୁବିଧାମାନ କେବେ ଦୂର ହୋଇ ପାରିବନାହିଁ । ଉଦାହରଣ ସ୍ୱରୂପ ପଣ୍ଡକାମ ଲଠାରେ ଏବଂ ନରୁଲ୍ଲ-ଭେତର ଛତିକୁଡ଼ା ଠାରେ ଗୃହହୀନ ଆଦିବାସୀମାନଙ୍କ ଲାଗି ସରକାର କେତେକ ଘର ତିଆରି କରିଦେଇଛନ୍ତି । ମାତ୍ର ସେଠାରେ ଯାଇ ଦେଖିବାକୁ ମିଳିଲାଣି ଗୋଟିଏ ଦୁଇଟି ଘରେ ମାତ୍ର ଲୋକ ଅଛନ୍ତି ଓ ଅନ୍ୟ ଘରଗୁଡ଼ିକ ଖାଲିପଡ଼ିଛି ଏବଂ ସେ ଘରଗୁଡ଼ିକ ଖଞ୍ଜିବୁଛି ଗଲାଣି । ଘରଗୁଡ଼ିକ ମଧ୍ୟ ଅତି ଅବହେଳାରେ ଏବଂ କଦର୍ଯ୍ୟ ଭାବେ ତିଆରି ହୋଇଛି । ଅଥଚ ମୟୂରଭଂଜ ଜିଲ୍ଲାରେ ଲୋଧାମାନଙ୍କ ପୁନର୍ବସତି ପାଇଁ ଯେଉଁ ଘରଗୁଡ଼ିକ ତୋଳା ହୋଇ ସେମାନଙ୍କୁ ଦିଆଯାଇଛି—ସେ ସବୁ ଖୁବ୍ ସୁନ୍ଦର ମଜ୍‌ଭୁତ ଘର ଏବଂ ପ୍ରତିଘରେ ଲୋକେ ରହିଛନ୍ତି । ଏବଂ ଛେଳି ମେଣ୍ଢା କୁକୁଡ଼ା ଓ ଶାଗ ସବଜୀ ଷେତ ଆଦିରେ ସେ ଗାଁମାନ ହସିଉଠୁଛି । ଏସବୁର କାରଣ ଅନୁସନ୍ଧାନରୁ ବୁଝାଗଲା ଯେ କଳାହଣ୍ଡିର ଛତିକୁଡ଼ା ଓ ପଣ୍ଡକାମାଲର ଯେଉଁ ଗୃହହୀନମାନଙ୍କୁ ସେ ଘର ସବୁ ଦିଆଯାଇଥିଲା—ସେମାନେ ଆଦୌ ଗୃହବାସୀ ସ୍ୱଭାବର ଲୋକ ନୁହନ୍ତି । ସେମାନେ ଏକପ୍ରକାର ଭ୍ରାମ୍ୟ-ମାଣ ପରିବାର । ଯୋଉଠି ଷ୍ଟେଡ଼୍ କାମ, କେନାଲ ଖୋଳା କି କୋଠାବାଡ଼ି ନିର୍ମାଣ କାର୍ଯ୍ୟ ଚାଲିଲା ସେମାନେ ସେଠାକୁ ସପରିବାର ଯାନ୍ତି ଏବଂ ୩ । ୪ ମାସ ସେଇ ସ୍ଥାନରେ ରହିଯାନ୍ତି । ଏପରି କ୍ଷେତ୍ରରେ କର୍ତ୍ତୃପକ୍ଷ ସବୁକଥା ବୁଝିବା ଉଚିତ । ଗ୍ରାମର ନେତୃବୃନ୍ଦ ସରକାରୀ କର୍ମଚାରୀଗଣ, ସରପଞ୍ଚ, ଚେୟାରମାନ ଆଦି ସମସ୍ତେ ସଚେତନ ରହିବା କଥା ଓ ଆନ୍ତରିକତା ଦେଖାଇବାର କଥା । ତା' ନହେଲେ ସରକାର ଯେତେ ଯାହା ଯୋଜନା କଲେ ମଧ୍ୟ ଫଳ ବିଶେଷ କିଛି ହେବନାହିଁ ।

ମନୀଷା

## ଢେଙ୍କାନାଳ, ସୁନ୍ଦରଗଡ଼ ଓ ସମ୍ବଲପୁର ଜିଲ୍ଲାରେ ୪ କୋଟି ୪୭ ଲକ୍ଷ ୪୨ ହ ଟଙ୍କା ବ୍ୟୟରେ ଚାରୋଟି ମଧ୍ୟମ ଜଳସେଚନ ଯୋଜନା କାର୍ଯ୍ୟର ଶୁଭାର

ରାଜ୍ୟର ମରୁଡ଼ିପ୍ରବଣ ଅଞ୍ଚଳର ସ୍ଥାୟୀ ପ୍ରତିକାର ନିମନ୍ତେ ଯେଉଁସବୁ ପଦକ୍ଷେପ ନିଆଯାଉଛି, ତଦନୁଯାୟୀ ରାଜ୍ୟ ସରକାର ଚଳିତ ଆର୍ଥିକ ବର୍ଷରୁ ଢେଙ୍କାନାଳ, ସୁନ୍ଦରଗଡ଼ ଓ ସମ୍ବଲପୁର ଜିଲ୍ଲାରେ ୪ କୋଟି ୪୭ ଲକ୍ଷ ୪୨ ହଜାର ଟଙ୍କା ଖର୍ଚ୍ଚରେ ଚାରିଗୋଟି ମଧ୍ୟମ ଧରଣର ଜଳସେଚନ ଯୋଜନା କାର୍ଯ୍ୟ ଆରମ୍ଭ କରୁଛନ୍ତି ।

ଆଜି ଢେଙ୍କାନାଳ ଜିଲ୍ଲାର ଛେଣ୍ଡିପଦା ବ୍ଲକ୍ ଅନ୍ତର୍ଗତ ପାତ୍ରପଡ଼ା ଗ୍ରାମ ନିକଟରେ ରାଜସ୍ୱ, ଜଳସେଚନ ଓ ବିଦ୍ୟୁତ୍ ବିଭାଗ ମନ୍ତ୍ରୀ ଶ୍ରୀ ଶ୍ରୀବଲ୍ଲଭ ପାଣିଗ୍ରାହୀ 'ଅଞ୍ଜଳି' ନଦୀରେ ତିଆରି ହେବାକୁ ଥିବା ଏକ ଅଡ଼ିବନ୍ଧର ଶୁଭ ଦେଉଛନ୍ତି । ୫୨ ଲକ୍ଷ ୫୦ ହଜାର ଟଙ୍କା ବ୍ୟୟରେ ନିର୍ମିତ ହେଉଥିବା ଏହି ଅଡ଼ିବନ୍ଧ ଫଳରେ ଖରିଫ୍ ଋତୁରେ ୨,୨୦୦ ଏକର ଜମିକୁ ପାଣି ଯୋଗାଇ ଦିଆଯାଇ ପାରିବ । ଚଳିତ ଆର୍ଥିକ ବର୍ଷରୁ ଏହି ଅଡ଼ିବନ୍ଧର କାର୍ଯ୍ୟ ଆରମ୍ଭ କରାଯାଉଛି ଏବଂ ଆସନ୍ତା ଆର୍ଥିକ ବର୍ଷ ନିମନ୍ତେ ଏଥିପାଇଁ ୧୫ ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି ।

ଏତଦ୍ ବ୍ୟତୀତ ଆସନ୍ତାକାଲି (ତା ୧୦-୩-୧୯୬୭) ଦିନ ସମ୍ବଲପୁର ଜିଲ୍ଲାର ପଦ୍ମପୁର ସବ୍‌ଡିଭିଜନରେ ଥିବା 'କୁକୁରିଢୋର ନାଳ' ଓ ସୁନ୍ଦରଗଡ଼ ଜିଲ୍ଲାର ସରଫ୍‌ଗଡ଼ ପାଖରେ ଥିବା ଇନ୍ଦ୍ରାନାଳ ଉପରେ ଦୁଇଟି ବନ୍ଧ ନିର୍ମାଣ କାର୍ଯ୍ୟର ଭିତ୍ତିପ୍ରସ୍ତର ସ୍ଥାପିତ ହେବ । ମୁଖ୍ୟମନ୍ତ୍ରୀ ଶ୍ରୀ ବିନାୟକ ଆଚାର୍ଯ୍ୟ ଏହି ଦୁଇଟି ଯୋଜନାର ଭିତ୍ତିପ୍ରସ୍ତର ସ୍ଥାପନ କରିବେ । କୁକୁରିଢୋରନାଳ ଉପରେ ପ୍ରାୟ ୮୬ ମିଟର ଲମ୍ବ ଓ ୧୮ ମିଟର ଉଚ୍ଚତା ବିଶିଷ୍ଟ ବନ୍ଧ କାମ ଚଳିତ ବର୍ଷରୁ ଆରମ୍ଭ କରାଯାଉଛି । ଏହି ଯୋଜନାରେ ପ୍ରାୟ ୬୩ ଲକ୍ଷ ଟଙ୍କା ଖର୍ଚ୍ଚ ହେବ ବୋଲି ହିସାବ କରାଯାଇଛି ଏବଂ ଏହା ଫଳରେ ସାତଗୋଟି ଗ୍ରାମର ୩,୩୬୨ ଏକର ଜମିକୁ ଜଳସେଚନର ସୁବିଧା ଯୋଗାଇ ଦିଆଯାଇ ପାରିବ । ୧୯୬୭-୬୮ ଆର୍ଥିକ ବର୍ଷ ପାଇଁ ଉକ୍ତ ଯୋଜନା ନିମନ୍ତେ ୧୦ ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି ।

ସୁନ୍ଦରଗଡ଼ ଜିଲ୍ଲାର ସରଫ୍‌ଗଡ଼ଠାରେ 'ଇନ୍ଦ୍ରାନାଳ' ଉପରେ ୨୪୬ ମିଟର ଲମ୍ବ ଓ ପ୍ରାୟ ୨୧ ମିଟର ଉଚ୍ଚତା ବିଶିଷ୍ଟ ବନ୍ଧର ନିର୍ମାଣ କାର୍ଯ୍ୟ ଚଳିତ ବର୍ଷରୁ ଆରମ୍ଭ କରାଯାଉଛି । ଏହି ଯୋଜନା ଫଳରେ ଖରିଫ୍ ଋତୁରେ ୩,୯୮୧ ଏକର ଏବଂ ରବି ଋତୁରେ ୬୩୫ ଏକର ଜମିରେ ଜଳସେଚନ କରାଯାଇ ପାରିବ । ଉକ୍ତ ଯୋଜନାରେ ୧ କୋଟି ୪୪ ଲକ୍ଷ ୫୯ ହଜାର ଟଙ୍କା ଖର୍ଚ୍ଚ ହେବ ବୋଲି ହିସାବ କରାଯାଇଛି । ଆସନ୍ତା ୧୯୬୭-୬୮ ଆର୍ଥିକ ବର୍ଷ ପାଇଁ ଏହି ଯୋଜନା ନିମନ୍ତେ ୧୦ ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି ।

ଏତଦ୍‌ବ୍ୟତୀତ ସୁନ୍ଦରଗଡ଼ ଜିଲ୍ଲାର ତଳସରା ନିକଟରେ ବଡ଼ଝୋର ନାଳ ଉପରେ ୧,୯୮୦ ମିଟର ଲମ୍ବ ଓ ୨୦ ମିଟର ଉଚ୍ଚତା ବିଶିଷ୍ଟ ଏକ ବନ୍ଧର କାମ ଚଳିତ ବର୍ଷ ଆରମ୍ଭ କରାଯାଉଛି । ଏହି ବନ୍ଧ ଫଳରେ ଖରିଫ୍ ଋତୁରେ ପ୍ରାୟ ୫,୦୦୦ ଏକର ଓ ରବି ସମୟରେ ପ୍ରାୟ ୯୦୦ ଏକର ଜମିରେ ଜଳସେଚନ ହୋଇପାରିବ । ଏହି ଜଳସେଚନ ଯୋଜନାରେ ୨ କୋଟି ୧୭ ଲକ୍ଷ ୩୦ ହଜାର ଟଙ୍କା ଖର୍ଚ୍ଚ ହେବ ବୋଲି ହିସାବ କରାଯାଉଛି । ୧୯୬୭-୬୮ ଆର୍ଥିକ ବର୍ଷ ନିମନ୍ତେ ଉକ୍ତ ଯୋଜନା ପାଇଁ ୧୦ ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି ।

କଳା ବିକାଶ କେନ୍ଦ୍ରର ପ୍ରାଣ ପ୍ରତିଷ୍ଠାତା ଶ୍ରୀ ବାବୁଲାଲ ଯୋଶୀ ହଠାତ୍ ମୋତେ କେନ୍ଦ୍ରର ଗୋଟିଏ ଉତ୍ସବକୁ ଡାକି ପଠାଇଲେ ଏବଂ ଜଣେ ଦର୍ଶକ ହିସାବରେ ମୁଁ ସେ ଉତ୍ସବରେ ଯୋଗ ଦେଲି । କେନ୍ଦ୍ରର ଚତୁର୍ବିଂଶତିତମ ବାର୍ଷିକ ଉତ୍ସବ ପାଇଁ ଆୟୋଜିତ ଏହି ଉତ୍ସବରେ ମୋତେ ସାହାଯ୍ୟ କରିବା ପାଇଁ ଅନୁରୋଧ କରାଗଲା । ମୁଁ ଉତ୍ସବରେ ୧୦ ଟଙ୍କା ସାହାଯ୍ୟ କଲି, କିନ୍ତୁ ବାବୁଲାଲ ହସି କହିଲେ "ଟଙ୍କା ବଡ଼ କଥା ନୁହେଁ । ଆପଣଙ୍କର ସବୁ ପ୍ରକାର ସାହାଯ୍ୟ ସହାନୁଭୂତି ଆଗେ ଋହୁଁ ।

୧୯୫୨ରୁ ୧୯୭୭—ଆଜି କଳା ବିକାଶ କେନ୍ଦ୍ର କେତେ ସୁଖ ଦୁଃଖ ଓ ଉତ୍‌ଥାନ ପତନର ଇତିହାସ ବହନ କରି ତାହାର ରୌପ୍ୟ-ମହୋତ୍ସବ ପାଳନ କରିବାକୁ ଯାଉଛି । ସ୍ୱାଧୀନତା ପ୍ରାପ୍ତିପରେ କେତେ ଅନୁଷ୍ଠାନ ମୁଣ୍ଡ ଟେକି ମଉଳି ଗଲେ, କିନ୍ତୁ କଳା ବିକାଶ କେନ୍ଦ୍ର ପରି ଗୋଟିଏ ଅନୁଷ୍ଠାନ ଆଜି ତିଷ୍ଠି ରହିଛି ଓ ଆଗେଇ ଚାଲିଛି, କାରଣ ତା ପଛରେ ରହିଛି ବଳିଷ୍ଠ ନେତୃତ୍ୱ, କର୍ମକର୍ତ୍ତାମାନଙ୍କର ଏକାନ୍ତ ଅଧ୍ୟବସାୟ ଓ କଠୋର ପରିଶ୍ରମ—ଶୃଙ୍ଖଳା ଓ ନିର୍ମଳ ପରିଚାଳନା ।

# କଳା ବିକାଶ କେନ୍ଦ୍ରର ଭୂମିକା

## (ରୌପ୍ୟ ଜୟନ୍ତୀ ଉପଲକ୍ଷେ)

ଶ୍ରୀ ରଣଧୀର ଦାସ

ସେତେବେଳେ କହୁଥିଲେ—ଆମେ ଆଉ କେତେଦିନ ? ଚବିଶ ବର୍ଷ ହୋଇଗଲାଣି । ଅଳ୍ପଦିନ ପରେ ଗୋଟିଏ ବର୍ଷ କଟାଇ ରୌପ୍ୟ ମହୋତ୍ସବ ପାଳନ କରିବୁ । ଆପଣଙ୍କ ପରି ବହୁ ଯୁବକଙ୍କୁ ଆମେ ଋହୁଁ । ସେମାନେ କେନ୍ଦ୍ରକୁ ଆଗେଇ ନେବେ । ଶୁଖିଲା ପତ୍ରପରି ଆମର ବେଳ ଯାଉଛି । ଆମ ବେଳ ସରି ଆସୁଛି ।" ସେହି କଥାରେ ମୁଁ ଏତେ ପ୍ରଭାବିତ ହେଲି ଯେ ସେହି ଦିନରୁ ଅଦ୍ୟାବଧି ଯାଏଁ ପର୍ଯ୍ୟନ୍ତ କେନ୍ଦ୍ର କାର୍ଯ୍ୟରେ ନିଜକୁ ନିୟୋଜିତ କରିଛି ।

ଦୂରରେ ରହି ପ୍ରକୃତରେ ମୋର ଧାରଣା ନଥିଲା ଯେ ଏ କେତେ ବଡ଼ ଅନୁଷ୍ଠାନ ଓ ଓଡ଼ିଶାର କଳା ଓ ସଂସ୍କୃତିର ପୁନରୁଦ୍ଧାର ଏବଂ ତାହାର ପ୍ରଚାର ପ୍ରସାର ପାଇଁ କେତେ କାର୍ଯ୍ୟ କରିଛି । ଧୀରେ ଧୀରେ ସବୁ ଶୁଣିଲି, ଜାଣିଲି ଏବଂ ଆଜି ନିଜକୁ ଏହିପରି ଅନୁଷ୍ଠାନର ସଭ୍ୟ ହେବାରେ ଗୌରବାନ୍ୱିତ ମନେ କରୁଛି ।

ରାଜନୀତିର ଦଳିତ ବାତାବରଣରୁ ଦୂରରେ ରହି ଗୋଟିଏ ସ୍ୱତନ୍ତ୍ର ସାଂସ୍କୃତିକ ଅନୁଷ୍ଠାନର ପରିକଳ୍ପନା ନେଇ ଶ୍ରୀ ବାବୁଲାଲ ଯୋଶୀ ଏବଂ ତାଙ୍କର କେତେକ ରାଜନୈତିକ ବନ୍ଧୁ ୧୯୫୨ର ଏକ ଶୁଭ ସନ୍ଧ୍ୟାରେ ସେତେବେଳର ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ସଭାପତିତ୍ୱରେ ଆରମ୍ଭ କଲେ ଏହି ଅନୁଷ୍ଠାନ ଗଙ୍ଗାମନ୍ଦିରର ଗୋଟିଏ ଛୋଟ କୋଠରୀରେ । କିନ୍ତୁ ଆଜି ଏହି ଅନୁଷ୍ଠାନ ବାରବାଟୀ ଷ୍ଟାଡ଼ିୟମର ପାର୍ଶ୍ୱବର୍ତ୍ତୀ ସୁନ୍ଦର ରମଣୀୟ ସ୍ଥାନରେ ଠିଆ ହୋଇଛି ଗୋଟିଏ ଜୀବନ୍ତ କୋଣାର୍କ ପରି । ନିଜସ୍ୱ ଏବ ଏକର ଯାଗାରେ ପ୍ରାୟ ପନ୍ଦର ଲକ୍ଷ ଟଙ୍କାର ସୁନ୍ଦର ସୌଧ ତିଆରି ହୋଇଛି । ଭାରତୀୟ ନୃତ୍ୟ ସଙ୍ଗୀତ ମହାବିଦ୍ୟାଳୟ ଛାତ୍ରୀ ନିବାସ ଓ ସୁସଜ୍ଜିତ ରଙ୍ଗମଞ୍ଚ ଏହି ସ୍ଥାନରେ ଦଣ୍ଡାୟମାନ ।

ଦଶ ପନ୍ଦର ଜଣ ସାଥିର ଶିଶୁମାନଙ୍କୁ ନେଇ ପ୍ରଥମେ ଆରମ୍ଭ ହେଲା ବକ୍ତୃତା ଶିକ୍ଷା, ସୂତାକଟା ଓ କ୍ରୀଡ଼ା ପ୍ରତିଯୋଗିତା । କେତେଦିନ ପରେ ପୁଣି ଆରମ୍ଭ ହେଲା ଗୋଟିଏ ସଙ୍ଗୀତ ନୃତ୍ୟ ଶିକ୍ଷା କେନ୍ଦ୍ର । ପ୍ରଥମ ସଙ୍ଗୀତ ଶିକ୍ଷକ ଶ୍ରୀ ବିଶ୍ୱନାଥ ରାଓ ଓ ନୃତ୍ୟ ଶିକ୍ଷକ ଗୁରୁ ମାୟାଧର ରାଉତ ।

ଧୀରେ ଧୀରେ ଛାତ୍ର ଛାତ୍ରୀ ସଂଖ୍ୟା ବଢ଼ିବାକୁ ଲାଗିଲା ଏବଂ "ଶିଶୁମଞ୍ଜରୀ" ନାମରେ ଗୋଟିଏ ଶିଶୁଶାଖା ଖୋଲାଗଲା । ପ୍ରାୟ ପାଞ୍ଚଶହ ଶିଶୁ ଓ ଯୁବକ ଏଥିରେ ଯୋଗ ଦେଲେ ଏବଂ ସେତେବେଳର ମୀନାବଜାର ସହିତ ଏହି ବିଭାଗକୁ ସମ୍ପୃକ୍ତ କରାଗଲା ଯେ କି ମୀନା-ବଜାରର ପ୍ରଧାନ ଅଙ୍ଗ ରୂପରେ କାର୍ଯ୍ୟ କଲା । ମୀନା-ବଜାରର ସବୁ ବାର୍ଷିକ ମେଳାରେ କେନ୍ଦ୍ରର ମୀନାମଣ୍ଡଳୀ ଯୋଗ ଦେଲା । ସବୁ ପ୍ରତିଯୋଗିତାମାନଙ୍କରେ ସର୍ବୋତ୍କୃଷ୍ଟ ବିବେଚିତ ହେଲା ଏବଂ ଚାମ୍ପିଅନସିପ୍ ମଧ୍ୟ ପାଇଲା ।



କଳା ବିକାଶ କେନ୍ଦ୍ର, କଟକର ନୂଆ ଅଡ଼ିଟୋରିଅମ୍

ଏହି ଶିଶୁ ଅନୁଷ୍ଠାନରେ ପୁଣି ଏକ ସ୍ୱତନ୍ତ୍ର ପାଠାଗାର ଖୋଲାଗଲା । କଟକର ଜଣେ ପ୍ରଧାନ ପୃଷ୍ଠପୋଷକ ଶ୍ରୀ ଅନନ୍ତରାମ ସୁପାରିଓ୍ୱାଲାଙ୍କ ନାମାନୁସାରେ ନାମିତ ଏହି ଶିଶୁ ପାଠାଗାରରେ ଆଜି ବିଭିନ୍ନ ଭାଷାରେ ପ୍ରାୟ ସାତହଜାର ପୁସ୍ତକ ସଞ୍ଚିତ ରହିଛି ଏବଂ ଗୋଟିଏ ସ୍ୱତନ୍ତ୍ର ପ୍ରକୋଷ୍ଠରେ ଏହାକୁ ସ୍ଥାନ ଦିଆଯାଇଛି । ପ୍ରାୟ ସବୁ ଓଡ଼ିଆ ଦୈନିକ, ମାସିକ ଓ ସାମୟିକ ପତ୍ର ପତ୍ରିକା ବିନାମୂଲ୍ୟରେ ପାଠକ ପାଠିକାମାନଙ୍କ ପାଇଁ ଆସୁଛି ।

ଶିଶୁମାନଙ୍କର ଭ୍ରମଣ ପ୍ରତିଯୋଗିତା ମଧ୍ୟ ଏହାର ଗୋଟିଏ ଅଙ୍ଗ ।



ବିଶିଷ୍ଟା କଥକ ନୃତ୍ୟଶିଳ୍ପୀ ବନ୍ଦନା ସେନ
ମନୋରମ ନର୍ତ୍ତନ-ଭଙ୍ଗୀମାରେ.....

## ଭାରତୀୟ ନୃତ୍ୟ ସଂଗୀତ ମହାବିଦ୍ୟା

ଏହି ମହାବିଦ୍ୟାଳୟ ଅଖିଳ ଭାରତୀୟ
ମହାବିଦ୍ୟାଳୟ (ବମ୍ବେ) ସହିତ ସଂଶ୍ଳିଷ୍ଟ ଥି
ଓଡ଼ିଶୀ ନୃତ୍ୟ ଗୀତପାଇଁ ତାହାର ନିଜର ଅ
ପାଠ୍ୟକ୍ରମ ରହିଛି । ଶିକ୍ଷକ ତାଲିମ ପାଇଁ ଓ
ବିଦେଶର ନୃତ୍ୟ କଳାକାରମାନଙ୍କ ପାଇଁ
ତ୍ରିବର୍ଷିଆ ସ୍ୱତନ୍ତ୍ର ପାଠ୍ୟକ୍ରମ ପ୍ରସ୍ତୁତ କରା
ପ୍ରତିବର୍ଷ ବର୍ଷକୁ ତିନିମାସ ଏହିପରି ତ୍ରିବର୍ଷ ଶି



କୃଷ୍ଣ ବଳରାମଙ୍କ ଗୋଚାରଣ ଦୃଶ୍ୟ

ନିୟମିତ ଭାବରେ ଯୋଗ ଦେବାକୁ ପଡ଼େ ଏବଂ ଭାରତବର୍ଷର ଓ ବିଦେଶର ବହୁଶିକ୍ଷାର୍ଥୀ ଏହାର ସୁଯୋଗ ନେଇ ଆସୁଛନ୍ତି । ଗୁରୁ ଶ୍ରୀ କେଳୁ ଚରଣ ମହାପାତ୍ର ଏହାର ପରିଚାଳନା ଦାୟିତ୍ୱରେ ଅଛନ୍ତି ।

ଏହି ବିଦ୍ୟାଳୟ ଜରିଆରେ ଗତ ପଚିଶବର୍ଷ ଭିତରେ ଚାରି ହଜାର ଛାତ୍ରଛାତ୍ରୀ ଏବଂ ଏହି ମାନଙ୍କ ଭିତରୁ ଆଜି ଆକାଶବାଣୀ ଦୂରଦର୍ଶନ କିମ୍ବା ବିଭିନ୍ନ ନାଟ୍ୟ ସଙ୍ଗୀତ ନୃତ୍ୟ ସଂସ୍ଥାରେ ଯୋଗ ଦେଇଛନ୍ତି ।



"ସୀତା ବିବାହ" ନାଟକରେ ରମଣୀ ଜେନା ଓ ସାନୀ ଦାସଙ୍କ ପ୍ରଣୟୋଜ୍ଜ୍ୱଳ ମୁହୂର୍ତ୍ତରେ



କେନ୍ଦ୍ରର ପ୍ରତିଷ୍ଠାତା ଓ ସାଧାରଣ ସଂପାଦକ ଶ୍ରୀ ବାବୁଲାଲ ଯୋଶୀଙ୍କ ସଙ୍ଗେ ମୁଖ୍ୟ ଅତିଥି ମାନ୍ୟବର ରାଷ୍ଟ୍ରପତି ଶ୍ରୀ ବାସପ୍ପା ଦାନପ୍ପା ଜଟ୍ଟି କେନ୍ଦ୍ର ସଂପର୍କରେ ଆଲୋଚନା କରୁଛନ୍ତି ।

ବହୁ ତାଲିମ ପ୍ରାପ୍ତ ଶିକ୍ଷକ ପୁରପଲ୍ଲୀରେ ଓ ଦିଲ୍ଲୀ, ବମ୍ବେ ପ୍ରଭୃତି ବଡ ସହରମାନଙ୍କରେ ନୃତ୍ୟ ଶିକ୍ଷା କେନ୍ଦ୍ର ମାନଙ୍କରେ ମଧ୍ୟ ନିଯୁକ୍ତ ହୋଇ ରହିଛନ୍ତି । କେତେକ ବୟାନରେ ଖ୍ୟାତ ସଙ୍ଗୀତ ଓ ନୃତ୍ୟ କ୍ଷେତ୍ରରେ

ନାମଜାଦା ଶିକ୍ଷକ ଓ କଳାକାର ସରକାରୀ ବେସରକାରୀ ସଂସ୍ଥା ମାନଙ୍କର କେନ୍ଦ୍ରର ପ୍ରସ୍ତ ଛାତ୍ରଛାତ୍ରୀମାନଙ୍କୁ ଦେଖିବାକୁ ପାଇବା... କଳାବି କେନ୍ଦ୍ର ଅନୁଷ୍ଠାନପକ୍ଷରେ କମ ଗୌରବର ବିଷୟ ନୁ



କେନ୍ଦ୍ରର ରୌପ୍ୟ ଜୟନ୍ତୀ ଉତ୍ସବରେ ମୁଖ୍ୟ ମନ୍ତ୍ରୀ ଶ୍ରୀ ବିନାୟକ ଆଚାର୍ଯ୍ୟ ଶ୍ରୀ ରାଧାମୋହନ ସାହୁଙ୍କୁ ମାନପତ୍ର ପ୍ରଦାନ କରୁଛନ୍ତି ।

କେନ୍ଦ୍ରର ତାଲିମପ୍ରାପ୍ତ ଛାତ୍ର ଛାତ୍ରୀ ବ୍ୟକ୍ତିଗତ ଭାବେ ଓ କେନ୍ଦ୍ରର ସାହାଯ୍ୟରେ ଦେଶ ବିଦେଶର ବହୁ ସ୍ଥାନରେ ସାଂସ୍କୃତିକ ଗସ୍ତ କରିଛନ୍ତି ଓ ଉତ୍କଳର ମହିମା ଦେଶରେ ବୃଦ୍ଧି କରିବାରେ ସହାୟକ ହୋଇଛନ୍ତି ।

କଳା ଭିତ୍ତିମ କେନ୍ଦ୍ରର ପ୍ରଗାଢ ଚେଷ୍ଟାରେ ଆଜି ଓଡ଼ିଶୀ ନୃତ୍ୟ ଗୋଟିଏ ସର୍ବଭାରତୀୟ ନୃତ୍ୟ କ୍ଷେତ୍ରରେ ଶାସ୍ତ୍ରୀୟ ନୃତ୍ୟ ହିସାବରେ ସ୍ଥାନ ପାଇଛି ସେଥିରେ ସନ୍ଦେହ ନାହିଁ । "ତପସ୍ୱିନୀ", "ମେ ଘ ଦୂ ତ", "ଗୋଲେ ଉଠାଣ", "କାଞ୍ଚି ବିଜୟ", "ଅନାଦିସଂଗୀତ" "ଶୃଙ୍ଗାରଗାଥା", "ବୃନ୍ଦାଦୂତୀ" ପରି ଶତ ଶତ ନୃତ୍ୟନାଟିକା କେନ୍ଦ୍ର ଦ୍ୱାରା ପରିବେଷଣ କରାଯାଇ ଆଗନ୍ତୁକ ଦେଶ ବିଦେଶର ଅତିଥିମାନଙ୍କୁ ମୁଗ୍ଧ କରିପାରିଛି ।

## ନାଟ୍ୟବିଭାଗ ଅଭିନୟ

ବିଗତ ପଚିଶ ବର୍ଷ ଭିତରେ କେନ୍ଦ୍ର ଦ୍ୱାରା ବହୁ ମୌଳିକ ଓ ଅନୁବାଦିତ ନାଟକ ଓ ଏକାଙ୍କିକା ପରିବେଷଣ କରାଯାଇଛି ଓ ପ୍ରତିଯୋଗିତାରେ



ମାନ୍ଦ୍ରାଜର ସ୍ୱନାମଧନ୍ୟା ଭରତ ନାଟ୍ୟମ୍ ନର୍ତ୍ତକୀ ବି. ସ୍ୱର୍ଣ୍ଣ ମୁଖୀ ଏକ ଜଟିଳ ମନୋରମ ଭଙ୍ଗୀମାରେ ।



ପ୍ରଖ୍ୟାତ ଓଡ଼ିଶୀ ନୃତ୍ୟ ପ୍ରବୀଣା କୁଙ୍କୁମ୍ ଶ୍ରୀକାନ୍ତଙ୍କ ଭଙ୍ଗୀମାରେ ।

କେନ୍ଦ୍ରର "ଶ୍ୱେତପଦ୍ମ" ଏକାଙ୍କିକା ପ୍ରାୟ ପଚିଶଟି ଏକାଙ୍କିକା ମଧ୍ୟରେ ସର୍ବ ପ୍ରଥମ ସ୍ଥାନ ଅଧିକାର କରି ପ୍ରଥମ ସ୍ଥାନ ଲାଭ କରିଥିଲା ।

## ଗବେଷଣା

କେନ୍ଦ୍ରର ଗବେଷଣା ବିଭାଗ ରିସର୍ଚ୍ଚ ବ୍ୟୁରୋ (Research Bureau) ନାମରେ ପରିଚିତ ଓ ଏହାକୁ ଲଣ୍ଡନର ଫୋକ୍ ମିଉଜିକ୍ କାଉନ୍‌ସିଲ୍

(Folk Music Council) ସହିତ ସଂଶ୍ଳିଷ୍ଟ କରାଯାଇଛି ।

ଏହି ବିଶ୍ୱବିଦ୍ୟାଳୟ ଆଦିବାସୀ ବହୁଳ ଛଅଗୋଟି ଜିଲ୍ଲାମାନଙ୍କରେ କେନ୍ଦ୍ର ତରଫରୁ ଲୋକନୃତ୍ୟ ଓ ସଂଗୀତର ଗବେଷଣା କରାଯାଇ ତାହା ପୃଥକ୍ ପୃଥକ୍ ପୁସ୍ତିକା ଆକାରରେ ପ୍ରକାଶ କରାଯାଇଛି । ଏହିସବୁ ଆଦିବାସୀ ଲୋକନୃତ୍ୟ ମହାବିଦ୍ୟାଳୟ ଛାତ୍ର ଛାତ୍ରୀମାନଙ୍କୁ ଶିଖାଯିବାପାଇଁ ଏହାର ବହୁଳ ପ୍ରଚାର ଓ ପ୍ରସାର କରାଯାଇଛି ।

ଗବେଷଣା ବିଷୟବସ୍ତୁର ପ୍ରାୟ ତେର ଗୋଟି ତଥ୍ୟ ମୂଳକ ଲେଖା ସମ୍ବଳିତ ସୋଭେନିଅର କିମ୍ବା ଜର୍ଣ୍ଣାଲ୍ ଏହି ପଚିଶବର୍ଷ ଭିତରେ ପ୍ରକାଶ କରାଯାଇଛି ।

### ଛାତ୍ରୀନିବାସ ମହିଳା ଶାଖା

ଷାଠିଏ ଶଯ୍ୟା ବିଶିଷ୍ଟ ଏକ ସ୍ୱତନ୍ତ୍ର ଛାତ୍ରୀ ନିବାସ ମହାବିଦ୍ୟାଳୟର ପରିସର ଭିତରେ ରହିଛି ଏବଂ କଲେଜର ଛାତ୍ରୀମାନେ ଏହାର ସୁଯୋଗ ପାଉଛନ୍ତି । ଅବସର ସମୟରେ ସେମାନେ ସଙ୍ଗୀତ, ନୃତ୍ୟ, ନାଟକ ଇତ୍ୟାଦିରେ ତାଲିମ ପାଆନ୍ତି ।

ଗୋଟିଏ ସ୍ୱତନ୍ତ୍ର ସିଲ୍କର ଶିକ୍ଷାକେନ୍ଦ୍ର ମଧ୍ୟ… ଏବଂ ବହୁ ଛାତ୍ର ଛାତ୍ରୀ ଓ ବୁଦ୍ଧିଜୀବୀମାନେ… ଶିକ୍ଷାକେନ୍ଦ୍ରରେ ଯୋଗଦେଇ ସିଲ୍କର ଓ ସ… ଶିଖୁଛନ୍ତି ।

ନୃତ୍ୟ, ସଙ୍ଗୀତ, ନାଟକ ଗବେଷଣା ବ୍ୟତିତ … କ୍ଷେତ୍ରରେ ମଧ୍ୟ କେନ୍ଦ୍ରର ଅବଦାନ ରହିଛି । … ସାହିତ୍ୟ ଉପରେ ବହୁବାର ଆଲୋଚନା… ଆୟୋଜନ କରାଯାଇଛି ।

ଦୁଃସ୍ଥ କଳାକାରମାନଙ୍କୁ ସାହାଯ୍ୟ-ଦେବାରୁ… ବନ୍ୟା ବାତ୍ୟାପରି ବିପତ୍ତି—ସମସ୍ତ କ୍ଷେତ୍ରରେ… ସାହାଯ୍ୟ କରିବାରେ ଆଗେଇ ଆସିଛି ।

ବଙ୍ଗଳାର "ଶାନ୍ତି ନିକେତନ", ଦାକ୍ଷି… "କଳାକ୍ଷେତ୍ର" ଓ କେରଳର "କଳାମଣ୍ଡଳମ୍… ଏହି ଅନୁଷ୍ଠାନ ମଧ୍ୟ ଭାରତବର୍ଷର ଗୋଟି… ଅନୁଷ୍ଠାନ ରୂପରେ ଦେଶ ବିଦେଶରେ ପରିଚିତ…

ସର୍ବସାଧାରଣଙ୍କର ପୃଷ୍ଠପୋଷକତାରେ … ଏହି ମହତ କଳା ଅନୁଷ୍ଠାନ ଆଜି ତାହାର … ପଚିଶବର୍ଷ ପୂରଣ କରି ତାହାର ରୌପ୍ୟ ମ… ପାଳନ କରି ସାରିଛି । ସେହି ଶୁଭ ମୁହୂର୍ତ୍ତ… ତରଫରୁ ଓ ପ୍ରତ୍ୟେକ କଳାପ୍ରେମୀ ତରଫରୁ … ଜଣାଉଛି ।

ସଂପାଦକ
ଭାଇନ ରଥ
ଷ୍ଟୋନିରୋଡ୍, କଟକ





୧—ଚିଡ଼ିଆଖାନା ଭିତରେ ଜଣେ ବୟସ୍କା ମହିଳାଙ୍କୁ ଗାଇଡ୍ ବିଭିନ୍ନ ଜୀବଜନ୍ତୁ ଦେଖାଇ ସାରି କଂଗାରୁ ଥିବା ସ୍ଥାନରେ ପହଞ୍ଚିଲେ ।

ଦେଖନ୍ତୁ ମହାଶୟା ! ଏ ହେଉଛନ୍ତି ସଂପୂର୍ଣ୍ଣଭାବେ ଅଷ୍ଟ୍ରେଲିଆର ଅଧିବାସୀ ।

ଭଦ୍ରମହିଳା ଚିତ୍କାର କରି ଉଠିଲେ—

ହେ ଭଗବାନ ! ଏଇଥିରୁ ପୁଣି ଗୋଟାକୁ ମୋ ଝିଅଟି ସେଠି ବାହାହବ ବୋଲି ସ୍ଥିର କରିଛି ।।

୨—"ରାଜଧାନୀରେ ଏ ହୋଟେଲଟି ଆପଣଙ୍କର ସବୁଠାରୁ ପରିଷ୍କାରତମ ହୋଟେଲ ବୋଲି ମୋର ହୃଦ୍‌ବୋଧ ହୋଇଗଲା ।"

ଏତେକ ଶୁଣି ହୋଟେଲ ମାଲିକ ଖୁବ୍ ଖୁସି ହୋଇ କହିଲେ—

ଧନ୍ୟବାଦ ମହାଶୟ ! ଆମ୍ଭେମାନେ କୃତ୍ୟକୃତ୍ୟ ହେବାପାଇଁ ଆପଣଙ୍କ ଶ୍ରୀମୁଖରୁ ଏତିକି ମାତ୍ର ବାକ୍ୟ ଯଥେଷ୍ଟ । ମାତ୍ର ମୁଁ ପଚାରି ପାରେକି—କେଉଁଥିରୁ ଆପଣ ଏପରି ଏକ ସଠିକ ସିଦ୍ଧାନ୍ତରେ ପହଞ୍ଚିଲେ ?

"ଏଠି ସବୁକିଛି ସାବୁନ୍ ଭଳି ପାଟିକି ଲାଗୁଛି ଯେ— ।

୩—୨ୟ ଶ୍ରେଣୀ ଛାତ୍ରୀ—

ମାଆ ! ଦିଦି ଆଜି ମତେ ପଚାରିଲେ—ମୋର ଆଉ କେଇଟି ଭଉଣୀ ଅଛନ୍ତି ?

ସତେ ! କେଡ଼େ ଭଲ ତୋର ଦିଦି ଲୋ ମାଆ ! ତୋ ଉପରେ ତାଙ୍କର ଏତେ ସୁନଜର ।।

ହଁ । ସେଇଠୁ ମୁଁ ଯେମିତି କହିଲି ଯେ ମୋର ଆଉ କେହି ଭାଇ ଭଉଣୀ ନାହାନ୍ତି—ସେଇଠୁ ସେ ଦୀର୍ଘଶ୍ୱାସ ପକାଇ କହିଲେ—ଭଗବାନଙ୍କୁ ଧନ୍ୟବାଦ !

୪—ମୁଁ ବଡ଼ ଦୁଃଖିତ ରାଜୀବ ! ଯେ ଅଧ୍ୟାପକ ତ୍ରିପାଠୀ କହୁଥିଲେ—ତୁ ସବୁବେଳେ କ୍ଲାସର ପଛ ବେଞ୍ଚରେ ବସୁଛୁ ।

ସେଥିରେ କିଛି ଯାଏ ଆସେନା ବାପା ! ଅଧ୍ୟାପକ ତ୍ରିପାଠୀଙ୍କ ବକ୍ତୃତାର ଆଗପଛ ସବୁ ସମାନ ।

୫—ତା' ହେଲେ ଶୁଭେନ୍ଦୁ ! ତୁମେ ମୋର ଜୋଇଁ ହେବାକୁ ଇଚ୍ଛା କରୁଛ ନା' କଣ ?

କଥାଟା ଠିକ୍ ସେମିତି ନୁହେଁ ସାର । କିନ୍ତୁ ଅଂଜଳି ଯଦି ନିହାତି ମୋତେ ବାହା ହୁଏ, ତେବେ ମୋପକ୍ଷରେ ସ୍ପଷ୍ଟତଃ ଆପଣଙ୍କର ଜୋଇଁ ହେବା ଛଡ଼ା ଅନ୍ୟ ଉପାୟ ନାହିଁ ।

୬—ଦୁଇଜଣଙ୍କ କଥାବାର୍ତ୍ତା ହେଉଥିଲେ—ଜଣେ କହିଲେ—

ଲୋକେ ଯାହା କହନ୍ତି, ମୁଁ ସେଥିରୁ ଅଧେ ମାତ୍ର ବିଶ୍ୱାସ କରେ ।

କାହିଁକି ?

କାରଣ ମୁଁ ଜଣେ ଓକିଲ ।

ମୁଁ କିନ୍ତୁ ଲୋକେ ଯାହା କହନ୍ତି ତାର ଦୁଇଗୁଣ ବିଶ୍ୱାସ କରେ ।

କାହିଁକି ?

କାରଣ, ମୁଁ ଜଣେ ଖବରକାଗଜର ସମ୍ପାଦକ ।

୭—ନିଜକୁ ଚତୁର ମନେ କରୁଥିବା ଦୁଇଜଣ ଲୋକ ଥରେ ଗୋଟିଏ ଘଣ୍ଟା କିଣିଲେ । ମାତ୍ର ଅଳ୍ପ ସମୟ
ଘଣ୍ଟାଟି ଚାଲିବା ବନ୍ଦ ହୋଇଗଲା ଏବଂ ତାହାରି ଦମ୍‌ଦେବା ସତ୍ତ୍ୱେ ବି କଣ୍ଟାଗୁଡ଼ିକ ସ୍ଥାଣୁ ହୋଇ ରହିଲେ
ଜଣେ ତାକୁ ସଜୋରେ ତଳେ କଚାଡ଼ି ଦେଲେ । ଘଣ୍ଟାଟି ପଥର ଉପରେ ପଡ଼ି ଛତୁ ହୋଇଗଲା ଏବଂ
ଭିତରୁ ଗୋଟିଏ ମଲା ମାଛି ବାହାରିଲା । ତାକୁ ଦେଖି ନିଜକୁ ଚତୁର ମନେ କରୁଥିବା ଜଣେ କହିଲା—

ଦେଖିଲ ! ଘଣ୍ଟାଟା ଆଉ କେମିତି ଚାଲିଥାନ୍ତା ? ତାର ଇଞ୍ଜିନ୍ ଡ୍ରାଇଭରଟା ଯେ ପବନ ନପାଇ ଭିତ
ମରି ଯାଇଛି ॥

୮—ବିସ୍ମରଣଶୀଳ ଅଧ୍ୟାପକ ତାଙ୍କ ସ୍ତ୍ରୀଙ୍କୁ କହିଲେ—

ଦେଖ ମାନ ! ତୁମେ ସବୁବେଳେ ଗାଳି ଦିଅ ମୋର ଭୁଆଡେ଼ କିଛି ମନେ ରହେ ନାହିଁ ବୋ
କିନ୍ତୁ ଦେଖ ଆଜି ତୁମେ ତୁମ ଛତାଟି ମିଟିଂରେ ଛାଡ଼ି ଆସିଥିଲ, ମୁଁ ମୋ ଛତା ଆଉ ତୁମ ଛତା ଦୁଇଟି
ଛତା କେମିତି ଧରି ଆସିବାକୁ ଭୁଲି ନାହିଁ—ଦେଖ ଦେଖ ।

ଅଧ୍ୟାପକଙ୍କ ସ୍ତ୍ରୀ—

ହେ ଭଗବାନ ! ଆମେ ତ କୌଣସି ଛତା ନେଇ ଆଜି ମିଟିଙ୍ଗକୁ ଯାଇନଥିଲେ ! ଆମ ଦୁହିଁଙ୍କ ଛତା
ସେଠି ଷ୍ଟାଣ୍ଡରେ ଝୁଲୁଛି ।



# ୧୯୭୭ ଲୋକସଭା ନିର୍ବାଚନ ଫଳାଫଳ

| ୧୯୭୭ ଲୋକସଭା ନିର୍ବାଚନରେ ବିଭିନ୍ନ ଦଳପକ୍ଷରୁ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ମୋଟ ପ୍ରାର୍ଥୀଙ୍କ ସଂଖ୍ୟା (୧) | | | ବିଭିନ୍ନ ଦଳପକ୍ଷରୁ ନିର୍ବାଚିତ ହୋଇଥିବା ପ୍ରାର୍ଥୀଙ୍କ ସଂଖ୍ୟା (୨) | | |
|---|---|---|---|---|---|
| ୧। କଂଗ୍ରେସ | .. | ୨୦ | ୧। କଂଗ୍ରେସ | .. | ୪ |
| ୨। ଭାରତୀୟ ଲୋକଦଳ | .. | ୨୦ | ୨। ଭାରତୀୟ ଲୋକଦଳ | .. | ୧୫ |
| ୩। ସି. ପି. ଆଇ | .. | ୪ | ୩। ସି. ପି. ଆଇ | .. | .. |
| ୪। ସି. ପି. ଆଇ (ଏମ୍) | .. | ୧ | ୪। ସି. ପି. ଆଇ (ଏମ୍) | .. | ୧ |
| ୫। ଝାଡ଼ଖଣ୍ଡ | .. | ୧ | ୫। ଝାଡ଼ଖଣ୍ଡ | .. | .. |
| ୬। ଏସ୍. ୟୁ. ସି. ଆଇ. | .. | ୨ | ୬। ଏସ୍ ଇଉ. ସି. ଆଇ. | .. | .. |
| ୭। ସ୍ୱାଧୀନ | .. | ୧୩ | ୭। ସ୍ୱାଧୀନ | .. | ୧ |
| ମୋଟ | .. | ୬୧ | ମୋଟ | .. | ୨୧ |

# ଲୋକସଭା ନିର୍ବାଚନ ମଣ୍ଡଳୀ

## ୯ ମୟୂରଭଞ୍ଜ

ଭୋଟର ସଂଖ୍ୟା ୫୫୬,୮୪୮

| କ୍ରମିକ ସଂଖ୍ୟା | ପ୍ରତିଦ୍ୱନ୍ଦିତା କରୁଥିବା ପ୍ରାର୍ଥୀଙ୍କ ନାମ | ଦଳ | ମିଳିଥିବା ଭୋଟର ପରିମାଣ | ନିର୍ବାଚିତ |
|---|---|---|---|---|
| (୧) | (୨) | (୩) | (୪) | (୫) |
| ୧ | ଶ୍ରୀ ଚନ୍ଦ୍ରମୋହନ ସିଂହ .. | ବି. ଏଲ. ଡି. .. | ୯୯,୦୭୪ | ନିର୍ବାଚିତ |
| ୨ | ଶ୍ରୀ ଚୈତନ୍ୟ ପ୍ରସାଦ ମାଝି .. | କଂଗ୍ରେସ .. | ୮୬,୨୨୫ | |
| ୩ | ଶ୍ରୀ ବ୍ରଜମୋହନ ହଂସଦା .. | ସ୍ୱାଧୀନ .. | ୧୬,୪୫୫ | |
| ୪ | ଶ୍ରୀ ସନା ଦୁର୍ଯୋଧନ ନାୟକ .. | ସ୍ୱାଧୀନ .. | ୩,୫୫୯ | |

କେତୋଟି ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ

୨ । ଯଶିପୁର (ସଂରକ୍ଷିତ)
୩ । ବିହ୍ରକଦା (ସଂରକ୍ଷିତ)
୪ । ରାଇରଙ୍ଗପୁର (ସଂରକ୍ଷିତ)
୫ । ବାଙ୍ଗିରିପୋଷି (ସଂରକ୍ଷିତ)
୭ । କୁଲିଆନା (ସଂରକ୍ଷିତ)

### ବିଶ୍ଳେଷଣ

| | |
|---|---|
| ମିଳିଥିବା ମୋଟ ଭୋଟର ପରିମାଣ | ୨୧୫,୦୦୬ |
| ନାକଚ ହୋଇଥିବା ଭୋଟ .. | ୮,୧୯୩ |
| କାଏମ ଭୋଟ .. | ୨୦୬,୮୧୩ |
| ମିଳିଥିବା ଭୋଟର ଶତକଡ଼ା ହାର .. | ୫୬·୪୬ ପରସେଣ୍ଟ |

## ୨ ବାଲେଶ୍ୱର

ଭୋଟର ସଂଖ୍ୟା .. ୬୧୬,୨୫୨

| | | | | | | |
|---|---|---|---|---|---|---|
| ୧ | ଶ୍ରୀ ପିତାମ୍ବର ପଣ୍ଡା | .. | ସି. ପି. ଆଇ. | .. | ୨୦,୨୮୩ | |
| ୨ | ଶ୍ରୀ ଶ୍ୟାମସୁନ୍ଦର ମହାପାତ୍ର | .. | କଂଗ୍ରେସ | .. | ୧୩୦,୭୫୮ | |
| ୩ | ଶ୍ରୀ ସମରେନ୍ଦ୍ର କୁଣ୍ଡୁ | .. | ବି. ଏଲ. ଡି. | .. | ୧୯୦,୨୧୯ | ନିର୍ବାଚିତ |

କେତୋଟି ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ

୫ । ବଇସିଂଗା (ସଂରକ୍ଷିତ)
୯ । ଖୁଣ୍ଟା (ସଂରକ୍ଷିତ)
୧୧ । ଭୋଗରାଇ
୧୨ । ଜଳେଶ୍ୱର
୧୩ ବସ୍ତା
୧୪ । ବାଲେଶ୍ୱର
୧୫ । ସୋରୋ

### ବିଶ୍ଳେଷଣ

| | | |
|---|---|---|
| ମିଳିଥିବା ମୋଟ ଭୋଟର ପରିମାଣ | .. | ୩୫୦,୭୭୧ |
| ନାକଚ ହୋଇଥିବା ଭୋଟ | .. | ୯,୫୧୧ |
| କାଏମ ଭୋଟ | .. | ୩୪୧,୨୬୦ |
| ମିଳିଥିବା ଭୋଟର ଶତକଡ଼ା ହାର | .. | ୫୬·୯୨ ପରସେଣ୍ଟ |

## ୩ ଭଦ୍ରକ (ସଂରକ୍ଷିତ)

ଭୋଟର ସଂଖ୍ୟା .. ୬୧୪,୬୮୪

| | | | | | | |
|---|---|---|---|---|---|---|
| ୧ | ଶ୍ରୀ ଅର୍ଜୁନ ସେଠୀ | .. | କଂଗ୍ରେସ | .. | ୧୨୭,୪୦୦ | |
| ୨ | ଶ୍ରୀ ବୈରାଗୀ ଜେନା | .. | ବି. ଏଲ. ଡି. | .. | ୧୯୮,୯୨୨ | ନିର୍ବାଚିତ |

| (୧) | (୨) | (୩) | | (୪) | (୫) |
|---|---|---|---|---|---|
| କେତୋଟି ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ | | ବିଶ୍ଳେଷଣ | | | |
| | ୧୬ । ସିମୁଳିଆ | ମିଳିଥିବା ମୋଟ ଭୋଟର ପରିମା | .. | ୩୩୬,୦୫୪ | |
| | ୧୭ । ନୀଳଗିରି | ନାକଚ ହୋଇଥିବା ଭୋଟ | .. | ୯,୬୭୭ | |
| | ୧୮ । ଭଣ୍ଡାରୀ ପୋଖରୀ (ସଂରକ୍ଷିତ) | କାଏମ ଭୋଟ | .. | ୩୨୬,୩୭୭ | |
| | ୧୯ । ଭଦ୍ରକ | ମିଳିଥିବା ଭୋଟର ଶତକଡ଼ା ହାର | .. | ୫୪·୬୭ ପରସେଣ୍ଟ | |
| | ୨୦ । ଧାମନଗର | | | | |
| | ୨୧ । ଚାନ୍ଦବାଲି (ସଂରକ୍ଷିତ) | | | | |
| | ୨୨ । ବାସୁଦେବପୁର | | | | |



## ୪ ଯାଜପୁର (ସଂରକ୍ଷିତ)

| | | | | | |
|---|---|---|---|---|---|
| | | | ଭୋଟର ସଂଖ୍ୟା .. | ୬୧୧,୧୬୧ | |
| ୧ | ଶ୍ରୀ ବୈଷ୍ଣବ ଚରଣ ମଲିକ୍ | .. କଂଗ୍ରେସ | .. | ୧୬୧,୫୩୧ | |
| ୨ | ଶ୍ରୀ ବୈଷ୍ଣବ ଜେନା | .. ଏସ୍. ୟୁ. ସି. ଆଇ. | .. | ୧୫,୩୭୩ | |
| ୩ | ଶ୍ରୀ ରାମଚନ୍ଦ୍ର ମଲିକ୍ | .. ବି. ଏଲ. ଡି. | .. | ୧୭୧,୧୯୧ | ନିର୍ବାଚିତ |

| | | | |
|---|---|---|---|
| କେତୋଟି ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ | ବିଶ୍ଳେଷଣ | | |
| ୨୩ । ସୁକିନ୍ଦା | ମିଳିଥିବା ମୋଟ ଭୋଟର ପରିମାଣ | | [illegible] |

| | |
|---|---|
| ୨୫ । ଯାଜପୁର (ସଂରକ୍ଷିତ) | କାଏମ ଭୋଟ .. ୫୦୮,୦୯୫ |
| ୨୬ । ଧର୍ମଶାଳା | ମିଳିଥିବା ଭୋଟର ଶତକଡ଼ା ହାର .. ୫୦·୦୯ ପରସେଣ୍ଟ |
| ୨୭ । ବଡ଼ଚଣା | |
| ୨୮ । ବରି-ଦେରାବିଶ୍ | |
| ୨୯ । ବିଂଝାରପୁର (ସଂରକ୍ଷିତ) | |

## ୫ କେନ୍ଦ୍ରାପଡ଼ା

ଭୋଟର ସଂଖ୍ୟା ... ୬୬୯,୦୬୭



| | | | | |
|---|---|---|---|---|
| ୧ | ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ | .. ବି. ଏଲ. ଡି. | .. ୨,୨୪,୮୬୮ | ନିର୍ବାଚିତ |
| ୨ | ଶ୍ରୀ ଭଗବତ ପ୍ରସାଦ ମହାନ୍ତି | .. କଂଗ୍ରେସ | .. ୧୨୧,୪୯୨ | |

| କେଉଁ କେଉଁ ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ | ବିଶ୍ଳେଷଣ |
|---|---|
| ୩୦ । ଆଳି | ମିଳିଥିବା ମୋଟ ଭୋଟର ପରିମାଣ .. ୩୯୬,୨୨୪ |
| ୩୧ । ପଟାମୁଣ୍ଡାଇ (ସଂରକ୍ଷିତ) | ନାକଚ ହୋଇଥିବା ଭୋଟ .. ୮,୮୨୪ |
| ୩୨ । ରାଜନଗର | କାଏମ ଭୋଟ .. ୩୮୭,୩୬୦ |
| ୩୩ । କେନ୍ଦ୍ରାପଡ଼ା | ମିଳିଥିବା ଭୋଟର ଶତକଡ଼ା ହାର .. ୬୨·୯୯ ପରସେଣ୍ଟ |
| ୩୪ । ପାଟକୁରା | |
| ୩୫ । କିଶନ୍ ନଗର | |
| ୪୦ । ମାହାଙ୍ଗା | |

| (୧) | (୨) | (୩) | (୪) | (୫) |
| --- | --- | --- | --- | --- |
| | | ୬—କଟକ | | |
| | | | ଭୋଟର ସଂଖ୍ୟା .. | ୨୨୩,୯୨୧ |
| ୧ | ଶ୍ରୀ ଜାନକି ବଲ୍ଲଭ ପଟ୍ଟନାୟକ .. | କଂଗ୍ରେସ .. | ୧୧୨,୦୪୩ | |
| ୨ | ଶ୍ରୀ ନାରାୟଣ ଦାସ .. | ସ୍ୱାଧୀନ .. | ୯୦,୨୦୫ | |
| ୩ | ଶ୍ରୀ ନରସିଂହ ମିଶ୍ର .. | ସ୍ୱାଧୀନ .. | ୧୩,୮୨୪ | |
| ୪ | ଶ୍ରୀ ସରତ କୁମାର କର .. | ପି. ଏସ. ପି. .. | ୧୭୨,୪୪୫ | ନିର୍ବାଚିତ |
| ୫ | ଶ୍ରୀ ସାରଙ୍ଗଧର ମୁହୁଲି .. | ସ୍ୱାଧୀନ (ବିପ୍ଲବି ସି. ପି. ଆଇ.) | ୩,୨୭୪ | |



| କେତୋଟି ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ | ବିଶ୍ଳେଷଣ | |
| --- | --- | --- |
| ୪୧ । ସାଲେପୁର (ସଂରକ୍ଷିତ) | ମିଳିଥିବା ମୋଟ ଭୋଟର ପରିମାଣ .. | ୩୩୦,୯୫୨ |
| ୪୩ । କଟକ ସଦର | ନାକଚ ହୋଇଥିବା ଭୋଟ .. | ୯,୫୨୧ |
| ୪୪ । କଟକ ସହର | କାଏମ ଭୋଟ .. | ୩୭୦,୨୩୧ |
| ୪୫ । ଚୌଦ୍ୱାର | ମିଳିଥିବା ଭୋଟର ଶତକଡ଼ା ହାର .. | ୫୨·୯୨ ପରସେଣ୍ଟ |
| ୪୬ । ବାଙ୍କୀ | | |
| ୪୭ । ଆଠଗଡ଼ | | |

## ୭—ଜଗତ୍‌ସିଂହପୁର

ଭୋଟର ସଂଖ୍ୟା—୬,୫୮,୭୦୩

| | | | | |
|---|---|---|---|---|
| ୧ | ଶ୍ରୀ ପ୍ରଦ୍ୟୁମ୍ନ କିଶୋର ବଳ | ବି. ଏଲ. ଡି. | ୨୨୮,୬୨୦ | ନିର୍ବାଚିତ |
| ୨ | ଶ୍ରୀ ବାସୁଦେବ ମହାପାତ୍ର | କଂଗ୍ରେସ | ୧୧୮,୬୬୯ | |
| ୩ | ଶ୍ରୀ ଲୋକନାଥ ଚୌଧୁରୀ | ସି. ପି. ଆଇ. | ୫୧,୭୩୨ | |

କେତୋଟି ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ

୩୫ ତିର୍ତ୍ତୋଲ

୩୬ ଏରସମା

୩୭ ବାଲିକୁଦା

୩୮ ଜଗତସିଂହପୁର (ସଂରକ୍ଷିତ)

୪୨ ଗୋବିନ୍ଦପୁର

୪୩ ନିମାପଡ଼ା (ସଂରକ୍ଷିତ)

୪୪ କାକଟପୁର

ବିଶ୍ଳେଷଣ

| | |
|---|---|
| ମିଳିଥିବା ମୋଟ ଭୋଟର ପରିମାଣ | ୪୧୦,୯୮୨ |
| ନାକଚ ହୋଇଥିବା ଭୋଟ | ୧୧,୯୬୧ |
| କାଏମ ଭୋଟ | ୩୯୯,୦୨୧ |
| ମିଳିଥିବା ଭୋଟର ଶତକଡ଼ା ହାର | ୬୨·୩୯% |

## ୮—ପୁରୀ

ଭୋଟର ସଂଖ୍ୟା—୬୨୪,୨୨୭

| | | | | |
|---|---|---|---|---|
| ୧ | ଶ୍ରୀ ପଦ୍ମ ଚରଣ ସାମନ୍ତସିଂହାର | ବି. ଏଲ. ଡି. | ୧୭୯,୮୦୨ | ନିର୍ବାଚିତ |
| ୨ | ଶ୍ରୀ ବନମାଳୀ ପଟ୍ଟନାୟକ | କଂଗ୍ରେସ | ୧୦୯,୨୨୯ | |

| (୧) | (୨) | (୩) | (୪) | (୫) |
|---|---|---|---|---|
| | କେତୋଟି ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ | ବିଶ୍ଳେଷଣ | | |
| | ୫୯—ବାଲିପାଟଣା (ସଂରକ୍ଷିତ) | ମିଳିଥିବା ମୋଟ ଭୋଟର ପରିମାଣ .. | ୩୦୦,୬୬୪ | |
| | ୬୨—ପିପିଲି | ନାକଚ ହୋଇଥିବା ଭୋଟ .. | ୧୧,୪୯୧ | |
| | ୬୫—ସତ୍ୟବାଦୀ | କାଏମ ଭୋଟ .. | ୨୮୯,୦୭୩ | |
| | ୬୬—ପୁରୀ | ମିଳିଥିବା ଭୋଟର ଶତକଡା ହାର .. | ୪୮.୧୫ % | |
| | ୬୭—ବ୍ରହ୍ମଗିରି | | | |
| | ୬୮—ଚିଲିକା | | | |
| | ୬୯—ରଣପୁର | | | |

## ୯—ଭୁବନେଶ୍ୱର

ଭୋଟର ସଂଖ୍ୟା—୬୦୯,୧୭୪

| | | | | |
|---|---|---|---|---|
| ୧ | ଶ୍ରୀ ଗଙ୍ଗାଧର ପାଇକରାୟ .. | ସି. ପି. ଆଇ. .. | ୨୯,୭୭୮ | |
| ୨ | ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ .. | କଂଗ୍ରେସ .. | ୧୦୧,୪୯୧ | |
| ୩ | ଶ୍ରୀ ଶିବାଜୀ ପଟ୍ଟନାୟକ .. | ସି. ପି. ଆଇ. (ଏମ୍) .. | ୧୦୬,୯୭୦ | ନିର୍ବାଚିତ |
| | କେତୋଟି ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ | | ବିଶ୍ଳେଷଣ | |
| | ୬୦—ଭୁବନେଶ୍ୱର | ମିଳିଥିବା ମୋଟ ଭୋଟର ପରିମାଣ .. | ୨୪୬,୦୧୩ | |
| | ୬୧—ଜଟଣୀ | ନାକଚ ହୋଇଥିବା ଭୋଟ .. | ୭,୭୮୪ | |

୭୦—ବେଗୁନିଆ .. ମିଳିଥିବା ଭୋଟର ଶତକଡ଼ା ହାର .. ୬୦·୩୯%

୭୨—ନୟାଗଡ

୭୩—ଖଣ୍ଡପଡ଼ା

୭୪—ଦଶପଲ୍ଲା

## ୧୦—ଆସିକା

ଭୋଟର ସଂଖ୍ୟା—୬୫୮,୦୧୮

| | | | |
|---|---|---|---|
| ୧ ଶ୍ରୀ ଅନନ୍ତ ନାରାୟଣ ସିଂହଦେଓ | ବି. ଏଲ. ଡି. | ୧୧୭,୯୪୪ | |
| ୨ ଶ୍ରୀ ଦ୍ଵିତିକୃଷ୍ଣ ପଣ୍ଡା | ସି. ପି. ଆଇ. | ୪୪,୫୫୪ | |
| ୩ ଶ୍ରୀ ରାମଚନ୍ଦ୍ର ରଥ | କଂଗ୍ରେସ | ୧୨୧,୭୨୧ | ନିର୍ବାଚିତ |
| ୪ ଶ୍ରୀ କେ. ଶ୍ୟାମୋବାବୁ ସୁବୁଦ୍ଧି | ସ୍ୱାଧୀନ | ୬,୦୪୨ | |

| କେତୋଟି ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ | ବିଶ୍ଳେଷଣ | |
|---|---|---|
| ୬୫—ଜଗନ୍ନାଥ ପ୍ରସାଦ (ସଂରକ୍ଷିତ) | ମିଳିଥିବା ମୋଟ ଭୋଟର ପରିମାଣ | ୩୦୧,୭୨୯ |
| ୬୬—ସୋରଡ଼ା | ନାକଚ ହୋଇଥିବା ଭୋଟ | ୧୦,୪୬୮ |
| ୬୮—ଆସିକା | କାଏମ ଭୋଟ | ୨୯୧,୨୬୧ |
| ୬୯—କବିସୂର୍ଯ୍ୟ ନଗର | ମିଳିଥିବା ଭୋଟର ଶତକଡ଼ା ହାର | ୪୫·୮୫% |
| ୩୦—କୋଦଳା | | |
| ୬୧—ଖଲ୍ଲିକୋଟ | | |
| ୬୩—ହିଞ୍ଜିଳି | | |

| (୧) | (୨) | (୩) | (୪) | (୫) |
|---|---|---|---|---|
| | | **୧୧ । ବ୍ରହ୍ମପୁର** | | |
| | | | ଭୋଟର ସଂଖ୍ୟା—୬,୦୧,୨୩୨ | |
| ୧ | ଶ୍ରୀ ଅମରେଶ ପ୍ରସାଦ ମିଶ୍ର | ..... ସ୍ୱାଧୀନ ..... | ୭,୩୮୧ | |
| ୨ | ଶ୍ରୀ ଆର୍ . ଜଗନ୍ନାଥ ରାଓ | ..... କଂଗ୍ରେସ ..... | ୧,୧୯,୧୩୨ | ନିର୍ବାଚିତ |
| ୩ | ଶ୍ରୀ ଭେଂକଟ ରମଣ ଟାଟା | ..... ସ୍ୱାଧୀନ ..... | ୧୦,୪୮୩ | |
| ୪ | ଶ୍ରୀ ବରହଗିରି ଶଙ୍କରଗିରି | ..... ବି. ଏଲ୍ . ଡି (ଜନତା) ..... | ୬୯,୦୪୩ | |



| କେଉଁ କେଉଁ ବିଧାନ ସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ | ବିଶ୍ଳେଷଣ | |
|---|---|---|
| ୭୨ ଛତ୍ରପୁର | ମିଳିଥିବା ମୋଟ ଭୋଟର ପରିମାଣ ..... | ୨,୧୪,୭୧୧ |
| ୭୪ ଗୋପାଳପୁର ( ସଂରକ୍ଷିତ ) | ନାକଚ ହୋଇଥିବା ଭୋଟ ..... | ୮,୬୭୨ |
| ୭୫ ବ୍ରହ୍ମପୁର | କାଏମ ଭୋଟ .. | ୨,୦୬,୦୩୯ |
| ୭୬ ଚିକିଟି | ମିଳିଥିବା ଭୋଟର ଶତକଡା ହାର .. | ୩୫.୪୨% |
| ୭୭ ମୋହନା | ନାକଚ ହୋଇଥିବା ଭୋଟ | |
| ୭୮ ଉଦୟଗିରି (ସଂରକ୍ଷିତ) | | |

## ୧୨ । କୋରାପୁଟ (ସଂରକ୍ଷିତ)

ଭୋଟର ସଂଖ୍ୟା—୫,୮୧,୬୬୨

| | | | | |
|---|---|---|---|---|
| ୧ | ଶ୍ରୀ ଗିରିଧାରୀ ଗମାଙ୍ଗୋ | କଂଗ୍ରେସ | ୬୮,୪୯୪ | ନିର୍ବାଚିତ |
| ୨ | ଶ୍ରୀ ମୂର୍ଦ୍ଧିକା ପାପ୍‌ପ୍ରାନା | ବି. ଏଲ୍. ଡି. | ୬୪,୦୬୫ | |

କେତୋଟି ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ

୮୦ ଗୁଣୁପୁର (ସଂରକ୍ଷିତ)
୮୧ ବିଷମ-କଟକ (ସଂରକ୍ଷିତ)
୮୨ ରାୟଗଡ଼ା (ସଂରକ୍ଷିତ)
୮୩ ଲକ୍ଷ୍ମୀପୁର (ସଂରକ୍ଷିତ)
୮୪ ପୋଟାଙ୍ଗି (ସଂରକ୍ଷିତ)
୮୫ କୋରାପୁଟ
୮୬ ଜୟପୁର

ବିଶ୍ଳେଷଣ

| | |
|---|---|
| ମିଳିଥିବା ମୋଟ ଭୋଟର ପରିମାଣ | ୧,୫୧,୧୭୪ |
| ନାକଚ ହୋଇଥିବା ଭୋଟ | ୮,୬୧୫ |
| କାଏମ ଭୋଟ | ୧,୪୨,୫୫୯ |
| ମିଳିଥିବା ଭୋଟର ଶତକଡ଼ା ହାର | ୨୫·୯୯% |



## ୧୩ । ନବରଙ୍ଗପୁର ( ସଂରକ୍ଷିତ )

ଭୋଟର ସଂଖ୍ୟା—୫,୨୨,୩୯୪

| | | | | |
|---|---|---|---|---|
| ୧ | ଖଗପତି ପ୍ରଧାନ | କଂଗ୍ରେସ | ୬୮,୧୯୬ | ନିର୍ବାଚିତ |
| ୨ | ରବିସିଂ ମାଝୀ | ବି. ଏଲ. ଡି. | ୬୫,୧୬୫ | |

କେତୋଟି ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ

୮୭ ମାଲକାନଗିରି ( ସଂରକ୍ଷିତ )
୮୮ ଚିତ୍ରକୋଣ୍ଡା ( ସଂରକ୍ଷିତ )
୮୯ କୋଟପାଡ଼ (ସଂରକ୍ଷିତ)
୯୦ ନବରଙ୍ଗପୁର
୯୧ କୋଡ଼ିଙ୍ଗା ( ସଂରକ୍ଷିତ )
୯୨ ଡାବୁଗାଁ ( ସଂରକ୍ଷିତ )
୯୩ ଉମର କୋଟ (ସଂରକ୍ଷିତ)

ବିଶ୍ଳେଷଣ

| | |
|---|---|
| ମିଳିଥିବା ମୋଟ ଭୋଟର ପରିମାଣ | ୧,୪୪,୪୦୮ |
| ନାକଚ ହୋଇଥିବା ଭୋଟ | ୧୧,୦୪୭ |
| କାଏମ ଭୋଟ | ୧,୩୩,୩୬୧ |
| ମିଳିଥିବା ଭୋଟର ଶତକଡ଼ା ହାର | ୨୭·୬୪% |

| (୧) | (୨) | (୩) | (୪) | (୫) |
|---|---|---|---|---|

## ୧୪—କଳାହାଣ୍ଡି

ଭୋଟର ସଂଖ୍ୟା—୫,୪୨,୦୩୩

| | | | | |
|---|---|---|---|---|
| ୧ | ଶ୍ରୀ ଗଙ୍ଗାଧର ହୋତା | .. ବି. ଏଲ୍. ଡି. | .. ୬୫,୪୭୫ | |
| ୨ | ଶ୍ରୀ ପି. କେ. ଦେଓ | .. ସ୍ୱାଧୀନ | .. ୧,୧୬,୮୯୬ | ନିର୍ବାଚିତ |

କେତୋଟି ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ

| | | | |
|---|---|---|---|
| ୯୫ ଖଡ଼ିଆଳ | .. | ମିଳିଥିବା ମୋଟ ଭୋଟର ପରିମାଣ | .. ୧,୯୩,୨୪୦ |
| ୯୬ ଧର୍ମଗଡ଼ (ସଂରକ୍ଷିତ) | .. | ନାକଚ ହୋଇଥିବା ଭୋଟ | .. ୧୦,୮୬୯ |
| ୯୭ କୋକସରା | .. | କାଏମ ଭୋଟ | .. ୧,୮୨,୩୭୧ |
| ୯୮ ଜୁନାଗଡ଼ | .. | ମିଳିଥିବା ଭୋଟର ଶତକଡ଼ା ହାର | .. ୩୫·୬୩% |
| ୯୯ ଭବାନୀପାଟଣା (ସଂରକ୍ଷିତ) | | | |
| ୧୦୦ ନରଲା (ସଂରକ୍ଷିତ) | | | |
| ୧୦୧ କେସିଙ୍ଗା | | | |

(The heading ବିଶ୍ଳେଷଣ stands above the right-hand column.)

## ୧୫—ଫୁଲବାଣୀ (ସଂରକ୍ଷିତ)

ଭୋଟର ସଂଖ୍ୟା—୬,୩୩,୮୫୦

| | | | |
|---|---|---|---|
| ୧ | ଶ୍ରୀ ଅନିରୁଦ୍ଧ ଦୀପ | .. ସ୍ୱାଧୀନ | .. ୯,୦୨୪ |
| ୨ | ଶ୍ରୀ ବକ୍ସି ନାୟକ | .. କଂଗ୍ରେସ | .. ୯୪,୬୧୬ |

| | | | | | |
|---|---|---|---|---|---|
| ୧ | ଶ୍ରୀ [illegible] | .. | ବି. ଏଲ୍. ଡି. | .. [illegible] | ନିର୍ବାଚିତ |

କେତୋଟି ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ

| | | | |
|---|---|---|---|
| ୬୬ ଉଦୟଗିରି | .. | ମିଳିଥିବା ମୋଟ ଭୋଟର ପରିମାଣ | .. ୨,୦୯,୨୩୭ |
| ୧୦୨ ବାଲିଗୁଡ଼ା (ସଂରକ୍ଷିତ) | .. | ନାକଚ ହୋଇଥିବା ଭୋଟ | .. ୮,୧୩୩ |
| ୧୦୩ ଉଦୟଗିରି (ସଂରକ୍ଷିତ) | .. | କାଏମ ଭୋଟ | .. ୨,୦୧,୦୯୯ |
| ୧୦୪ ଫୁଲବାଣୀ (ସଂରକ୍ଷିତ) | .. | ମିଳିଥିବା ଭୋଟର ଶତକଡ଼ା ହାର | .. ୩୩·୦୧% |
| ୧୦୫ ବୌଦ୍ଧ | | | |
| ୧୧୨ ସୋନପୁର (ସଂରକ୍ଷିତ) | | | |
| ୧୧୩ ବିନିକା | | | |

## ୧୬—ବଲାଙ୍ଗୀର

ଭୋଟର ସଂଖ୍ୟା—୫,୭୨,୧୨୪

| | | | | | |
|---|---|---|---|---|---|
| ୧ | ଶ୍ରୀ ଅଈଠୁ ସାହୁ | .. ବି. ଏଲ୍. ଡି. | .. | ୧,୩୯,୧୦୩ | ନିର୍ବାଚିତ |
| ୨ | ଶ୍ରୀ ଅନଙ୍ଗ ଉଦୟ ସିଂହ ଦେଓ | .. କଂଗ୍ରେସ | .. | ୮୧,୩୭୯ | |

କେତୋଟି ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ

ବିଶ୍ଳେଷଣ

| | | | |
|---|---|---|---|
| ୯୪ ନୂଆପଡ଼ା | .. | ମିଳିଥିବା ମୋଟ ଭୋଟର ପରିମାଣ | .. ୨,୩୨,୨୨୦ |
| ୧୦୬ ଟିଟିଲାଗଡ଼ (ସଂରକ୍ଷିତ) | .. | ନାକଚ ହୋଇଥିବା ଭୋଟ | .. ୧୧,୭୬୮ |
| ୧୦୭ କଣ୍ଟାବାଞ୍ଜି | .. | କାଏମ ଭୋଟ | .. ୨,୨୦,୪୮୨ |
| ୧୦୮ ପାଟନାଗଡ଼ | .. | ମିଳିଥିବା ଭୋଟର ଶତକଡ଼ା ହାର | .. ୪୦·୬୦% |
| ୧୦୯ ସଇଁତଲା | | | |
| ୧୧୦ ଲୋଇସିଂହା | | | |
| ୧୧୧ ବଲାଙ୍ଗୀର | | | |

| (୧) | (୨) | (୩) | (୪) | (୫) |
|---|---|---|---|---|
| | **୧୭—ସମ୍ବଲପୁର** | | | |
| | | | | ଭୋଟର ସଂଖ୍ୟା—୬୨୦,୨୦୦ |
| ୧ | ଶ୍ରୀ ଗଣନାଥ ପ୍ରଧାନ | .. ବି. ଏଲ୍. ଡି. | ... ୧୭୬,୨୨୧ | ନିର୍ବାଚିତ |
| ୨ | ଶ୍ରୀ ବନମାଳୀ ବାବୁ | .. କଂଗ୍ରେସ | .. ୧୧୯,୯୮୭ | |

କେଉଁ କେଉଁ ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ

| | | | |
|---|---|---|---|
| | | **ବିଶ୍ଳେଷଣ** | |
| ୧୨୩ | ପଦ୍ମପୁର | .. ମିଳିଥିବା ମୋଟ ଭୋଟର ପରିମାଣ | .. ୩୧୪,୬୭୪ |
| ୧୨୪ | ମେଲଛାମୁଣ୍ଡା | .. ନାକଚ ହୋଇଥିବା ଭୋଟ | .. ୧୮,୪୬୬ |
| ୧୨୫ | ବିଜେପୁର | .. କାଏମ ଭୋଟ | .. ୨୯୬,୨୦୮ |
| ୧୨୬ | ଭଟଲି (ସଂରକ୍ଷିତ) | .. ମିଳିଥିବା ଭୋଟର ଶତକଡ଼ା ହାର | .. ୪୭·୬୮% |
| ୧୨୭ | ବରଗଡ଼ | | |
| ୧୨୮ | ସମ୍ବଲପୁର | | |
| | ରେଢ଼ାଖୋଲ (ସଂରକ୍ଷିତ) | | |

| | | | | |
|---|---|---|---|---|
| | **୧୮—ଦେଓଗଡ଼** | | | |
| | | | | ଭୋଟର ସଂଖ୍ୟା—୬୧୧,୭୫୬ |
| ୧ | ଶ୍ରୀ ପବିତ୍ର ମୋହନ ପ୍ରଧାନ | ..... ବି. ଏଲ୍. ଡି. | ..... ୧୧୭,୦୫୭ | ନିର୍ବାଚିତ |
| ୨ | ଶ୍ରୀ ପ୍ରସନ୍ନ କୁମାର ପଣ୍ଡା | ..... ସି. ପି. ଆଇ. | ..... ୨୩,୫୪୩ | |

| | | | | | |
|---|---|---|---|---|---|
| ୩ | ଶ୍ରୀ ହର କୁମାର ସୁତାର ସହଦେବ | ..... | କଂଗ୍ରେସ | ..... | ୧୦୬,୦୧୫ |

କେଉଁ କେଉଁ ବିଧାନ ସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ

୧୨୧—ପାଲ୍‌ଲହଡ଼ା

୧୨୨—ତାଳଚେର (ସଂରକ୍ଷିତ)

୧୨୯—ବ୍ରଜରାଜ ନଗର

୧୩୦—ଝାରସୁଗୁଡ଼ା

୧୩୧—ଲାଇକେରା (ସଂରକ୍ଷିତ)

୧୩୨—କୁଚିଣ୍ଡା (ସଂରକ୍ଷିତ)

୧୩୪—ଦେଓଗଡ଼

ବିଶ୍ଳେଷଣ

| | | |
|---|---|---|
| ମିଳିଥିବା ମୋଟ୍ ଭୋଟର ପରିମାଣ | | ୨୫୮,୬୨୮ |
| ନାକଚ ହୋଇଥିବା ଭୋଟ୍ | ..... | ୧୦,୮୧୩ |
| କାଏମ ଭୋଟ୍ | ..... | ୨୪୭,୭୧୫ |
| ମିଳିଥିବା ଭୋଟ୍‌ର ଶତକଡ଼ା ହାର | | ୪୨·୨୪% |

## ୧୯—ଢେଙ୍କାନାଳ

ଭୋଟର ସଂଖ୍ୟା—୬୮୯,୩୧୨

| | | | | | | |
|---|---|---|---|---|---|---|
| ୧ | ଶ୍ରୀ କାମାକ୍ଷା ପ୍ରସାଦ ସିଂହଦେଓ ମହିନ୍ଦ୍ର ବାହାଦୁର | ..... | କଂଗ୍ରେସ | ..... | ୮୯,୩୪୮ | |
| ୨ | ଶ୍ରୀ କାଶୀନାଥ ନନ୍ଦ | ..... | ସ୍ୱାଧୀନ | ..... | ୧୦,୯୨୨ | |
| ୩ | ଶ୍ରୀ ଦେବେନ୍ଦ୍ର ନାଥ ଶତପଥୀ | ..... | ସି. ଏଫ୍. ଡି. | ..... | ୧୪୩,୦୦୮ | ନିର୍ବାଚିତ |

କେଉଁ କେଉଁ ବିଧାନ ସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ

୧୧୪—ବୀରମହାରାଜପୁର
୧୧୫—ଆଠମଲ୍ଲିକ
୧୧୬—ଅନୁଗୁଳ
୧୧୭—ହିନ୍ଦୋଳ (ସଂରକ୍ଷିତ)
୧୧୮—ଢେଙ୍କାନାଳ
୧୧୯—ଗଂଦିଆ
୧୨୦—କାମାକ୍ଷା ନଗର

ବିଶ୍ଳେଷଣ

| | | |
|---|---|---|
| ମିଳିଥିବା ମୋଟ୍ ଭୋଟ୍‌ର ପରିମାଣ | | ୨,୬୧,୬୩୪ |
| ନାକଚ ହୋଇଥିବା ଭୋଟ୍ | ..... | ୯,୩୫୬ |
| କାଏମ ଭୋଟ୍ | ..... | ୨,୫୨,୨୭୮ |
| ମିଳିଥିବା ଭୋଟ୍‌ର ଶତକଡ଼ା ହାର..... | | ୪୪·୦୩% |

| (୧) | (୨) | (୩) | (୪) | (୫) |
|---|---|---|---|---|

## ୨୦—ସୁନ୍ଦରଗଡ଼ (ସଂରକ୍ଷିତ)

ଭୋଟର ସଂଖ୍ୟା—୫୬୪,୨୯୪

| | | | | |
|---|---|---|---|---|
| ୧ | ଶ୍ରୀ ଗଦାଧର ମାଝି | ..... କଂଗ୍ରେସ | ..... ୭୦,୦୮୭ | |
| ୨ | ଶ୍ରୀ ଦେବାନନ୍ଦ ଅମାତ | ..... ବି. ଏଲ୍. ଡି. | ..... ୧୧୪,୬୪୦ | ନିର୍ବାଚିତ |
| ୩ | ଶ୍ରୀ ପାଉଲସ୍ ଟୋପନ୍ | ..... ଝାଡ଼ଖଣ୍ଡ | ..... ୨୩,୨୬୯ | |
| ୪ | ଶ୍ରୀମତୀ ଶ୍ୱାନ୍ତି କରକେଟା | ..... ଏସ୍. ୟୁ. ସି. ଆଇ. | ..... ୭,୩୩୦ | |



| କେତୋଟି ବିଧାନ ସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ | ବିଶ୍ଳେଷଣ | |
|---|---|---|
| ୧୩୫—ସୁନ୍ଦରଗଡ଼ | ମିଳିଥିବା ମୋଟ୍ ଭୋଟ୍ର ପରିମାଣ | ୨୨୫,୮୪୮ |
| ୧୩୬—ତଳସରା (ସଂରକ୍ଷିତ) | ନାକଚ ହୋଇଥିବା ଭୋଟ ..... | ୧୦,୫୪୨ |
| ୧୩୭—ରାଜଗାଙ୍ଗପୁର (ସଂରକ୍ଷିତ) | କାଏମ ଭୋଟ୍ ..... | ୨୧୫,୩୨୪ |
| ୧୩୮—ବୀରମିତ୍ରପୁର (ସଂରକ୍ଷିତ) | ମିଳିଥିବା ଭୋଟ୍ର ଶତକଡ଼ା ହାର..... | ୪୦·୦୨% |
| ୧୩୯—ରାଉରକେଲା | | |
| ୧୪୦—ରଘୁନାଥପାଲି (ସଂରକ୍ଷିତ) | | |

## ୬୧—କେନ୍ଦୁଝର (ସଂରକ୍ଷିତ)

ଭୋଟର ସଂଖ୍ୟା—୫୬୧,୭୩୦

| | | | | |
|---|---|---|---|---|
| ୧ | ଶ୍ରୀ କୁମାର ମାଝୀ | ସ୍ୱାଧୀନ | ୮,୪୧୧ | |
| ୨ | ଶ୍ରୀ ଗୋବିନ୍ଦ ମୁଣ୍ଡା | ବି. ଏଲ୍. ଡି. | ୧୧୩,୭୯୦ | ନିର୍ବାଚିତ |
| ୩ | ଡକ୍ଟର ସହାସ ବିହାରୀ ମହାପାତ୍ର | କଂଗ୍ରେସ | ୬୬,୦୪୫ | |

କେତୋଟି ବିଧାନ ସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏହା ଗଠିତ

୧—କରଞ୍ଜିଆ (ସଂରକ୍ଷିତ)
୧୪୨—ଚମ୍ପୁଆ (ସଂରକ୍ଷିତ)
୧୪୩—ପାଟନା (ସଂରକ୍ଷିତ)
୧୪୪—କେନ୍ଦୁଝର (ସଂରକ୍ଷିତ)
୧୪୫—ତେଲକୋଇ (ସଂରକ୍ଷିତ)
୧୪୬—ରାମଚନ୍ଦ୍ରପୁର
୧୪୭—ଆନନ୍ଦପୁର (ସଂରକ୍ଷିତ)

ବିଶ୍ଳେଷଣ

| | |
|---|---|
| ମିଳିଥିବା ମୋଟ୍ ଭୋଟ୍‌ର ପରିମାଣ | ୧୯୪,୮୨୧ |
| ନାକଚ ହୋଇଥିବା ଭୋଟ୍ | ୬,୪୭୫ |
| କାଏମ ଭୋଟ୍ | ୧୮୮,୩୪୬ |
| ମିଳିଥିବା ଭୋଟ୍‌ର ଶତକଡ଼ା ହାର | ୩୪·୬୧% |



ଓଡ଼ିଶାର ରାଜ୍ୟପାଳ ଶ୍ରୀ ସର୍ଦ୍ଦାର ହରିଚରଣ ସିଂହବ୍ରାର ଫେବୃଆରୀ ୨୬ ତାରିଖ ଦିନ ଭୁବନେଶ୍ୱର ବକ୍ସି ଜଗବନ୍ଧୁ ବିଦ୍ୟାଧର କଲେଜର ବାର୍ଷିକ ଉତ୍ସବରେ ପୁରସ୍କାର ବିତରଣ କରୁଛନ୍ତି ।




ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ବିନାୟକ ଆଚାର୍ଯ୍ୟ ଫେବୃଆରୀ ୨୮ ତାରିଖ ଦିନ ଯଖପୁର-ବାଂଶ
ରେଲପଥର ପ୍ରଥମ ପର୍ଯ୍ୟାୟ ନିର୍ମାଣ କାର୍ଯ୍ୟ ଉଦ୍‌ଘାଟନ କରୁଅଛନ୍ତି



ଭାରତର ଉପରାଷ୍ଟ୍ରପତି, ଶ୍ରୀ ବି. ଡି. ଜତିଙ୍କୁ ୧୯୭୭ ଜାନୁଆରୀ ୧୨ ତାରିଖ ଦିନ ବ୍ରହ୍ମପୁର ବିଶ୍ୱ-ବିଦ୍ୟାଳୟ ପକ୍ଷରୁ ସମ୍ମାନସୂଚକ "ଡକ୍ଟରେଟ" ଉପାଧି ପ୍ରଦାନ କରଯାଉଛି



ଓଡ଼ିଶାର ମୁଖ୍ୟମନ୍ତ୍ରୀ, ଶ୍ରୀ ବିନାୟକ ଆଚାର୍ଯ୍ୟଙ୍କୁ ୧୯୭୭ ଫେବୃଆରୀ ୮ ତାରିଖ ଦିନ "ମହିମାମିକ୍ୟା"ର ସଂପାଦକ ଶ୍ରୀ ପରମାନନ୍ଦ ଅଧିକାରୀ "ଟୁଆଁଟୁଇଁ" ଗପ ଉପହାର ଦେଉଛନ୍ତି



ଓଡ଼ିଶାର ରାଜ୍ୟପାଳ, ଶ୍ରୀ ହରିଚରଣ ସିଂହଦ୍ୱାର ୧୯୭୭ ମାର୍ଚ୍ଚ ୨ତାରିଖ ଦିନ ଭୁବନେଶ୍ୱରଠାରେ ଶ୍ରୀ ରମାଦେବୀ ମହିଳା କଲେଜର ବାର୍ଷିକ ଉତ୍ସବରେ ପୁରସ୍କାର ବିତରଣ କରୁଛନ୍ତି




ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ବିନାୟକ ଆଚାର୍ଯ୍ୟ ଫେବୃଆରୀ ୨୫ତାରିଖ ଦିନ ମୟୂରଭଞ୍ଜ ଜିଲ୍ଲାର କରଞ୍ଜିଆ-ଠାକୁରମୁଣ୍ଡା-ଆନନ୍ଦପୁର ରାସ୍ତା ଦେଓ ସେତୁର ଭିତ୍ତିସ୍ଥାପନ କରୁଛନ୍ତି

# ଓଡ଼ିଶା ମାପ ଓ ଓଜନ ବିଭାଗଦ୍ୱାରା

## ପ୍ରକାଶିତ ବିଜ୍ଞପ୍ତି

୧ । ଖାଉଟି ଭାଇମାନେ—(କ) ଜିନିଷପତ୍ର ଖର୍ଚ୍ଚ କଲାବେଳେ ମାପ ଓ ଓଜନ ଠିକ୍ ଅଛି କି ଦେଖିନେବା ଉଚିତ, ମାପ ଓ ଓଜନ ବିଭାଗଦ୍ୱାରା ବ୍ୟୁଲିଆନ ବଟକରା ବ୍ୟତିତ ଅନ୍ୟ ସବୁ ତୁର ପରେ ଯାଞ୍ଚ ହୋଇ ମୋହର ଦିଆଯାଏ । ବ୍ୟୁଲିଆନ ବଟକରାଡ଼କ ବର୍ଷକୁ ଥରେ ଯାଞ୍ଚ କରାଯାଏ ।

(ଖ) ପ୍ୟାକେଟ୍‌ରେ ଥିବା ଜିନିଷ ତା ଉପରେ ଲେଖାଥିବା ପରିମାଣ ଅନୁସାରେ ଠିକ୍ ଅ ନାହିଁ ଦେଖିକରି ଖର୍ଚ୍ଚ କରନ୍ତୁ ।

(ଗ) ଦଣ୍ଡି ବଟକରା ଓ ମାପିବା ଜିନିଷଗୁଡ଼ିକ ସରକାରଙ୍କ ମାପ ଓ ଓଜନ ବିଭାଗ, ୧୯୬ ପାଇଁ ଯାଞ୍ଚ ହୋଇଛି କି ନାହିଁ ପରିଖି ନେଇ କିଣାବିକା କରିବା ଉଚିତ । ଏଥିରେ କୌଣସି ଘଟିଲେ ସ୍ଥାନୀୟ ମାପ ଓ ଓଜନ ଆସିଷ୍ଟାଣ୍ଟ କଣ୍ଟ୍ରୋଲର୍ କିମ୍ବା ଇନିସ୍‌ପେକ୍‌ଟରଙ୍କୁ ଜଣାନ୍ତୁ ।

୨ । ବ୍ୟବସାୟୀ ଭାଇମାନେ—(କ) ଆପଣ ବ୍ୟବହାର କରୁଥିବା ମାପ ଓ ଓଜନ ସମସ୍ତ ଜିନିଷଗୁଡ଼ିକ ଯାହାକି ଯାଞ୍ଚ ହୋଇନାହିଁ କିମ୍ବା କୌଣସି ତ୍ରୁଟି ରହିଛି ତାହା ୧୯୬୬ ସେ କରାଇ ନିଅନ୍ତୁ ।

୩ । ପେଟ୍ରୋଲ ବ୍ୟବସାୟୀ—ପେଟ୍ରୋଲ ଟ୍ୟାଙ୍କ ଲରୀ ଓ ଯନ୍ତ୍ରଗୁଡ଼ିକ ଯଦି ସର୍ଟ ( Short delivery ) ଦେଉଥାଏ ସେଗୁଡ଼ିକ ମଧ୍ୟ ଯାଞ୍ଚ କରି ନିଅନ୍ତୁ ।

୪ । ହାଟବାଟର ବ୍ୟବସାୟୀ ଭାଇମାନେ—ସରକାରଙ୍କ ଦ୍ୱାରା ଅନୁମୋଦିତ ( କିଲୋଗ୍ରାମ୍, କଣ୍ଟାଦଣ୍ଡି ) ବ୍ୟବହାର କରନ୍ତୁ ।

୫ । ସିଲାଇ କରୁଥିବା ଭାଇମାନେ—କେବଳ ମିଟର ଫିତା ବ୍ୟବହାର କରନ୍ତୁ ।

୬ । ଔଷଧ ଓ ତତ୍‌ସମ୍ପର୍କୀୟ ବ୍ୟବସାୟୀ ଓ ଡାକ୍ତର ଭାଇମାନେ—ଫାରେନ୍‌ହିଟ୍ ଥର୍ମୋମିଟର ନକରି ସେଂଟିଗ୍ରେଡ ଥର୍ମୋମିଟର ବ୍ୟବହାର କରନ୍ତୁ ।

ଓଜନ ଓ ମାପ ବିଭାଗ, ଓଡ଼ି

# ନିଷ୍ଠାପର ଉଦ୍ୟମ ଓ ସେବାକାର୍ଯ୍ୟ ନିମନ୍ତେ ପୁରସ୍କାର ବ୍ୟବସ୍ଥା

ଆମ ରାଜ୍ୟ ଭଳି ଏକ କୃଷି ପ୍ରଧାନ ରାଜ୍ୟରେ ଦୁର୍ବଳ ଶ୍ରେଣୀର ଲୋକମାନଙ୍କୁ ସାମାଜିକ ତଥା ଅର୍ଥ-ନୈତିକନ୍ୟାୟ ଦେବାପାଇଁ କୃଷିଜମି ଓ ଘରଡିହ ଯୋଗାଇ ଦେବାର ଯେ ଗୁରୁତ୍ୱ ରହିଛି ତାହା କହିବା ବାହୁଲ୍ୟମାତ୍ର । ସେଥିପାଇଁ ୨୫-ଦଫା କାର୍ଯ୍ୟକ୍ରମ ଅନୁଯାୟୀ ଶିଲିଂ ବହିର୍ଭୂତ ଜମି ହାତକୁ ଆଣି ତା'ର ବଣ୍ଟନ କରିବା ଏବଂ ବାସହୀନ ଲୋକଙ୍କୁ ଘରଡିହ ଯୋଗାଇଦେବା ଉପରେ ରାଜ୍ୟ ସରକାରଙ୍କ ପକ୍ଷରୁ ଅଗ୍ରପ୍ରାଧାନ୍ୟ ଦିଆଯାଇଛି । ଘରଡିହ ନଥିବା ଭଳି ସମସ୍ୟାର ସଂପୂର୍ଣ୍ଣ ଦୂରୀକରଣ ପାଇଁ ଓ ଶିଲିଂ ବହିର୍ଭୂତ ଜମି ଲୋକମାନଙ୍କ ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ସମୟ ସୀମା ଭିତରେ ବଣ୍ଟନ କରିବା ପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ସଂକଳ୍ପବଦ୍ଧ ଉଦ୍ୟମ କରାଯାଇଅଛି ।

ଏଠାରେ ସ୍ମରଣ କରାଇ ଦିଆଯାଇପାରେ ଯେ ୧୯୭୭ ଜାନୁଆରୀ ୧୩ ତାରିଖ ଦିନ ସ୍ୱରାଷ୍ଟ୍ର (ଲୋକ ସଂପର୍କ) ବିଭାଗରୁ ପ୍ରକାଶିତ ଏକ ପ୍ରେସ ବିଜ୍ଞପ୍ତିରେ ଘରଡିହ ପାଇବା ପାଇଁ ହକ୍‌ଦାର୍ ହେଉଥିବା ବ୍ୟକ୍ତିମାନଙ୍କଠାରୁ ଦରଖାସ୍ତ ଆହ୍ୱାନ କରାଯାଇଥିଲା । ଶିଲିଂ ବହିର୍ଭୂତ ଜମି ବାଣ୍ଟିବା ନିମନ୍ତେ ଧାର୍ଯ୍ୟ ହୋଇଥିବା ଲକ୍ଷ୍ୟ ମଧ୍ୟ ନିର୍ଦ୍ଧାରଣ କରାଯାଇଛି ।

ଏହି କାର୍ଯ୍ୟକ୍ରମର ସଫଳ ରୂପାୟନ ଏହି କାର୍ଯ୍ୟରେ ନିୟୋଜିତ ସ୍ଥାନୀୟ ରାଜସ୍ୱ ଅଧିକାରୀମାନଙ୍କ ନିଷ୍ଠାପର ଉଦ୍ୟମ ତଥା ଉତ୍ସାହ ଉପରେ ମୁଖ୍ୟତଃ ନିର୍ଭର କରେ । ଘରଡିହ ତଥା ଶିଲିଂ ବହିର୍ଭୂତ ଜମି ବଣ୍ଟନ ଦିଗରେ ସରକାର ଦେଇଥିବା ପ୍ରତିଶ୍ରୁତିକୁ କାର୍ଯ୍ୟରତଥିବା କର୍ମଚାରୀମାନେ ନିଷ୍ଠାର ସହ ପୂରଣ କରିବେ ବୋଲି ରାଜ୍ୟ ସରକାର ଆଶା କରନ୍ତି ।

ଏ ଦିଗରେ ଜିଲ୍ଲାମାନଙ୍କରେ ଯେଉଁ କାର୍ଯ୍ୟ ହେଉଛି ତା'ର ପ୍ରସାର ନିମନ୍ତେ ତଥା କାମ କରୁଥିବା କର୍ମଚାରୀକୁ ଉତ୍ସାହିତ କରିବାପାଇଁ ୧୯୭୬-୭୭ରେ ସର୍ବୋତ୍କୃଷ୍ଟ ବିବେଚିତ ଜିଲ୍ଲା ବା ଜିଲ୍ଲାଗୁଡ଼ିକୁ ଦୁଇଟି ରନିଂ ସିଲ୍‌ଡ଼ ପ୍ରଦାନ କରିବାର ବ୍ୟବସ୍ଥା ପ୍ରବର୍ତ୍ତନ କରିବାକୁ ରାଜ୍ୟ ସରକାର ସ୍ଥିର କରିଛନ୍ତି । ଏହି ଦୁଇଟି ରନିଂ ସିଲ୍‌ଡ ମଧ୍ୟରୁ ଗୋଟିଏ ଶିଲିଂ ବହିର୍ଭୂତ ଜମି ବଣ୍ଟନ ବାବଦରେ ଓ ଅନ୍ୟଟି ଘରଡିହ ବଣ୍ଟନ ବାବଦରେ ପ୍ରଦାନ କରାଯିବ । ତାହାପରେ ପ୍ରତିବର୍ଷ ଏହି ସିଲ୍‌ଡ ପ୍ରଦାନ କାର୍ଯ୍ୟକ୍ରମ ଚାଲୁ ରହିବ । ଏହି ଦୁଇଟି ଯୋଜନାରେ ସର୍ବୋତ୍କୃଷ୍ଟ କାର୍ଯ୍ୟପାଇଁ ବ୍ୟକ୍ତିଗତ ସ୍ତରରେ କର୍ମଚାରୀମାନଙ୍କୁ ମଧ୍ୟ ଯଥାଯଥ ସ୍ୱୀକୃତି ମିଳିବ । ଏହି ଦୁଇଟି କାର୍ଯ୍ୟକ୍ରମ ଉପରେ ରାଜସ୍ୱ ବୋର୍ଡ ପ୍ରତ୍ୟେକ ଜିଲ୍ଲାର କାମ ସମୀକ୍ଷା କରିବେ ଏବଂ ଉପଯୁକ୍ତ ବିବେଚିତ ଜିଲ୍ଲାକୁ ସିଲ୍‌ଡ଼ ପ୍ରଦାନ କରାଯିବା ପାଇଁ ଏବଂ ଯୋଗ୍ୟ କର୍ମଚାରୀଙ୍କୁ ପ୍ରଶଂସାପତ୍ର ଦିଆଯିବା ନିମନ୍ତେ ସରକାରଙ୍କୁ ପ୍ରତିବର୍ଷ ଏପ୍ରିଲ ମାସର ଶେଷ ଭାଗରେ ସୁପାରିଶ କରି ତାଙ୍କ ରିପୋର୍ଟ ଦେବେ ।




ଫୁଲବାଣୀ ଜିଲ୍ଲାର ଏହି ୮୨ବର୍ଷ ବୟସ୍କାବୃଦ୍ଧା ଟିକାବାଲିର ଏକ ଭୋଟ କେନ୍ଦ୍ରରେ ଗତ ମାର୍ଚ୍ଚ ୧୬ ତାରିଖରେ ସ୍ୱାଧୀନଭାବେ ଭୋଟ ଦେଉଛନ୍ତି



ଫୁଲବାଣୀ ଜିଲ୍ଲାର ମାଲିକପାଡ଼ି ଭୋଟ କେନ୍ଦ୍ରରେ ଆଦିବାସୀ ମହିଳାମାନେ ଧାଡ଼ିବାନ୍ଧି ଭୋଟ ଦେବାକୁ ଯାଉଛନ୍ତି

UTKAL PRASANGA Regd. No. C
Vol. XXXIII No. 9
Licence No. C. R. N. 5—Licensed to post without Pre-Paym



ଆମେ ଜାଣୁ—ଆମେ କାହାକୁ ଭୋଟଦେବୁ । ସେ ସମ୍ବନ୍ଧେ ଆମେ ନିଶ୍ଚିନ୍ତ । ଆମକୁ କେହି ପ୍ରତାରିନାହିଁ—କେହି ମଧ୍ୟ ଧମକାଇ ନାହିଁ



ଜେଜାବି—ଆସନ୍ତା ନିର୍ବାଚନକୁ ମୁଁ ଥିବି କି ନାହିଁ । ଭଗବାନ ସମସ୍ତଙ୍କର ମଙ୍ଗଳ କରନ୍ତୁ

Printed at Orissa Govt. Press, Cuttack-10

